# ଜାନକୀପରିଣୟ

## ନାଟକ ।

ଯେ ନାମ କେଚିଦିହ ନଃ ପ୍ରଥୟନ୍ତ୍ୟବଜ୍ଞାଂ ।
ଜାନନ୍ତୁ ତେ କିମପି ତାନ୍ ପ୍ରତି ନୈଷ ଯତ୍ନଃ ।
ଉତ୍ପତ୍ସ୍ୟତେ ମମ ତୁ କୋଽପି ସମାନଧର୍ମା ।
କାଳୋ ହ୍ୟୟଂ ନିରବଧିର୍ବିପୁଳା ଚ ପୃଥ୍ୱୀ ॥

ପାରଳାଖିମଣ୍ଡୀ ରାଜକଲେଜର ହେଡ଼ପଣ୍ଡିତ
ଶ୍ରୀ ଗୋପୀନାଥ ନନ୍ଦଶର୍ମାଙ୍କ ପ୍ରଣୀତ
ଓ
ପ୍ରକାଶିତ ।

ପ୍ରଥମ ସଂସ୍କରଣ ।

Printed by W. Kar.
The Utkal Sahitya Press,
CUTTACK.
1915.

ମୂଲ୍ୟ ଟ ୧ । ମାତ୍ର ।

# ଉତ୍ସର୍ଗ ପତ୍ର ।



ଶ୍ରୀ ଶ୍ରୀ ଶ୍ରୀ ମାତୃସାହିତ୍ୟସମୁନ୍ନତିସମ୍ପାଦନସମୁତ୍ସୁକ
ସ୍ୱଦେଶଭାଷାପ୍ରେମିକ ସୁଗୁଣନିଷ୍ଠ ପାରଳାଖିମଣ୍ଡିର
ସମ୍ମାନ୍ୟମାନ ଚନ୍ଦ୍ର ଶ୍ରୀମାନ୍ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର
ଗଜପତିନାରାୟଣ ଦେବ ମହାରାଜ ମହୋଦୟ-
ମହାମାନ୍ୟଚରଣେଷୁ ।

ସବିନୟନିବେଦନମିଦଂ ।

ଶ୍ରୀମନ୍ ମହାରାଜ ମହୋଦୟ !

ଆମ୍ଭମାନଙ୍କ ଦେଶରେ ଶୁଣାଯାଏ, ସାହିତ୍ୟସମୁନ୍ନତି ସାଧନରେ ଶ୍ରୀମାନ୍ ଶ୍ରୀ ଭୋଜରାଜଙ୍କର ସମୁଦାର ଚେଷ୍ଟା ଅଦ୍ୱିତୀୟ; କିନ୍ତୁ ତାହା ବହୁ ଅତୀତ ସମୟର କଥା । ତାହାଙ୍କ ସଦନୁଷ୍ଠାନ-ଗରିଷ୍ଠତ୍ୱର ଅନୁକରଣରେ ତୈଲଙ୍ଗ ଭୋଜ ଶ୍ରୀମାନ୍ ଶ୍ରୀ ଶ୍ରୀ କୃଷ୍ଣଦେବ ରାୟ ମହୋଦୟ ତୈଲଙ୍ଗ ସାହିତ୍ୟଭଣ୍ଡାରକୁ ଯାଦୃଶ କ୍ରମରେ ସମୁନ୍ନତ କରିଯାଇଅଛନ୍ତି, ତାହା ଅବଶ୍ୟ ଶ୍ରୀଛାମୁ ଅବଗତ ଅଛନ୍ତି ଏବଂ ତାଦୃଶ ବିଦ୍ୟାନୁରାଗ, ସାହିତ୍ୟରସିକତା, ବିଦ୍ୱଜ୍ଜନସମାଦର ଓ ଗ୍ରାହକତା ପ୍ରତି ସାଦର ଦୃଷ୍ଟି ଦେଇ-ଅଛନ୍ତି । ମୋର ବିଶ୍ୱାସ ହେଉଅଛି, ଶ୍ରୀଛାମୁ କ୍ରମଶଃ

ଉତ୍କଳରେ ତାଦୃଶ ସାରସ୍ୱତ-ସୁକୀର୍ତ୍ତିର ପ୍ରତିଷ୍ଠା କରି ପାରିବେ ଏବଂ ଆଶା କରୁଅଛୁ, ଶ୍ରୀଛମୁଙ୍କ ସୁଚେଷ୍ଟାରେ ଉତ୍କଳ-ସାହିତ୍ୟର ଗୌରବ ପରିବର୍ଦ୍ଧିତ ହେବ ।

ଅତଏବ ଶ୍ରୀଛମୁଙ୍କର ସୁଗୁଣଗରିମାର ପୂଜୋପହାର-ସ୍ୱରୂପ ନବ୍ୟଭବ୍ୟଗୀତର ଏହି ନାଟକ ଖଣ୍ଡିକ ଭବଦୀୟ ଶ୍ରୀକରକମଳରେ ଅର୍ପଣ କଲି । ସମ୍ପୂର୍ଣ୍ଣ ଆଦର ସହିତ ଗୃହୀତ ହେଲେ ନିଜକୁ ଚରିତାର୍ଥ ମନେ କରିବି ।

ନ ବ୍ରହ୍ମବିଦ୍ୟା ନ ଚ ରାଜ୍ୟଲକ୍ଷ୍ମୀ-<br>
ସ୍ତଥା ଯଥେୟଂ କବିତା କବୀନାଂ ।<br>
ଲୋକୋତ୍ତରେ ପୁଂସି ନିବେଶ୍ୟମାନା<br>
ପୁତ୍ରୀବ ହର୍ଷଂ ହୃଦୟେ ତନୋତି ।

ଭବଦୀୟ<br>
ଅନୁଗ୍ରହାକାଙ୍କ୍ଷୀ<br>
ଶ୍ରୀ ଗୋପୀନାଥ ନନ୍ଦଶର୍ମା ।

# ମନ୍ତବ୍ୟ ।

ॐ

## ( ୧ )

ଅମ୍ଭେ ଶ୍ରୀଯୁକ୍ତ ଗୋପୀନାଥ ନନ୍ଦଶର୍ମାଙ୍କ କର୍ତ୍ତୃକ ଉତ୍କଳ-ଭାଷାନ୍ତରିତ ଜାନକୀପରିଣୟ ନାଟକ ପାଠ କରି ଅତ୍ୟନ୍ତ ପ୍ରୀତ ହୋଇଅଛୁଁ । କାବ୍ୟଟି ସଂସ୍କୃତ ଶ୍ଳୋକାନୁଯାୟୀ ଛନ୍ଦୋବନ୍ଧରେ ରଚିତ ହୋଇ ଅତ୍ୟୁପାଦେୟ ହୋଇଥିବା କଥା ଉତ୍କଳଭାଷା-ପାରଦର୍ଶୀ ପଣ୍ଡିତମାନେ ଅବଶ୍ୟ ମୁକ୍ତକଣ୍ଠରେ ସ୍ୱୀକାର କରିବେ । ଅମ୍ଭେ ବିଶ୍ୱାସ କରୁଁ, ଜନସାଧାରଣ ଉକ୍ତ କାବ୍ୟଟିକୁ ସାଦରରେ ଗ୍ରହଣ କରି ପ୍ରଣେତାଙ୍କୁ ଉତ୍ସାହ ପ୍ରଦାନ କରିବେ ।

| | |
|---|---|
| ପାରଳାଖିମଣ୍ଡି । | ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ବି.ଏ. |
| ୬ । ୧ । ୧୯୦୧ | ପାରଳାଖିମଣ୍ଡି ରାଜକୁମାରଙ୍କ ଶିକ୍ଷକ । |

## ( ୨ )

ଜାନକୀପରିଣୟ ନାଟକଟି ଶ୍ରୀଯୁକ୍ତ ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କଦ୍ୱାରା ଅନୁବାଦିତ । ଅନୁବାଦକ ଜଣେ ଅଧ୍ୟବସାୟୀ ପରିଶ୍ରମୀ ଏବଂ ସୁକବି ଅଟନ୍ତି । ସେ ନାନାବିଧ ସଂସ୍କୃତ ବୃତ୍ତିକୁ ଅବଲମ୍ବନ କରି ଏହି ନାଟକ ଅନୁବାଦ କରିଅଛନ୍ତି । ସମୟାଭାବରୁ ମୁଁ ପ୍ରୋକ୍ତ ନାଟକ ଆମୂଳାନ୍ତ ପାଠ କରି ନାହିଁ, କିନ୍ତୁ ମୁଁ ଯେ ଅଂଶ ପଠନ କରିଅଛି, ସେଥିରୁ ଜାଣି ପାରିଅଛି ଯେ ଏହି ଧରଣର କୌଣସି ପୌରାଣିକ ବା ଐତିହାସିକ ଉପାଦେୟ ନାଟକ

ଆଜ ପର୍ଯ୍ୟନ୍ତ ଉତ୍କଳଭାଷାରେ ରଚିତ କିମ୍ବା ଅନୁବାଦିତ ହୋଇ ନାହିଁ ।

ପାରଳାଖିମଣ୍ଡି
୨୮ । ୧ ୧୯୦୧ } ଶ୍ରୀ ପଦ୍ମନାଭନାରାୟଣ ଦେବ ।

( ୩ )

ଶ୍ରୀଯୁକ୍ତ ଗୋପୀନାଥ ନନ୍ଦଶର୍ମାଙ୍କ ଉତ୍କଳୀକୃତ ଜାନକୀପରିଣୟ ନାଟକ ମୁଁ ପଠନ କରିଅଛି । ଛନ୍ଦୋବଦ୍ଧ ଏବଂ ସୁଲଳିତ ସଂସ୍କୃତୋତ୍କଳ ଶବ୍ଦମିଶ୍ରିତ ଏତତ୍ପଦ୍ୟାବଳୀ ଉତ୍କଳସରସ୍ୱତୀଙ୍କର ନୂତନ ମୌକ୍ତିକ ପ୍ରବାଳ ହାରବତ ପରି ଅତ୍ୟନ୍ତ ମଞ୍ଜୁଳ ହୋଇଅଛି । ଏତଦ୍ରଚନାରେ ନନ୍ଦମହାଶୟ ସମଧିକ ଶ୍ରମ ସ୍ୱୀକାର କରିଅଛନ୍ତି ବୋଲିବା ବାହୁଲ୍ୟମାତ୍ର । ବିଦ୍ୱାନେବ ବିଜାନାତି ବିଦ୍ୱଜ୍ଜନପରିଶ୍ରମଂ । ଇତି ।

ବିଶାଖପଟ୍ଟନ
୨୮ । ୩ । ୧୯୦୩ } ଶ୍ରୀ ବିକ୍ରମଦେବ ବର୍ମା ।

( ୪ )

୨ ତାରିଖ ମାହେ ଜୁନ ।

ଦେବଗଡ଼, ବାମଣ୍ଡା ।

ପଣ୍ଡିତ ଶ୍ରୀ ଗୋପୀନାଥ ନନ୍ଦଶର୍ମାଙ୍କ ସହିତ ମୋହର ପରିଚୟ ନ ଥିଲା । ରାଜାବାହାଦୂର ବୈକୁଣ୍ଠନାଥ ଦେଙ୍କ ପତ୍ର ଅନୁସାରେ ମୁଁ ପ୍ରୋକ୍ତ ପଣ୍ଡିତ ମହାଶୟଙ୍କୁ ପରିଚୟ କରିଅଛି । ଏ ମହାଶୟ

ଗଞ୍ଜାମଜିଲ୍ଲାନିବାସୀ ହେଲେ ମଧ୍ୟ ଉତ୍କଳଭାଷା ଉନ୍ନତି ବିଷୟରେ ଏହାଙ୍କର ବିଶେଷ ଚେଷ୍ଟା ଥିବାର ଦେଖି ମୁଁ ଆନନ୍ଦିତ ହୋଇଅଛି । ମୁଁ ଏହାଙ୍କର ପ୍ରଣୀତ ସଂସ୍କୃତ ଛନ୍ଦୋବନ୍ଧରେ ଲିଖିତ ଜାନକୀପରିଣୟ ନାମକ ଖଣ୍ଡିଏ ନାଟକ ଦେଖିଲି । ନାଟକଖଣ୍ଡି ନୂତନ ଧରଣର ଲେଖା । ଉତ୍କଳର ପ୍ରଧାନ କବି ରାୟ ରାଧାନାଥ ରାୟ ବାହାଦୁର ଓ ମଧୁସୂଦନ ରାଓ ଉକ୍ତ ନାଟକ ସମ୍ବନ୍ଧେ ସୁମତ ପ୍ରକାଶ କରିଅଛନ୍ତି । ମୋହର ମଧ୍ୟ ଆଶା ଯେ ଅବଶ୍ୟ ନାଟକଖଣ୍ଡିକ ଉତ୍କଳ ସାହିତ୍ୟର ଅଙ୍ଗପୁଷ୍ଟି କରିବ । ଇତି ।

ରାଜା ଶ୍ରୀ ସଚ୍ଚିଦାନନ୍ଦ ତ୍ରିଭୁବନଦେବ ।

। କ୍ର । ବାମଣ୍ଡା ।

( ୫ )

ବାବୁ ହେ ନନ୍ଦବଂଶୀୟ-କ୍ଷୀରାବ୍ଧିଜାତ ଚନ୍ଦ୍ରମା ।
ଶ୍ରୀ ଗୋପୀନାଥନାମାଖ୍ୟ ରକ୍ଷନ୍ତୁ ଭଗବାନ୍ ହରି । ୧ ।
ଯାହା ଯାହାଟି ତୁମ୍ଭର କର୍ତ୍ତୃକ ଅନୁବାଦିତ
ହେବା ହେଉଥିବ, ଗ୍ରନ୍ଥଯାକ ଲୋକେ ପ୍ରକାଶିଲେ । ୨
ଶୁଣିବା ଲୋକର ମନ ସନ୍ଦେହ ନାହିଁ ଟାଣିବ ।
ଏହେତୁ ଅଳ୍ପଦିନରେ ପ୍ରଧାନ କବି ହୋଇବ । ୩ ।
ଗୁଣ ବାକ୍ୟ ଅଳଙ୍କାର ସବୁ ପୂରିଛି ଏଥିରେ ।
ଏ ଗ୍ରନ୍ଥ ଆଦର୍ଶ ପରି ହୋଇବ ଓଡ୍ର ଦେଶରେ । ୪ ।
ଆମ୍ଭ ଦେଶର ଭାଷାରେ ନାହିଁ ଏପରି ନାଟକ ।
ଏ ଗ୍ରନ୍ଥ ଉଚ୍ଚଶିକ୍ଷାର୍ଥ ଗ୍ରହଣେ ଯୋଗ୍ୟ ହୋଇଛି । ୫ ।

।

ପାର୍ଲାଖିମଣ୍ଡି ରାଜାଙ୍କ କଲେଜ ଓଡ୍ର ପଣ୍ଡିତ ।
ଜଗନ୍ମୋହନ ପାଠୀ ମୁଁ କହୁଛି ନିର୍ମଳ ମନେ । ୨ ।

ଜାନକୀ ପରିଣୟ ନାମ ନାଟକ
ତୁମ୍ଭ କର୍ତ୍ତୃକ ଅନୁବାଦିତ ସ୍ଥଳେ
ମୋହିଲା ମନକୁ ଯଥାର୍ଥ ମୋହର
ଲୋକରେ ବିଦିତୁ ସନ୍ତତ ସେପରି । ୨ ।

ଶକାବ୍ଦ ୧୮୨୨,
ଧନୁ ୧୭ ଦିନ ।

ଶ୍ରୀ ଜଗନ୍ମୋହନ ପାଠୀ
ଓଡିଆ ପଣ୍ଡିତ ।
ରାଜକଲେଜ, ପାରଳା ଖିମିଣ୍ଡୀ ।

( ୨ )

ବସନ୍ତତିଲକ ବୃତ୍ତ ।

ଯେ ନନ୍ଦବଂଶକଳଶାର୍ଣ୍ଣବପୂର୍ଣ୍ଣଚନ୍ଦ୍ର
ସେ ଜାନକୀପରିଣୟାଭିଧ ନାଟକଶ୍ରୀ —
ନିର୍ମାଣି ରମ୍ୟ ଗଣବଦ୍ଧ ସୁବୃତ୍ତ-ରତ୍ନେ
ସନ୍ତୋଷିଲେ ଭୁବନମଣ୍ଡନ-ପଣ୍ଡିତଙ୍କୁ ।

ଶ୍ରୀ ନନ୍ଦକୁଳପୟଃପାରାବାର-ରାକାସୁଧାକର ଶ୍ରୀ ରଘୁନାଥନନ୍ଦଙ୍କର ଜ୍ୟେଷ୍ଠପୁତ୍ର ଶ୍ରୀଗୋପୀନାଥ ନନ୍ଦ କବିବର ଉତ୍କଳଭାଷାରେ ଅପୂର୍ବ ବୃତ୍ତ କବିତାର ପ୍ରଥମାବତାର କରାଇ ପ୍ରାଚୀନ କବି ଶ୍ରୀଉପେନ୍ଦ୍ରଭଞ୍ଜ ପ୍ରଭୃତି ମହାକବିମାନଙ୍କର ମଧ୍ୟ ପ୍ରାପ୍ୟ ଅଲଭ୍ୟ କୀର୍ତ୍ତିଚନ୍ଦ୍ରିକାକୁ ସମ୍ପାଦି ଗୀର୍ବାଣ ଓ ଉତ୍କଳକବିତାପାଠକଙ୍କ

।/

ସହୃଦୟମାନଙ୍କ ହୃଦୟାନନ୍ଦସିନ୍ଧୁକୁ ବଢ଼ାଇଅଛନ୍ତି । ତେଣୁ ମୁଁ କୃତଜ୍ଞତା ନିବେଦନପୂର୍ବକ ତାହାଙ୍କୁ ଧନ୍ୟବାଦ ଦେଉଅଛି ।

ଶ୍ରୀ ଶ୍ରୀ ଶ୍ରୀ ପାରଳାଖିମିଣ୍ଡି ମହାରାଜଙ୍କର
ଅସ୍ଥାନ ପଣ୍ଡିତ
ଗୁରୁଦନ୍ତି-ବେଙ୍କଟାଚଳ ଶର୍ମା
ପାଣିନୀୟ ।

( ୭ )

ନନ୍ଦକୁଳାବ୍ଧିପୂର୍ଣ୍ଣସୁଧାକର ଶ୍ରୀଗୋପୀନାଥ ନନ୍ଦଙ୍କଦ୍ୱାରା ଉତ୍କଳ-ସାହିତ୍ୟର ପରମ ଉପଯୋଗାର୍ଥେ ଯେଉଁ ଜାନକୀପରିଣୟ ନାଟକଟି ଅନୁବାଦକ୍ରମେ ସୁଲଳିତ ପଦ୍ୟ ଓ ଗଦ୍ୟନିଚୟରେ ରଚିତ, ତାହା ଅମ୍ଭେ ଶ୍ରବଣ କରି ସାତିଶୟ ଆନନ୍ଦିତ ହେଲୁଁ । ଏହିଟି ବିଶେଷରେ ଉତ୍କଳ ଦେଶୀୟ ବିଦ୍ୟାର୍ଥୀ ରାଜପୁତ୍ରଗଣଙ୍କ ଶିକ୍ଷୋପଯୋଗୀ ଏବଂ ଶିକ୍ଷାସନ୍ତାପ ଦୂରୀକରଣାର୍ଥେ ଏକମାତ୍ର ହୃଦୟନନ୍ଦନ ହୋଇଅଛି । ଆଶା କରୁଁ, ଶ୍ରୀ ଶ୍ରୀ ପରମେଶ୍ୱର ଅଚିରେ ନନ୍ଦ ମହାଶୟଙ୍କୁ ପୂର୍ବକବିବରଙ୍କ ପଥରେ ପଥିକ କରିବେ । ବୋଧହୁଏ ଉକ୍ତ ନାଟକ କାବ୍ୟାନ୍ତ ବ୍ୟତିରେକେ ଧୀମନ୍ତ ଲୋକଙ୍କ ମନୋଯୋଗେ ଆକର୍ଷଣ କରିବ, ଏଥିରେ କୌଣସି ସନ୍ଦେହ ନାହିଁ ।

ମକର ୧୭ ଦିନ,
ଶକାବ୍ଦ ୧୮୨୨ ।

ଶ୍ରୀ ଗଙ୍ଗାରାମ ସିଂହଦେବ
ଜମିଦାର,
ଇଚ୍ଛା, ସିଂହଭୂମି

କରିବାପାଇଁ ନିଦେଶ—

ପ୍ରଦାନ କରନ୍ତୁ ଭବ୍ୟ ସଭ୍ୟ ଆହା ! । ୬ ।

(ନେପଥ୍ୟକୁ ଅନାଇଁ) ପ୍ରିୟେ ! ଏଆଡ଼େ ଅଳ୍ପ ଆସ ।

ନଟୀର ପ୍ରବେଶ ।

ନଟୀ—ଆର୍ଯ୍ୟପୁତ୍ର ! ହୋଇଛି ମୁଁ ଅସିଲି, କି ଆଜ୍ଞା ହେଉଅଛୁ ?

ସୂତ୍ରଧାର—ପ୍ରିୟେ ! ସମୁପସ୍ଥିତ ପୂଜନୀୟ ସଭ୍ୟମାନଙ୍କର ଆଦେଶ ଶୁଣିଲ ତ ?

ନଟୀ—ଶୁଣିଅଛି, କିନ୍ତୁ ଭବଦୀୟ ଭଗିନେୟ କଳହଂସର ବିବାହ ନିମିତ୍ତ ନିଶ୍ଚିତା ମଦୀୟ କନ୍ୟା କମଳିନୀକୁ ସେହି ଦୁଷ୍ଟ-ଚେଷ୍ଟ ମହାମାୟ ନାମକ କୁଶୀଳବ ମାୟିକ-କଳହଂସ-ବେଶ ଧାରଣପୂର୍ବକ ଅପହରଣ କରିବ, ଏହା ଶୁଣି କିପରି ଅବା କମଳିନୀର ମନୋରଥ ନିର୍ବିଘ୍ନରେ ସାର୍ଥ ହେବ ବୋଲି ମୁଁ ଦୁଃଖିତା ଅଛି ।

ସୂତ୍ରଧାର—ଓ, ଏଥିପାଇଁ ବିଗ୍ରର ବା ଦୁଃଖ କର ନାହିଁ । କମଳିନୀ ଓ କଳହଂସର ସଙ୍ଘଟନ ନିମନ୍ତେ ବୃହନ୍ନାଳ ନାମକ ଚୈଳୂଧକ ମଦୀୟ ନିଦେଶମତେ ଏଥିରେ ମଧ୍ୟସ୍ଥ ଅଛନ୍ତି ।

ସୁଗନ୍ଧ ବୃତ୍ତ ।

ସେ ଦୁହିଙ୍କ ରୂପ ତୁଲ୍ୟ ବୋଲି ଯୋଗ୍ୟ ନା ଭୟ,
ଚେଷ୍ଟ ଏହି ତାରିଠାରୁ ବୋଲି ଜାଣ ନିଶ୍ଚୟ ।

ବିଦ୍ୟମାନ–ସଚ୍ଚରିତ୍ର ସତ୍ତ୍ୱଶାଦ କର୍ତ୍ତୃକ
ସ୍ପଷ୍ଟତାକୁ ପାଇ ହେବ ଲୋକବୃନ୍ଦତୋଷକ । ୭ ।

ଅତଏବ ପ୍ରିୟେ ! ପ୍ରବର୍ତ୍ତମାନ ବସନ୍ତ ଋତୁକୁ ଅନୁସରି ସମାଗତ ସଭାସଦସନ୍ଦୋହଙ୍କର ସମାରାଧନାର୍ଥ ଗୋଟିଏ ସଙ୍ଗୀତ ଆରମ୍ଭ କର ।

ଦେଖ ବର୍ତ୍ତମାନ—

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ପ୍ରତ୍ୟଗ୍ରାଭମନୋଜ୍ଞ-ପଲ୍ଲବଚୟେ ଚଞ୍ଚୂବିଦ୍ଧାତେ ଦଳ
ପାର୍ଶ୍ୱସ୍ଥା ନବବଲ୍ଲଭାର ମନ ଆଶ୍ୱାସେ ସମାଶ୍ୱାସିତା ।
ଏ ପୁଂସ୍କୋକିଳ ମତ୍ତଭ୍ରମରଗଣେ ବିକ୍ଷୋଭ ପକ୍ଷାନିଳେ
ସଂଗୀତାରଭଟୀକି ରଞ୍ଜି ବିହରେ କାନ୍ତେ ! ରସାଳାଗମେ ।୭।

ନଟୀ—ଅଜ୍ଞା ହେଉ, ତାହାହିଁ କରିବି; କିନ୍ତୁ ସଭାସଦମାନେ ଯେପ୍ରକାର ନାଟକର ଅଭିନୟ କହିବାପାଇଁ ଆଜ୍ଞା ଦେଇଅଛନ୍ତି, ଅଦ୍ୟାପି ଉତ୍କଳଭାଷାରେ ତାଦୃଶ ନାଟକର ଆବିର୍ଭାବ ହୋଇଥିଲା ପରି ମୋତେ ଜଣା ଯାଉ ନାହିଁ ତ ।

ସୂତ୍ରଧାର—(ସହାସେ) ତେବେ ପାସୋରି ଦେଇଅଛ । ଅଳ୍ପ ଦିନ ପୂର୍ବେ ନବବିରଚିତ ଜାନକୀପରିଣୟ ନାଟକର ଶିକ୍ଷା କରିଥିଲ ପରା ?

ନଟୀ—ହଇ ତ, ଏବେ ଦରିବଳରୁ ଆପଣଙ୍କଦ୍ୱାରା ଅନୁବୋଧିତା ହୋଇ ପାରିଲି । ମହାନୁଭବ ଯଜ୍ଞରାମଦୀକ୍ଷିତଙ୍କ

ଭୈରବ ପୁତ୍ର ରାମଭଦ୍ର ମଖୀନ୍ଦ୍ରଙ୍କ କର୍ତ୍ତୃକ ପ୍ରଥମେ ସଂସ୍କୃତ ଭାଷାରେ ଯାହା କି ରଚିତ, ତଥାଚ ସମ୍ପ୍ରତି ଶ୍ରୀ ଗୋପୀନାଥ ନନ୍ଦଶର୍ମାଭିଧ କବିଙ୍କ କର୍ତ୍ତୃକ ଉତ୍କଳଭାଷାରେ ଅନୂଦିତ ହୋଇଅଛି, ସେହି ନାଟକଟି ନୁହେ କି ?

ସୂତ୍ରଧାର—ପ୍ରିୟେ ! ଠିକ ସ୍ମରଣ କରିଅଛ ।

ସ୍ରଗ୍ଧରା ବୃତ୍ତ ।

ଲୋକେ ଏ କାବ୍ୟକର୍ତ୍ତା ପ୍ରଥିତ ସୁଗୁଣରେ ସର୍ବଥା ବନ୍ଧୁବୃନ୍ଦେ
ପାପବ୍ରାତାପହର୍ତ୍ତା-ରଘୁତିଲକ-କଥା ବର୍ଣ୍ଣ୍ୟ ଏହି ପ୍ରବନ୍ଧେ ।
ସାରଗ୍ରାହିଙ୍କ ମଧ୍ୟେ ସୁରସିକପଣରେ ଶ୍ରେଷ୍ଠ ଏ ସଭ୍ୟବୃନ୍ଦ
ମୋ ଭାଗ୍ୟାଭୋଗ-ଜାତାପରିମିତ ଫଳ ଏ ସର୍ବ ହୋଇଲାଟି ଲବ୍ଧ ।୮।

ଅତଏବ ଆଉ ବିଳମ୍ବ କର ନାହିଁ, ଶୀଘ୍ର ସଙ୍ଗୀତ ଆରମ୍ଭ କର ।

ନଟୀ—ଆଜ୍ଞା ହେଉ । (ରାଗାଳାପ କରି)

ଦ୍ରୁତବିଳମ୍ବିତ ବୃତ୍ତ ।

ବିରଚିଲେ ଯୁବତୀଗଣ ବେଣିକା
ଭରଣ ମଞ୍ଜୁଳ ବଞ୍ଜୁଳ ମାଳିକା
ପଥିପରିଶ୍ରମଶାନ୍ତି ରତୋତ୍ସବେ
କରଇ ଯେହି ମନୋହର ସୌରଭେ ।୯।

ତଥାହି—

ମନ୍ଦାକ୍ରାନ୍ତା ବୃତ୍ତ ।

ନାନା କ୍ରୀଡ଼ା–ରଭସବଶରେ ହୋଇ ତାନ୍ତାନିତାନ୍ତ
କାନ୍ତାମାନେ ଶ୍ରମଜଳକଣାଶ୍ରେଣି ହେବାରୁ ଶାନ୍ତ ।
ମନ୍ଦେ ମନ୍ଦେ ପବନ-ଅୟନେ ଆଗତ ସ୍ନିଗ୍ଧ ଶୀତ
ଶ୍ରୀଖଣ୍ଡାଦ୍ରି-ପ୍ରଭବ–ମରୁତେ ସୁ ପ୍ରଶଂସା କଲେ ତ । ୧୦ ।

ଅନ୍ତର୍ ମଧ—(ଏହି ଅର୍ଦ୍ଧୋକ୍ତିରେ ସଭୟେ କମ୍ପାଭିନୟ କରିବା । )

ସୂତ୍ରଧାର—

ଆର୍ଯ୍ୟା ବୃତ୍ତ ।

ରେ ପ୍ରେୟସି ! ତବ ଗାନେ
ଛଦ୍ମାର୍ପିତକଳ୍ପ ଏ ସଖି କୁହିଁ ।
ଏପରି କାର୍ଯ୍ୟେ ତୁ କିପାଁ
ବେପଥୁ ପାଉ ଚମ୍ପକଦେହା । ୧୧ ।

ନଟୀ—ଆପଣ କଣ ଦେଖୁ ନାହାନ୍ତି ? ଏହି ରାକ୍ଷସପଣ୍ଡା ଏ ଆଡ଼କୁ ତ ଆସୁଅଛି, କିପରି ଅବା ଭୟରେ ନ ଥରି ରହି ପାରିବ ? (ଅନ୍ୟ ଦିଗକୁ ଚାଲିଯିବା)

ସୂତ୍ରଧାର—ପ୍ରିୟେ ! ଭୟ କର ନାହିଁ । ରାବଣାନୁଚର ସାରଣ ବେଶଧାରୀ ମଦୀୟ ଭଗିନୀପତି ଏହି ରଙ୍ଗସ୍ଥଳକୁ ଆସୁ-

ଅଛୁ । ଚାଲ, ଆମ୍ଭେ ତୁମ୍ଭେ ମଧ୍ୟ ଅନନ୍ତର କରଣୀୟରେ
ତତ୍ପର ହେବା ।

ତୁମ୍ଭେ ନଷ୍କ୍ରାନ୍ତ ।

ଇତି ପ୍ରସ୍ତାବନା ।



ତଦନନ୍ତର ସାରଣର ପ୍ରବେଶ ।

( ଅଗ୍ରତଃ ଅବଲୋକନ କରି ସହର୍ଷେ )

ଦେବଦାନବ–ବନ୍ଦିତପଦାଙ୍କ ତ୍ରିଭୁବନସଂସ୍ଥାପିତାଧିପତ୍ୟ
ମହାରାଜ ରାବଣଙ୍କର ଆଦେଶପାଳନାର୍ଥ ମିଥିଲାଯାତ୍ରୀ
ଶୁକମନ୍ତ୍ରୀ ତତ୍ରତ୍ୟ ବୃତ୍ତାନ୍ତମାନ ଅବଗତ ହୋଇ
ହେଉଛି ଏହି ବାଟେ ତ ଆସୁଅଛନ୍ତି ।

ଶୁକ ପ୍ରବେଶ ।

ଶୁକ—ଅହୋ ! ଆର୍ଯ୍ୟ ସାରଣ—

ସାରଣ—ତୁମ୍ଭେ ଯେ ଉଦ୍ଦେଶରେ ଯାଇଥିଲ, ତାହା ସୁସାଧିତ
ହୋଇଅଛି ତ ?

ଶୁକ—ତାହା ମୁଁ ପରେ କହିବି । କହନ୍ତୁ ଭଲା, ଆପଣ ବର୍ତ୍ତମାନ
କେଉଁଠାକୁ ଯାଉଅଛନ୍ତି ?

ସାରଣ—ମହାରାଜ ରାବଣ ମୋତେ ଆଦେଶ କରିଅଛନ୍ତି ।

ଶୁକ—କଣ ସେ ଆଦେଶ ?

ସାରଣ—ଲୋକରେ ଶୁଣାଯାଏ କି, ଦେବଯଜନ-ସମ୍ଭବା ଅଲୌକିକ ଲାବଣ୍ୟମୟୀ ସୀତା ଜନକରାଜଙ୍କର ଧର୍ମତଃ ଦୁହିତା ଅଟନ୍ତି । "ସୀତାଙ୍କୁ ଆମ୍ଭଙ୍କୁ ପ୍ରଦାନ କରିବା ହେବେ" ଏହା ଜନକରାଜଙ୍କୁ ଜଣାଇ ଦେବାପାଇଁ ମହାରାଜ ଆଦେଶ କରିଅଛନ୍ତି ।

ଶୁକ—ଅହୋ ! ତାଦୃଶ ନରଙ୍କଶ ପ୍ରଭୁଙ୍କର ମନୁଷ୍ୟ ପ୍ରତି ଏ କଣ ଏପରି ଅପୂର୍ବ ବିନୟ !

ସ୍ରଗ୍ଧରା ବୃତ୍ତ ।

ଧୂଳିଖେଳା ପର୍ଯ୍ୟନ୍ତେ ଅନଧିକ ବୟସେ କେକସୀଙ୍କ ପ୍ରସୂତ
ସ୍ୱଚ୍ଛନ୍ଦେ ଦେବନାରୀନକର ରଖିଥିଲେ ଆଣି କାରା-ନିଶାନ୍ତ ।
ଏବେ ବୈଦେହପୁତ୍ରୀ-ପ୍ରସଭହରଣରେ ନୋହିଲେ ଶକ୍ତ-ଚିତ୍ତ
ଶୈବସ୍ନେହାନୁରୋଧେ ଜନକନୃପତି ସୌହୃଦ୍ୟ ତା ହେତୁ ମାତ୍ର ॥

ସାରଣ—ହଁ, ତାହା ନୁହେ ତ ଆଉ କଣ ?

ଶୁକ—ଆର୍ଯ୍ୟ ! ତଦନ୍ତ୍ୟ ବୃତ୍ତାନ୍ତ ଶୁଣିବା ହେଉନ୍ତୁ ।

ସାରଣ—କହ, ସାବଧାନ ଅଛୁ ।

ଶୁକ—

ସ୍ରଗ୍ଧରା ବୃତ୍ତ ।

ବୈଦେହୀ ଜାଣି ଆଗେ ଶୁର୍ବଗୁଣଗଣଅଗ୍ରିମ-ରାମେ ସରାଗା
ସର୍ବଂଶହ୍ଲାଦଭାବେ ଜନକ ସୁଖମଣେ ପୁହିକା ପୁଣ୍ୟଭାଗା ।
ଶଙ୍କା ଲଙ୍କାଧିନାଥ ପ୍ରତି ରଖି ହରତେ ପାଇ ତାହାଙ୍କ ବାର୍ତ୍ତା
ବିଶ୍ୱାମିତ୍ରଙ୍କୁ ତବ ପ୍ରତିବନ୍ଧ କରିଲୁ ଜାଣି ସେ ଶକ୍ତିମତ୍ତା । ୧୬ ।

ସାରଣ—(ଅସହନ ସହ ହାସ ପ୍ରକାଶପୂର୍ବକ)
ଅହୋ ସମୟର ବୈଷମ୍ୟ ! ତାହା ନ ହେଲେ କ୍ଷ ଅଦୂରଦାୟ ସ୍ୱାମିଙ୍କଠାରେ ସରଳତା ଆଉ ବୈଦେହ ହୃଦୟରେ କୁଟିଳତାର ପ୍ରକାଶ ! ଅଚ୍ଛା, କହ ତ ଆଉ କଣ ହୋଇଅଛି ?

ଶୁକ—ସ୍ୱକୀୟ ଯାଗଦର୍ଶନ ଛଳରେ ସପୁତ୍ରଦାର ଉଦାର ଦଶରଥଙ୍କୁ ନମନ୍ତ୍ରି ଆଣିବାପାଇଁ ସେହ ମୁନ ଯାଇଅଛନ୍ତି; ତଥାଚ ପ୍ରଥମତଃ ନମନ୍ତ୍ରିତ ଜନକରାଜ ନଜାନୁଜ କୁଶଧ୍ୱଜଙ୍କୁ ମିଥିଳାରେ ରଖି ଯଜ୍ଞୋତ୍ସବଦର୍ଶନ-ବ୍ୟାଜରେ କନ୍ୟା ସହ କୌଶିକାଶ୍ରମରେ ଉପସ୍ଥିତ ଅଛନ୍ତି ।

ସାରଣ—ଏହ ହେତୁ ମୁଁ ବିଶ୍ୱାସ କରେଁ, ଏହ ଉପାୟବଳରେ ସୀତା ରାମ ଉଭୟଙ୍କର ବିବାହ ସଙ୍ଘଟିତ ହୋଇ ପାରିବ । ଯାହା ଭବିତବ୍ୟ, ତାହାହିଁ ହେବ; ତଥାପି ରାଜାଦେଶ ପାଳନାର୍ଥ ଜନକରାଜାଧ୍ୟୁଷିତ କୌଶିକାଶ୍ରମକୁ ମୋତେ ଯିବାକୁ ହେବ ।

ଶୁକ—ସେଠାକୁ ଗଲେ ସୁବା କଣ ହୋଇ ପାରିବ ?

ସାରଣ—ସେପରି କହ ନାହିଁ ।

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଯାହା ଜନ୍ମ ଅଟେ ବିରଞ୍ଚିର କୁଳେ ସମ୍ପତ୍ତି ଲୋକଶ୍ରୁତ,
ଯା ଆଦେଶ ପୁରନ୍ଦରାଦି ବନ୍ଧିବେ ତତ୍ତୁଲ୍ୟ କେ ସାମ୍ପ୍ରତ ?

କନ୍ୟାର୍ଥୀ ଯଦି ସେ କଦା ନ କରିବେ ଅପ୍ରୀତ କେ ସର୍ବଥା

ଶୁକ—ତଥାପି—

ପ୍ରତ୍ୟାଖ୍ୟାନ କରେ ତ ଲୋକ ତନୟାରିଟାନୁରୋଧେ
ସଦା । ୧୪ ।

ସାରଣ—(କ୍ଷଣେ ବିଚାର କରି)

ବସନ୍ତତିଳକ ବୃତ୍ତ ।

ତାହାଙ୍କ ରବି କୁଳ ସେ ସତ ଦେଖି ନାହିଁ,
ଲୌକିକେଶ୍ୱର-ମହିମା ଶୁଣିଲ କି ନାହିଁ ?
ଅବ୍ୟାହତପ୍ରଭବ ରାବଣ ତେଜ ଦର୍ପେ
ସୀତା କଲି କପର ଆଦର ମର୍ତ୍ତ୍ୟଲୋକେ । ୧୫ ।

(ଦୀର୍ଘ ନିଶ୍ୱାସ ତ୍ୟାଗପୂର୍ବକ)

ତେବେ ସମ୍ପ୍ରତି ପ୍ରଥମତଃ ରାମ ପ୍ରତି ବୈଦେହୀର ସଞ୍ଜାତ ଅମିତାନୁରାଗକୁ କଥଞ୍ଚିତ୍ ବହୂରିତ କରାଇ, ତାହା ଆମ୍ଭମାନଙ୍କ ସ୍ୱାମିଙ୍କଠାରେ ପ୍ରବର୍ତ୍ତିବାର ଉପାୟ ଆମ୍ଭମାନଙ୍କୁ କରିବାକୁ ହେବ ।

ଶୁକ—ଏହା ମଧ୍ୟ କଦାପି ସମ୍ଭବ ହୋଇ ନ ପାରେ ।

ସାରଣ—ତାହାହେଲେ ପ୍ରଭୁଙ୍କର ସୀତା ପ୍ରାପ୍ତି ବିଷୟରେ ଆଉ କି ଔପୟିକ ଉପାୟ କରାଯାଇ ପାରେ ?

(ଚନ୍ତାଭିନୟପୂର୍ବକ ସହର୍ଷେ)

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଅଟେ ମାୟିକ-ରାମରୂପ ବହି ସେ ଅଣନ୍ତୁ ହେ କୌଶଳେ,
ହାଟେ ସ୍ତ୍ରୀକ ହରନ୍ତି ରାକ୍ଷସଗଣେ ମାୟାବଳେ ବା ବଳେ,

ଅଲୋକ ପ୍ରିୟପୁତ୍ରିକାକୁ ସ୍ୱଖିତା ଜାମାତୃ-ସନ୍ନିଧିକ
ସେ ସୀରଧ୍ୱଜ ତୁଷ୍ଟ ହୋଇ ରଖିବେ ଲଙ୍କେଶ୍ୱରେ ପ୍ରୀତକ୍ଷ ।୧୬

ଅତଏବ କୌଶିକବେଶଧାରୀ ମହାମାତ୍ୟ ଶଦ୍ଧ୍ୟକ୍ଷିହଙ୍କ ସଙ୍ଗେ ରାମବେଶଧାରୀ ମହାରାଜ ରାବଣଙ୍କୁ ଜନକରାଜ ପ୍ରତି ପ୍ରସ୍ଥାନ କରିବାକୁ ହେବ ।

ଶୁକ—ଆର୍ଯ୍ୟ ! ଆପଣ ଭଲ ମନ୍ତ୍ରଣା କରିଅଛନ୍ତି । ସୁତରାଂ ବର୍ତ୍ତମାନ ଅଯୋଧ୍ୟାଗତ ସେହି ବିଶ୍ୱାମିତ୍ର ଯାଜୀ କ୍ଷତ୍ରିୟ-ବ୍ରାହ୍ମଣର ପ୍ରତ୍ୟାଗମନରେ ମଧ୍ୟ ଅବଲମ୍ବେ ବ୍ୟାଘାତ କରିବା ଆବଶ୍ୟକ ।

ସାରଣ—ତୁମ୍ଭେ ଠିକ୍ କହିଅଛ । ପରନ୍ତୁ ଆର୍ଯ୍ୟା ତାଡ଼କାଙ୍କ ବିନା ଏହି କାର୍ଯ୍ୟ ସାଧନରେ ଅନ୍ୟ କେହି ସମର୍ଥ ନୁହନ୍ତି ।

ସୁମୁଖୀ ବୃତ୍ତ ।

ଶତନାଗବଳା ନିଶାଚରୀ, ରହି ଗୂଢ଼-ତନୁ ପ୍ରହାରିବେ ।
ଯଦିବା ଲଭିବେ ପ୍ରକାଶତା, ଯୁବତୀତ୍ୱରୁ ମୁକ୍ତି ପାଇବେ ।୧୭।

ଶୁକ—ତେବେ ଆପଣ ଶୀଘ୍ର ଯାଇ ତାହାଙ୍କୁ ଏହି କାର୍ଯ୍ୟରେ ନିଯୁକ୍ତ କରନ୍ତୁ । ମହାରାଜ ରାବଣଙ୍କୁ ପ୍ରୋକ୍ତ ବୃତ୍ତାନ୍ତ ନିବେଦନ କରିବା ଲାଗି ମୁଁ ଯାଉଅଛି ।

( ଏହା କହି ଶୁକ ନିଷ୍କ୍ରାନ୍ତ । )

ସାରଣ—(ପୂର୍ବୋଭାଗକୁ ଅନାଇ ସବିସ୍ମୟେ) ଏ କଣ ! ସ୍ମରଣ ମାତ୍ରକେ ଆର୍ଯ୍ୟା ତାଡ଼କା ଆସି ଏଠାରେ କପର ଉପସ୍ଥିତ ହୋଇଗଲେ ! ଯେ ପୁଣି—

ସ୍ରଗ୍ଧରା ବୃତ୍ତ ।

ଅନ୍ତର୍ନାଡ଼ୀବିଭୂଷାଯୁକ୍ତ ବଳ୍କଳଡ ସ୍ଥୂଳ ବକ୍ଷୋଜଧାତେ,
ମେଦଘୋଷ ଯେପି ଦୂରେ ହସି ହସି ବକଣ୍ଠେ ବସ୍ତୁତାପ୍ୟା ନତାନ୍ତେ,
ଓଷ୍ଠପ୍ରାନ୍ତସ୍ଥ-ମାଂସାକଳନରତ ମହାଗୃଧ୍ରପକ୍ଷାଭ୍ରଧାତେ
ହୋଇ ପ୍ରୋଦ୍ଧୃତରୂଢ଼ା ଦବଷଦବତ୍ସ୍ୟଦା ଅଂସିଲେ ଯେ ଅନନ୍ତେ ॥

( ଯଥାନର୍ଦ୍ଦିଷ୍ଟ ତାଟକାର ପ୍ରବେଶ । )

ସାରଣ—(ସମୀପକୁ ଯାଇ) ଆର୍ଯ୍ୟେ ! ମୁଁ ପ୍ରଣାମ କରୁଅଛି ।

ତାଟକା—ଅହୋ ସାରଣ ! ଦୀର୍ଘାୟୁ ହୁଅ ।

ସାରଣ—ତୁମ୍ଭେ କେଉଁଠାକୁ ଯାଉଅଛ ?

ତାଟକା—କୌଶିକ ମହର୍ଷିଙ୍କ ବାନ୍ଧବ ଓ ମାହେଶ୍ୱର-ଭକ୍ତିପ୍ରବଣ ପରଶୁରାମଙ୍କ କର୍ତ୍ତୃକ ପ୍ରାର୍ଥିତ ଶୈବପ୍ରବର ମହାରାଜ ରାବଣଙ୍କ ଆଜ୍ଞାନୁସାରେ ଏଣିକି ଆଉ ଯଜ୍ଞ-ବିଘ୍ନ କର୍ତ୍ତବ୍ୟ ନୁହେ, ଏହା ମୋର ପୁତ୍ର ମାରୀଚକୁ ଜଣାଇ ଦେବାପାଇଁ ଯାଉଅଛି ।

ସାରଣ—(ସହାସେ) ଅହୋ ! ସେହି କ୍ଷତ୍ରିୟାଧମ ଗାଧେୟର କି ଅଗାଧ ଉପାୟ-ଚାତୁର୍ଯ୍ୟ ଯେ ! ଆର୍ଯ୍ୟେ ! ଯଜ୍ଞ-ବ୍ୟାଜରେ ସୀତା ରାମ ଦୁହିଙ୍କର ବିବାହ ନିର୍ବାହ କରିବାପାଇଁ ଜନକରାଜ ବିଶ୍ୱାମିତ୍ର ଦୁହେଁ ଏହି ଅଟଳ କୌଶଳ ଆରମ୍ଭ କରିଅଛନ୍ତି ।

ତାଟକା—ସେଥିପାଇଁ ଏଡ଼େବଡ଼ କପଟ କାହିଁକି ?

ସାରଣ—କେଜାଣି ସମୟରେ ମହାରାଜ ସେହି କନ୍ୟାକାର
ପ୍ରାର୍ଥୀ ହେବେ ବୋଲି ପରି ।

ତାଟକା—ଯଦି ଏପରି ଥାଏ, ତେବେ ମହାରାଜଙ୍କ ନିମିତ୍ତ
ସୀତାକୁ ମୁଁ ନିଜେ ଅପହରଣ କରି ଆଣିବି ।

ସାରଣ—ନା, ସେଥିରେ କୌଣସି ପ୍ରୟୋଜନ ହେବ ନାହିଁ ।

ଭୁଜଙ୍ଗପ୍ରୟାତ ବୃତ୍ତ ।

ବଳାତ୍କାର-ଆନୀତ ଭୂମିପ୍ରସୂତା
କଦା ରାବଣେ ହେବ ନାହିଁ ପ୍ରସକ୍ତା ।
ତଥା ସେ କଥା ସର୍ବଥା ଦୈତ୍ୟନାଥ
ବଦେହେଣ୍ଡରେ ବାଞ୍ଛୁ ନାହାନ୍ତି ପଥ୍ୟ । ୧୯ ।

ତଥାଚ—

ଇନ୍ଦ୍ରବଜ୍ରା ବୃତ୍ତ ।

ରମ୍ଭାକୁ ହୈମାଦ୍ରିତଟେ ହରନ୍ତେ
ସେ ଶାପ ଦେଲା ଅମିତାର୍ତ୍ତି-ଦତ୍ତେ ।
ନାଶପ୍ରସଙ୍ଗ୍ୟାନୟନ-ପ୍ରଥାକୁ
ଅଣଜ୍ଞ ସେ ନାହିଁ କଦା କଥାକୁ । ୨୦ ।

କିନ୍ତୁ ଏପରି କଲେ ଭଲ ହେବ ।
( କର୍ଣ୍ଣାଭ୍ୟର୍ଣ୍ଣରେ କହିବା ।)

ତାଟକା—(ସହର୍ଷେ)

ଅନୁଷ୍ଟୁପ୍ ବୃତ୍ତ ।

ଏପ୍ରାୟ କଲିଲେ ନଷ୍ଟ ହେବ ସୀତା ବଶୀକୃତା ।
ପ୍ରତାରଣା-ଲୋଲୁପଙ୍କୁ ବଞ୍ଚନା କର ସର୍ବଥା । ୨୧ ।

ମାରୀଚଙ୍କୁ ସଙ୍ଗେ ଧରି ମୁଁ ମଧ୍ୟ ମଧ୍ୟମାର୍ଗରେ ରହିବି ସୁଖପୂର୍ବ ସେହି ମହର୍ଷି ଆଉ ତାପସ ସଙ୍ଗିଲୋକଙ୍କୁ ନିହତ କରିଦେବ । ତୁମ୍ଭେ ଲଙ୍କାପୁରକୁ ଯାଇ ମହାରାଜ ରାବଣଙ୍କର ପ୍ରୟାଣ ପ୍ରସ୍ତୁତ କରାଅ ।

( ଏହା କହି ବାହାରିଯିବା । )

ସାରଣ—

ଉପଜାତି ବୃତ୍ତ ।

ଜୟ ବ୍ୟବସ୍ଥା ସ୍ଥିର ନାହିଁ କାର
ଯାଅନ୍ତୁ ସାହାଯ୍ୟକୁ ତାଟକାର ।
ସୁବାହୁ ମାରୀଚ ଅସୀମ-ମାୟ
ମାୟାକୁ ବିସ୍ତାରିବ ତାଟକେୟ । ୨୨ ।

( ଏହା ଭବି ନିଷ୍କ୍ରାନ୍ତ । )

(ବିଷ୍କୁମ୍ଭ ।)

(ତଦନନ୍ତର ବହୁ୍ୟକ୍ତି ଓ ସାରଣର ସହିତ ରାବଣର ପ୍ରବେଶ ।)

ରାବଣ—

ସ୍ରଗ୍ଧରା ବୃତ୍ତ ।

ବୈଦେହୀ ଦର୍ଶନାର୍ଥେ ନୟନଗଣ ସଦା ଲାଳସାଲୋଳ ହେଲା,
ତାହା ସଶ୍ଳେଷଣାର୍ଥେ ଚପଳତର ମହାତୋଷରେ ବାହୁମାଳା ।

ଅହା ତାହାର ଚତ୍ତେ ଅଭିରୁଚି ନ ହୁଏ ଦେଖି ଦୈତ୍ୟେନ୍ଦ୍ର ରୂପ,
ହେଲେ ମାନୁଷ୍ୟରୂପୀ କରଗତ ପୁଣି ସେ ତା ନ ହେଲେ ଦୁରାପ ।

ଅଥବା—

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଶୈବ-ପ୍ରୀତି-କରାଯାନ୍ତ ସୌମ୍ୟ ମଣି ଯେ ମାହେଶ ସୀରଧ୍ୱଜେ
ମୋ ନୈସର୍ଗ କଠୋର-ଭବମହିମା ଶୈଥିଲ୍ୟ ଅପେ ଭଜେ ।
କନ୍ୟାରତ୍ନକୁ ପାଇବାକୁ ଅଧୁନା ଲକ୍ଷ୍ମ ତଥା ଉନ୍ନତ
କେମନ୍ତେ କରିଦେବ ଦୂର ଧରି ସେ ମାନୁଷ୍ୟ-କନ୍ୟାକୃତ ।୨୪।

ଯାରଣ—ମହାରାଜ ! ଏଥିରେ ମାନହାନ ହେବ ବୋଲି ଚିନ୍ତିତ
ହେବା ଅନୁଚିତ ।

ବସନ୍ତତିଳକ ବୃତ୍ତ ।

ଶ୍ରୀମାତୃକାଙ୍କୁ ଲଭିବାକୁ ଦିଗୀଶମାନେ
ଯାହା ସ୍ୱୟମ୍ଭୁ ମଣି ଅଣି ଥିଲେ ବିମାନେ ।
ସେ ମାର୍ଗରେ ପଥିକ ହୋଇ କରନ୍ତୁ କାର୍ଯ୍ୟ,
ତାହା ତ ଗର୍ହିତ ନୁହେ ଦନୁକେଶ-ବର୍ଯ୍ୟ । ୨୫ ।

ବିଦ୍ୟୁଜ୍ଜିହ୍ୱ—(ସଭେମାଙ୍କେ—ସ୍ୱଗତ )
ଦମୟନ୍ତୀପ୍ରାର୍ଥୀ ଦିକ୍‌ପାଳଗଣ ଯେପରି ବ୍ୟର୍ଥ-ମନୋରଥ
ହୋଇଥିଲେ, ମହାରାଜ ସେହିପରି ହେବେ ନାହିଁ ତ ?
(ପ୍ର୦ । ଶଠଃ)

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଭୂମେ ସପଣସ୍ଥା ବିଦେହତନୟା ହେଲଣି ସେ ଉଦ୍ଧତା,
ଅନ୍ୟେ'ପାୟ-ବଳେ ନ ହୋଇବ ତବ ପ୍ରେମେଛି ତା କାମନା ।

ଏବଂ ଯେ ମିଥିଳାଧିପେ ଅଛୁ ଦୃଢ ସ୍ନେହାନୁବନ୍ଧନମ୍,
ଏ ପନ୍ଥା ଅତଏବ ତା ଗ୍ରହଣରେ ନଶ୍ଚେ ଅଟେ ଉତ୍ତମ । ୨୬ ।

ରାବଣ—ଅଚ୍ଛା ହେଉ, ତେବେ ତାହାହିଁ କରିବାକୁ ହେବ । ସୁତରାଂ ତୁମ୍ଭମାନଙ୍କର ବଚନ ତ ସର୍ବଥା ମୋର ଅଲଙ୍ଘନୀୟ । ସାରଣ ! ତେବେ ପ୍ରସ୍ଥାନାର୍ଥ ପୁଷ୍ପକଯାନ ଆଣିବାକୁ ହେବ ।

ସାରଣ—ମହାରାଜଙ୍କର ଯେ ଆଜ୍ଞା ।

( ଏହା କହି ଯାଇ ପୁଷ୍ପକବିମାନ ସହ ପୁନଃ ପ୍ରବେଶି )

ମହାରାଜ ! ହେଉଛି ଦେଖନ୍ତୁ, ବିମାନ ଅଧି ସବାଧ ଉପସ୍ଥିତ ହେଲା ।

ଶାର୍ଦ୍ଦୂଲବିକ୍ରୀଡ଼ିତ ବୃତ୍ତ ।

ମାର୍ଗ୍ଗେ ରହି ଯାବହିଁ ଗଗନେ ଅପେ ବିମାନ ଭରେ,
ତା ପ୍ରାନ୍ତସ୍ଥିତ ମୌକ୍ତିକସ୍ତବ ଚଳେ ବଦ୍ଧଙ୍କ ନଣ୍ଟାପରେ ।
ତଦ୍‌ଧ୍ୱାସୂନ ସୂଚନ୍ନ-ସଙ୍ଗ-ସତ୍ୟ-ବ୍ୟୋମାଶ୍ରୁଗ ସ୍ତମ୍ଭିତ,
ଲୋକେ ଏ ଦିବଯାମ୍ବ ଦର୍ଦ୍ଧିକସ୍ଥରେ ସାକ୍ଷୀ ଅଟେ ସନ୍ତତ । ୨୭ ।

ରାବଣ—(ଦେଖି ସାମର୍ଷ ହାସପୂର୍ବକ) ମୁଁ ମନେ କରେଁ କି, ଦୁର୍ବଳ ପର ବୃତ୍ତି ଅବଲମ୍ବନକାରୀ ରାବଣ ବର୍ତ୍ତମାନ ଅପୂର୍ବ, ଏହା ଭବି ମୋ ପ୍ରତି ବଶ୍ୟସ୍ତ ଏହି ବିମାନ ମଧ୍ୟ ସ୍ୱୟଂ ଅପୂର୍ବତାକୁ ପରଗ୍ରହ କରୁଅଛି ।

ଯେହେତୁ—

ସ୍ରଗ୍ଧରା ବୃତ୍ତ ।

ପୂର୍ବ ପ୍ରାସ୍ୟେ ଇଦାନୀଂ ଗ୍ରହରଥ ସଦୃଶ୍ୟେ ନୋହିଲା ବଦ୍ଧକଷ୍ଟ,
ଦେବେ ଯକ୍ଷେ ନ ହେଲେ ସ୍ତବନ ପଠନ ଆନମ୍ରତାରେ ନିକୃଷ୍ଟ ।
ଦିବ୍ୟସ୍ତ୍ରୀ ଦିବ୍ୟହସ୍ତାହିତକ ଲଭୁଥିବା ଇନ୍ଦ୍ରୋଦ୍ୟାନପୁଷ୍ପ,
ସନ୍ତୋଷୋନ୍ମତ୍ତ ଦୈତ୍ୟାରବ ତ ନ ଶୁଭିଲା ହେବ
କେମନ୍ତ ହୃଷ୍ଟ । ୨୮ ।

ବିଦ୍ୟୁଜ୍ଜିହ୍ୱ—ମହାରାଜ ! ଏପରି ବିଚାର କରନ୍ତୁ ନା, ଜାନକୀ ଅଭିମତ ରାମରୂପ ଗ୍ରହଣପୂର୍ବକ ତାହାକୁ ବଶୀଭୂତା କଲା ପରେ ଜଗଦୀଶ୍ୱରଙ୍କ କୃପାରେ ତାହା ସଙ୍ଗେ ଆପଣଙ୍କ ବିବାହ ନିର୍ବାହ କରି ଜନକରାଜ ସନ୍ତୁଷ୍ଟ ହୁଅନ୍ତେ ଅମିତ-ପତିପ୍ରଭାବ-ପରିତୁଷ୍ଟହୃଦୟା ସୀତା ସହିତ ଆପଣ ଯେତେବେଳେ ଲଙ୍କାକୁ ପ୍ରସ୍ଥାନ କରିବେ, ତେତେବେଳେ ଭବଦୀୟ ପୁଷ୍ପକବିମାନ ପୂର୍ବବତ୍ ବିରାଜିତ ହେବ, ସନ୍ଦେହ ନାହିଁ । ମହାରାଜ ! ଆରୋହଣ କରନ୍ତୁ ।

(ରାବଣ ସାରଣ ଓ ବିଦ୍ୟୁଜ୍ଜିହ୍ୱ ସହିତ ବିମାନାରୋହଣର ଅଭିନୟ କରିବା ।)

ସାରଣ—ମହାରାଜ ! ଦେଖନ୍ତୁ ।

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଅନ୍ୟନ୍ୟ କୃତଯାନ ଯାନ ଅଧୁନା ଶଙ୍କା କରି ତ୍ୟାଜିତ
ଦେଖି ସ୍ତମ୍ଭିତ ବାରିରାଶି ସଭୟେ ନକ୍ରାଦି ଲୁକାୟିତ ।

ରତ୍ନାଦର୍ଶ ସମାନ ସୂର୍ଯ୍ୟ ରହିଲା ତା ତାପ ଅନ୍ତର୍ହିତ,
ମନ୍ଦେ ମନ୍ଦ ବହେ ସମୀର ଲତିକା ଆନ୍ଦୋଳିଲା ଯାବତ ।୨୯ ।

ବିଦୂଷକ—ଯେଉଁ ମହାତ୍ମା କୈଳାସ ସମୁତ୍ପାଟିତ କରି
କନ୍ଦୁକକ୍ରୀଡ଼ା ଆରମ୍ଭ କରିଥିଲେ, ତଥା ଚ ସୁରଶାସନଙ୍କୁ
କାରାଗୃହକୁଟ୍ଟିମୀକୃତ କରିଥିଲେ, ସେହି ଅପରିମିତ-
ମାହାତ୍ମ୍ୟଧୂରନ୍ଧର ଦଶକନ୍ଧରଙ୍କ ବିଷୟରେ ଏହା ଆଶ୍ଚର୍ଯ୍ୟ-
ଜନକ ନୁହେ ।

ରାବଣ—(ବିଗ୍ରହପୂର୍ବକ)

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

କୈଳାସାଚଳ ତୋଳନେ ମମ ଭୁଜାମୋଦପ୍ରଭାବାବଳି
ହେଲା ବ୍ୟକ୍ତ ମମାସ୍ତ୍ରଶସ୍ତ୍ରପଟୁତା ଦିକ୍‌ପାଳଜାଳେ ଦଳି ।
ଏବେ ମାୟିକନୈପୁଣ-ପ୍ରଭବ ମୋ ସାମର୍ଥ୍ୟ ବିଦ୍ୟୋତିତ
ବୈଦେହୀ ହରିବାକୁ ଉଦ୍ୟମକରି ନଷ୍ଟେ ନୁହେ ଗର୍ହିତ ।

ସାରଣ ! ଶୀଘ୍ର ବିମାନରାଜ ଚଳାଇ ନିଅ ।

ସାରଣ—ମହାରାଜ ! ଏହାର ଊର୍ଦ୍ଧ୍ୱଗତି ବେଗରେ କିଞ୍ଚିତ୍
ସାବଧାନତା ରଖନ୍ତୁ । ଏହି ଦେଖନ୍ତୁ—

ସ୍ରଗ୍ଧରା ବୃତ୍ତ ।

ଶୈଳସ୍ଥୂଳୋଡୁଚକ୍ରାନ୍ଧ ତସ୍ପୁରସରଣୀ ପାତ୍ତୁକ ପ୍ରାନ୍ତ୍ୟ ନମ୍ରେ,
ରେଖୀଭୂତାବ୍ଧିଯୁକ୍ତ ଷିତିବଳସଦନେ ହ୍ରସ୍ୱ ହେଲାଟି ଯେସନ୍ନେ ।
ବଲ୍ଲୀଗୁଳ୍ମାଗ୍ନିବୃକ୍ଷାବଳବୃତ ଚରମ-ଗ୍ରାବ ପୂର୍ବାଦ୍ରିମାନ
ଏକାକାର ପ୍ରକାରେ ଦିଶଇ ରଥଙ୍କବେ ଦେଖ ହେ ସାବଧାନ ।

ବଦ୍ଧ୍ୟକନ୍ତ—ଅହୋ ! ଏହି ବେଗଗାମି-ବିମାନରାଜର ଏଙ୍କୋ-ପ୍ରଚନମାବରେ ଅମ୍ଭେମାନେ କୌଶିକ ମହର୍ଷିଙ୍କର ପୁଣ୍ୟାଶ୍ରମରେ ଉପଗତ ହୋଇଗଲୁଁ । ଏଇ ଦେଖନ୍ତୁ, ପରିଣତଫଳପନ୍ତ୍ରିପନ୍ନବ ନୂତନତର ତରୁବୃନ୍ଦଙ୍କର କିପରି ମନୋହର ଦୃଶ୍ୟଅଛନ୍ତି ! ଅଞ୍ଜ ସୀମାପ୍ରାନ୍ତଗତ ଅରଣ୍ୟରେ ଅହିଂସ୍ରକ ମୃଗମାନେ ଓ ପକ୍ଷିମାନେ ବିହାର କରୁଅଛନ୍ତି । ଅଥଚ—

ପୃଥ୍ୱୀ ବୃତ୍ତ ।

ଧରାଧର—ନିତମ୍ବ କର୍କଶ ଶିଳାଳ-ସଂଘଟ୍ଟନେ
ବହେ ବକୁଳକୁଞ୍ଜକୁ ପରଶି କୌଶିକୀ ସସ୍ୱନେ ।
କଣ୍ଠି ଧରି କରେ କରେ ବନଜନାଳଶୋଭା ତହିଁ
କରନ୍ତି ମଧୁର ସ୍ୱର ଦ୍ୱିଜଗଣେ ପ୍ରମୋଦେ ରହି । ୩୨ ।

ରାବଣ—(ସାରଣକୁ ଚାହିଁ ସୋତ୍କଣ୍ଠେ)

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଆକଣ୍ଠାମୃତମଗ୍ନ-ତାପସଜଟାଜୂଟପ୍ରଭ୍ରମଣ୍ଡଳ
ଅଳୋଲକଭ୍ରମଯୁକ୍ତ କୋକମିଥୁନକ୍ରେଙ୍କାରବେ ସଂକୁଳ-
ଭୂଭାଗେ, ଅବତୀର୍ଣ୍ଣ ହେଉ ତୁରନ୍ତେ ଏ ଯାନ ହେ ସାମ୍ପ୍ରତ
ଏ ସ୍ଥାନେ ଜନକାତ୍ମଜା-ପରିମଳାଭୋଗୀ ବହେ ମାରୁତ । ୩୩ ।

ସାରଣ—ମହାରାଜ ! ଭବଦୀୟ ଅଜ୍ଞାପ୍ରମାଣେ ପୁଷ୍ପକ ଯାନ

ଅବତୀର୍ଣ୍ଣ ହେଲା । ଆମ୍ଭେମାନେ ସୁଧ ଏହି ରଜନ-
ରମଣୀୟ କୌଶିକୀତୀରରେ ବିମାନରୁ ଅବତୀର୍ଣ୍ଣ ହେବା ।

( ସମସ୍ତେ ଅବତରଣାଭିନୟ କରିବା )

ରାବଣ—ଅମ୍ଭମାନଙ୍କର ପ୍ରତ୍ୟାଗମନ ପର୍ଯ୍ୟନ୍ତ ବିମାନ ଅଦୃଶ୍ୟ-
ଭାବରେ ଏହିଠାରେ ଅବସ୍ଥାନ କରୁ ।

ସାରଣ—ବର୍ତ୍ତମାନ ତିରସ୍କରଣୀ ପ୍ରଭାବରୁ ଅଦୃଶ୍ୟ ଶରୀରରେ
ଅମ୍ଭମାନଙ୍କୁ ଏହି ଭୂପ୍ରଦେଶମାନଙ୍କରେ ବିଚରଣ
କରିବାକୁ ହେବ । ଦେଖନ୍ତୁ—

ମାଲିନୀ ବୃତ୍ତ ।

ଅବିରଳତର ଶାଳଶ୍ରେଣି ଅବାଳମାଳେ
ବିନିହିତ କୁଶରାଶୀ, ଅସନ ବ୍ୟାଘ୍ରଛାଲେ ।
ଦଶଇ ସୂକ୍ଷ୍ମ ଡ଼ାଳେ ବନ୍ଧ ଐଣେୟ ଚର୍ମ
ଦନୁଜମୁକୁଟ ଏହା ତାପସସ୍ଥାନ ଧର୍ମ । ୩୪ ।

ରାବଣ—ସାରଣ ! ତୁମ୍ଭେ ଠିକ୍ ସ୍ୱଭାବୋକ୍ତି ବର୍ଣ୍ଣନାରେ ସତ୍ୟ
କହୁଅଛ । ଅବ ନିଗୂଢ଼ ରହି ଅମ୍ଭମାନଙ୍କୁ ଜନଶ୍ରୁତି
ଭଲରୂପେ ବୁଝି ନେବାକୁ ହେବ ।

ବିଦୂଷକ ହି—(ଚକ୍ଷୁର୍ଦ୍ୱୟ ନିମୀଳନପୂର୍ବକ ତିରସ୍କରଣୀ ବିଦ୍ୟାର
ଅଭିନୟ କରିବା )

ରାବଣ—ଏହି ଦୁଇଜଣ ବ୍ରହ୍ମଚାରୀ କିଏ ? ସମିଧ ଓ କୁଶ-
ହସ୍ତରେ ଅଶ୍ରମାନ୍ତ ବହିଗକୁ ଚାହିଁ ଚାହିଁ ଏହି ଆଡ଼କୁ
ଆସୁଅଛନ୍ତି ।

ସାରଣ—ବୋଧହୁଏ, ଏ ଦୁହେଁ ବିଶ୍ୱାମିତ୍ରଙ୍କର ଶିଷ୍ୟ ହେବେ ।

( ବ୍ରହ୍ମଚାରୀ ଦୁହିଙ୍କର ପ୍ରବେଶ )

ପ୍ରଥମ—ସାକେତପୁରବାସୀ କୁଳପତି ଭଗବାନ୍ ବିଶ୍ୱାମିତ୍ରଙ୍କ ଆଦେଶାନୁସାରେ ଅଗ୍ନିସେବା ନିମିତ୍ତ ଅଗ୍ନିଗୃହରେ ମୁଁ ନିଯୁକ୍ତ ଅଛି; ଅତଏବ ଏହି କୌଶିକାଗାରରୁ କିଛି କୁଶ ଓ ସମିଧ ଧରି ବାହାରି ଯିବ । (ଗମନାଭିନୟ)

ଦ୍ୱିତୀୟ—ସମ୍ପ୍ରତି ମୋତେ ମଧ୍ଯ ଜନକ ମହାରାଜଙ୍କର ପୁରୋହିତ ମହର୍ଷି ଶତାନନ୍ଦଙ୍କର ଆଜ୍ଞାନୁସାରେ ସମିଧ ଓ କୁଶ ଧରି ସେହି ମହାରାଜଙ୍କର ବସତିକୁ ଯିବାକୁ ହେବ । ( ଏହା କହି ଗମନାଭିନୟ କରି ) ସଖେ ! ସତ୍ୟବ୍ରତ ! ଜନକ ମହାରାଜ କେତେ ଦିବସ ପର୍ଯ୍ୟନ୍ତ କୌଶିକାଶ୍ରମରେ ରହିବେ ?

ପ୍ରଥମ—ଯଜ୍ଞରେ କୃତସଂକଳ୍ପ ଅସ୍ମଦୀୟ କୁଳଗୁରୁଙ୍କର ଅବ-ଭୃତ ମହୋତ୍ସବର ପରିସମାପ୍ତି ଯାଏ ।

ରାବଣ—ସାରଣ ! ଏ ଦୁହେଁ ବିଶ୍ୱାମିତ୍ର ଓ ଶତାନନ୍ଦଙ୍କର ଶିଷ୍ୟ ଅଟନ୍ତି, ଗୁପ୍ତଭାବରେ ରହି ଏମାନଙ୍କର ଅନ୍ୟୋନ୍ୟ-ବିଶ୍ୱସ୍ତ ବିପ୍ରବଟୁଦ୍ୱୟଙ୍କର ରହସ୍ୟ କଥୋପକଥନ ସବୁ ଶୁଣିଯିବା ।

ସାରଣ—ମହାରାଜ ! ମହାମାନ୍ୟ ବିଦ୍ୟୁଜ୍ଜିହ୍ୱଙ୍କର ତିରସ୍କରଣୀ ବିଦ୍ୟାପ୍ରୟୋଗକୁ ଦେଖୁ ନାହାନ୍ତି କି ? ଅସ୍ମାନଙ୍କର ଆଉ ଗୋପନରେ କି ପ୍ରୟୋଜନ ?

ରାବଣ—(ସହର୍ଷେ) ଅହୋ ! ବିଦ୍ୟାର ପ୍ରଭାବ ! ବର୍ତ୍ତମାନ
ଅସ୍ମମାନଙ୍କୁ କେହ ଦୃଷ୍ଟିଗୋଚର କରି ପାରୁ ନାହାନ୍ତି,
ଏହା କେବଳ ନୁହେ; ଅସ୍ମମାନଙ୍କର ଆଳାପ ବାକ୍ୟ
ସୁଦ୍ଧା ଶ୍ରୁତିଗତ କରି ପାରୁ ନାହାନ୍ତି ।

ବିଦ୍ୟୁଜ୍ଜିହ୍ୱ—ମହାରାଜ ! ଅବ ସ୍ୱଚ୍ଛନ୍ଦରେ ବିହାର କରିବା ।

ଦ୍ୱିତୀୟ—ସତ୍ୟବ୍ରତ ! ଯଜ୍ଞବିଘାତକ ଅସୁରମାନେ ତ ସତତ
ବାଧା ଘଟାଇଥାନ୍ତି, ଭଗବାନ୍ ବିଶ୍ୱାମିତ୍ର ପୁଣି କପରି ଯଜ୍ଞ
ଆରମ୍ଭ କରିଅଛନ୍ତି ?

ସତ୍ୟବ୍ରତ—ସଖେ ଦେବବ୍ରତ ! ଶୁଣନ୍ତୁ—

ମନ୍ଦାକ୍ରାନ୍ତା ବୃତ୍ତ ।

ପୂର୍ବେ ଅନ୍ୟ ବିଦ୍ୱବକରତା ଜାଣି ସର୍ବେ ସୁପର୍ବ
ଯାଚେ ଯାଙ୍କୁ ସ୍ତୁତି ବିରଚିଲେ ବର୍ଣ୍ଣି ମାହାତ୍ମ୍ୟ ସର୍ବ ।
ବ୍ରହ୍ମା ଆପେ ମନୁଜଭବନେ ସତ୍ତ୍ୟ ସତ୍ୟ–ପ୍ରଭାବ
ଆସି କ୍ରୋଧ ପ୍ରଶମିତ କଲେ କଲ୍ପି ସୌହୃଦ୍ୟ ଭାବ । ୩୫ ।

ସେହି ମହାତପୋନିଧି ଅଗାଧସତ୍ତ୍ୱ ଗାଧେୟଙ୍କର ଏହି
ରାକ୍ଷସମାନଙ୍କଠାରୁ କାହିଁକି ଅବା ଭୟ ହେବ ?

ବିଦ୍ୟୁଜ୍ଜିହ୍ୱ—ସାରଣ ! ଏହି ବ୍ରହ୍ମଚମ୍ପର ବଚନ ଶୁଣିଲ କି ?

ସାରଣ—ଅତଏବ ମହାରାଜ । ମହାମାୟାବୀ ମାରୀଚଙ୍କୁ
କୌଶିକର ପ୍ରତିଦ୍ୱନ୍ଦୀ କରିଅଛନ୍ତି ।

ବିଦ୍ୟୁଜ୍ଜିହ୍ୱ—ଏହା ଏକାନ୍ତ ଉପଯୁକ୍ତ ଅଟେ । ଯେହେତୁ—

ଶିଖରିଣୀ ବୃତ୍ତ ।

କଦା ଧ୍ୱାନ୍ତପ୍ରାଦୁର୍ଭବ ପୁଣି କଦା ନୀରଦଘଟା
କଦା ଧୂମସ୍ତୋମୋଦ୍ଗମ ପୁଣି କଦା ଧୂଳିର ଛଟା
ପ୍ରକାଶି ବ୍ୟୋମେ ଅଦ୍ଭୁତ ସମଯୁଦ୍ଧରେ ଦୈବତକୁଳେ
ପୁରା ଏ ମାରୀଚ ପ୍ରବଳକପଟୀ ଭୀତ କରଲେ । ୩୨ ।

ରାବଣ—( ସସ୍ନେହ–ସମ୍ମାନନାପୂର୍ବକ ବଦ୍ଧାଞ୍ଜଳିହୁଙ୍କୁ ଚାହିଁ )

ଉପଜାତି ବୃତ୍ତ ।

ମାରୀଚ-ମାୟାବଳ ସର୍ବ ଜାଣେ
ସ୍ୱକୀୟ ମାୟା ପର ମନ୍ତ୍ରିରାଣ !
ଯେଣ୍ଡ୍ରାଦ୍ୟ ନାଗାଂଘ୍ରିର ନାଗବେତ୍ତା
ଥିବାରୁ ସାଦୃଶ୍ୟ ବହୁଜ୍ଞମନ୍ତ୍ରୀ । ୩୭ ।

ଦେବବ୍ରତ—ସଖେ ! ଆପଣଙ୍କର ସେହି ବଶ୍ୟାମିତ୍ରଙ୍କୁ ମହା-
ତପୋନିଧି ବିଶେଷଣ ଦେବା ଅନୁଚିତ ନୁହେ । ଦେଖନ୍ତୁ,
ସେହି କୁଳପତିଙ୍କର ପୁଣ୍ୟାଶ୍ରମରେ—

ସ୍ରଗ୍ଧରା ବୃତ୍ତ ।

କୃଷ୍ଣାବର୍ଣ୍ଣବିକାଳେ ମୃଗପତିବଦନେ ଦଂଷ୍ଟ୍ରମାଳା ବିଲୋକି
ଶୁଣ୍ଡାଳେ ହସ୍ତିପୋତ ସ୍ପରଶ କରଇ ତା ପଦ୍ମନୂଳାଳ ତର୍କି ।
ଅନ୍ୟ ସ୍ଥାନେ ଗମନ୍ତେ ନିଜହୃତଯବସ–ଗ୍ରାସଅର୍ଥେ ଚମୂରୁ
ତା ବତ୍ସା ଦ୍ୱୀପିନୀର ସ୍ତନକୁ ପିଅଇ ତା କନ୍ଦରରେ ଅଗ୍ନିରୁ । ୩୮ ।

ତଥାଚ ଏହାଙ୍କର ମାହାତ୍ମ୍ୟ ଶୁଣନ୍ତୁ—

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଯଜ୍ଞେ ଯେ ପଶୁକଲ୍ପ ତାତଜନନୀ-ବିକ୍ରୀତ ପୂର୍ବେ ଥିଲେ,
ଯୂପାବଦ୍ଧ ସଭାଧ୍ୱସେ ବିକଳରେ ସମ୍ମୋଚନାଶାଭରେ
ଅସ୍ତ୍ରବ୍ୟସ୍ତ ବିଲୋକିଲେ ଚଉଦିଗେ ଅହା ଶୁନଃଶେଫ ସେ,
ଶୀଘ୍ରେ ତାଙ୍କୁ ବିମୁକ୍ତିପୂର୍ବକ ହି ଏ ସଂସ୍ଥାପିଲେ ଶ୍ରେୟସେ । ୩୯ ।

ବିଦ୍ୟୁଜ୍ଜିହ୍ୱ—ଏହି ବ୍ରାହ୍ମଣଡିମ୍ଭ ମାରୀଚଙ୍କ ମାୟାର ବଳ ଅବଗତ କରି ନାହିଁ । ଅତଏବ ଏହା କହୁଅଛି ।

ସାରଣ—ହେଉ, ସେଥିରେ ଦୋଷ କଣ ? ସମସ୍ତେ ତ ଆତ୍ମୀୟଙ୍କୁ କେବଳ ପ୍ରଶଂସୁଥାନ୍ତି ।

ବିଦ୍ୟୁଜ୍ଜିହ୍ୱ—ଏସବୁ ଛଡ଼ା ମାରୀଚଙ୍କ ମାୟାରେ ଆଉ କିଛି ବିଶେଷତ୍ୱ ମଧ୍ୟ ଅଛି ।

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଦେବତା-ସ୍ତୁତ-ନିବେଶନେ ପଶି ଯିଏ ଅଜ୍ଞାତରୂପେ ଧୃତ,
ହୋତା ଋତ୍ୱିଜ ସର୍ବପାବଦନନେ ଖାଏ ପଶୁ ପ୍ରୋକ୍ଷିତ,
ଜାୟାଯୁକ୍ତ ଋଷିଙ୍କ ଧୈର୍ଯ୍ୟକୁ କରେ ନିଃଶେଷରେ ବିଚ୍ୟୁତ,
ମାୟାବୀ ମୟକଲ୍ପ ସୁନ୍ଦତନୁଜ ତ୍ରୈଲୋକ୍ୟରେ ବିଶ୍ରୁତ । ୪୦ ।

ସତ୍ୟବ୍ରତ—ଅତଏବ ନିର୍ବ୍ୟୂଢ଼ଃ ଯଜ୍ଞସମାପନସମର୍ଥ କୁଳପତି ତଦୀୟ ପ୍ରିୟସଖା ଇକ୍ଷ୍ୱାକୁକୁଳନାଥ ଦଶରଥଙ୍କୁ ଆମନ୍ତ୍ରଣ କରିବାପାଇଁ ଅଯୋଧ୍ୟାକୁ ଯାଇଅଛନ୍ତି ।

ସାରଣ—(ଅସହନରେ ହାସ ପ୍ରକାଶପୂର୍ବକ)

ସ୍ରଗଦ୍ଧ ବୃତ୍ତ ।

ଅଗ ଯଜ୍ଞ ଅନ୍ତରାୟ ନାଶିବାକୁ ଭୀରୁକ
ରାକ୍ଷସେଶ ଛମୂରେ ତ ଜାମଦଗ୍ନ୍ୟ କର୍ତ୍ତୃକ
ପ୍ରାର୍ଥନା କରାଇ ଅଦ୍ୟ ଧୈର୍ଯ୍ୟବନ୍ତ ହୋଇଲା
ଛଦ୍ମନୀତ ତାର ଭ୍ରାନ୍ତ ନାହିଁ ଯାଗ କଳ୍ପିଲା । ୪୧ ।

ବିଦ୍ୟୁଜ୍ଜିହ୍ୱ—ସାରଣ ! ଏହି ମତିଦୁର୍ବିଧ ବ୍ରାହ୍ମଣଶିଶୁର ବଚନରେ ଏଡ଼େ ଅସହନ ପ୍ରକାଶ କାହିଁକି ? ସତ୍ୟ କହିବାକୁ ହେଲେ ଗୂଢ଼ମନ୍ତ୍ର କୌଶିକର ମନ୍ତ୍ରଣା କାହାରିହିଁ ସୁବିଜ୍ଞେୟ ନୁହେଁ, ଏହାହିଁ ବୋଲିବାକୁ ହେବ ।

ସାରଣ—ହଁ, ତାହା ନ ହେଲେ କି ଅସ୍ମଦୀୟ ସ୍ୱାମିଙ୍କ ପ୍ରତି ପର୍ଶୁରାମଙ୍କ କର୍ତ୍ତୃକକୃତ ତଦୀୟ ପ୍ରାର୍ଥନାକୁ ନିଜ ଶିଷ୍ୟ ମଧ୍ୟ ଜାଣି ପାରି ନ ଥାନ୍ତା ? ପରଂତୁ ଏହି ଗୋପନ-ପାଟବରେ ଅବା ସେ କଣ କରି ପାରିବ ? ଏଥିରୁ ପ୍ରୟୋଜନ କଣ ?

ବିଦ୍ୟୁଜ୍ଜିହ୍ୱ—ବୋଧହୁଏ ଆପଣାର ଅଭୀଷ୍ଟ ସାଧନର କ୍ଷମତାରେ ସ୍ୱଜନମାନଙ୍କର ବିଶ୍ରମ୍ଭ ସମ୍ପୂର୍ଣ୍ଣ ନିମିତ୍ତ । ଯାହା କି ତୁମ୍ଭେ କହୁଅଛ " ଜନକରାଜ ବିରୋଧସଂଗ୍ରହଣରେ ତାହାକୁ ମଧ୍ୟସ୍ଥ କରିଅଛନ୍ତି " ବୋଲି, ଏହାହିଁ ତାହାର ପ୍ରମାଣ ।

ସାରଣ—ଜନକରାଜ ବିବେକଶୂନ୍ୟତାବଶରୁ ସିନା ଗାଧିପୁତ୍ର ବିଶ୍ୱାମିତ୍ରଙ୍କୁ ମଧ୍ୟସ୍ଥ କରିଅଛି । ତେବେ ଆପଣ ଏହାର ପରାକ୍ରମ ବିଷୟ ବିଚାର କରନ୍ତୁ ।

ସ୍ରଗ୍ଧରା ବୃତ୍ତ ।

ବାଶିଷ୍ଠ ବ୍ରହ୍ମତେଜୋଜନିତ-ଖସଶକ ମ୍ଳେଚ୍ଛମାନେ ସମ୍ପୋଷେ
ପୂର୍ବେ ବିଧ୍ୱଂସି ଯାହା ସରଥଗଜହୟା ବାହିନୀ ଅପ୍ରମେୟା ।
ସଂଗ୍ରାମେ ଅସ୍ତ୍ରଶସ୍ତ୍ର ଦ୍ୱିଶକଳ କରି ବିଦ୍ରାବିଲେ ଯାକୁ, ହାୟ !
ତଦ୍ଦୁଃଖେ ଯେ ତପସ୍ୟା ବନକୁ ଗମି କଲ୍ଲ ସେହି ଏ
କୌଶିକେୟ । ୪୨ ।

ଦେବବ୍ରତ—

ବସନ୍ତତିଲକ ବୃତ୍ତ ।

ସଂଭୂତ ପଂକ୍ତିରଥଭୂପତି—ଗୃହପୁଞ୍ଜ
ଶ୍ରୀ ଋଷ୍ୟଶୃଙ୍ଗ ଚରୁ ଯୋଗରୁ ସଞ୍ଚରନ୍ତ ।
ସ୍ୱବ୍ରହ୍ମଚର୍ଯ୍ୟ-ନିୟମେ ରତ ବୋଲି, କୀର୍ତ୍ତି
ସର୍ବତ୍ର ଭୂଷଇ ସ୍ୱଖାବଧି କମ୍ୱଦନ୍ତୀ । ୪୩ ।

ସତ୍ୟବ୍ରତ—

ସ୍ରଗ୍ଧରା ବୃତ୍ତ ।

ରାମଭଦ୍ର ସର୍ବସାର ସୌହୃଦାର୍ଦ୍ର ମାନସ
ତାତତୋଷଜାତ ହେତୁ ସଦ୍‌ଗୁଣାଢ୍ୟ-ପୌରୁଷ ।
ଭୂତଳର ମଧ୍ୟରେ ବିଧାତୃ ତୁଲ୍ୟ-ଅଦ୍ଭୁତ
କୋଶଳେ ସ୍ୱକୌଶଳେ ବିରାଜମାନ ସମ୍ପ୍ରତି । ୪୪ ।

(ଅସୂୟା ପ୍ରକାଶପୂର୍ବକ)

ରାବଣ—ଏହି କୁଶକଣ୍ଠା ବ୍ରାହ୍ମଣ ଅର୍ଦ୍ଧକଣ୍ଠା କଣ ଏପରି ଗୁଡ଼ାଏ
କହୁଅଛ ?

ବିଦୁଷ୍କଜିହ୍ୱ—ମହାରାଜ ! ଜନଶ୍ରୁତି ତ ସେହିପରି ଶୁଣାଯାଏ ।

ସାରଣ—ଅତଏବ ଏହା ପ୍ରୀତି ଜାନକୀର ପ୍ରେମ ସମର୍ଥକ ହୋଇ ଉଠିଅଛି; ତଥାଚ ଏହି କାରଣରୁ କେବଳ ବୈଦେହୀର ବିବାହ ନିମନ୍ତେ ମହାରାଜ ମଧ୍ୟ ତଦ୍ରୂପ ଗ୍ରହଣରେ ସମ୍ମତି କରିଅଛନ୍ତି ।

ଦେବବ୍ରତ—(ଶିରଶ୍ଚାଳନ କରି) ହିଁ, ମୁଁ ଜାଣେ । ଜନକ ମହାରାଜଙ୍କ ଆସ୍ଥାନରେ ଗୁରୁ ଗୌତମନନ୍ଦନ ଏତାଦୃଶ ସୁଗୁଣନିଧାନ ରାମଚନ୍ଦ୍ରାଭିଧାନ ଜଣେ ମହାତ୍ମା ଅଛନ୍ତି ବୋଲି ଅସଙ୍କୁଚିତ୍ ପ୍ରକାଶ କରିଅଛନ୍ତି କି ?

ସ୍ରଗ୍ଧରା ବୃତ୍ତ ।

ବୀରୋତ୍ତଂସ ତ୍ରିଲୋକପ୍ରିୟ ଶମ-ବିଭବ ସ୍ୱୀୟ ସୌର୍ଯ୍ୟେ ଅଗ୍ରଗୀ
ଦୀନାନୁକ୍ରୋଶକାରୀ ଚତୁର ଶୁଭମନା ଧର୍ମସତ୍ୟାନୁରାଗୀ ।
ପ୍ରଜ୍ଞାଶାଳୀ ସ୍ୱରୂପୀ ନିରୁପମ-ଧୃତି ଯେ ଅସ୍ତ୍ରଶସ୍ତ୍ରାଭିବେତ୍ତା
ଧନ୍ୟ ଶ୍ରୀରାମଚନ୍ଦ୍ର ସ୍ୱକରମ କରି ଏ ଲୋକସନ୍ଦୋହନେତା ।୪୫।

ରାବଣ—( ସପୁଲକୋଦ୍ଭେଦରେ ସ୍ୱଗତ ) କଣ ! ଏହି ଗୁଣ ବର୍ଣ୍ଣନ ଯଥାର୍ଥ ଅଟେ ! ( ପ୍ରକାଶ୍ୟରେ ) ରାଜପିଣ୍ଡୋପଜୀବୀ ଶତାନନ୍ଦ ଜନକଙ୍କ ସନ୍ନିଧାନରେ ଏତାଦୃଶ କେତେ ଅବା ପ୍ରଳାପ କରିଅଛି । ଏହି ବ୍ରହ୍ମପୋତ ସେ ସବୁ ଶୁଣିଥିବାରୁ ହିନା କହୁଅଛି ।

ବିଦୁଷ୍କଜିହ୍ୱ—(ସକ୍ରୋଧେ) ସାରଣ ! ଦେଖ ତ—

ସ୍ରଗ୍ଧରା ବୃତ୍ତ ।

ଯେ ତା ଅସ୍ମାନବାପେ ପଶି ସକପଟରେ ନାଶିଲ୍ଲ ଶୀଳସିଦ୍ଧି,
ଯେ ସୂନାମାକୁ ଦେଲେ ତଦୁଚିତ ଫଳ ଯେ ବନ୍ଧ ସନ୍ଦେହ ନରୋଧ ।
ସେହି ସ୍ତ୍ରୀସ୍ତୋପକର୍ତ୍ତା ଦନୁଜକୁଳପତି ସ୍ତ୍ରତ୍ୟବର୍ଯ୍ୟଙ୍କୁ ଚେକ
ବୈଦେହେ ରାମଚନ୍ଦ୍ର–ସ୍ତବ ପଢ଼ିଭ ଶତାନନ୍ଦ କ
ସ୍ୱାର୍ଥ ହେକ । ୪୬ ।

ସତ୍ୟବ୍ରତ—ଅତଏବ ମୁଁ ଭାବୁଅଛି, ସେହି ସଦ୍ଗୁଣଗଣନିଧାନ ରାମଙ୍କ ପ୍ରତି ସୀତାଙ୍କୁ ସ୍ୱୟଂ ଅନୁରକ୍ତା ଜାଣି ଜନକରାଜ ସକ୍ଷତ ପ୍ରକାଶ କରଅଛନ୍ତି ।

ସାରଣ—ହାୟ ! ରାମର ପ୍ରଶଂସାଜଲ୍ପକ ଏହି ଦୂରାତ୍ମାଦ୍ୱାରା କେବଳ ତତ୍ପ୍ରତି ସୀତାର ଅନୁରାଗ ସମଧିକ ବର୍ଦ୍ଧିତ ହୋଇଅଛି ।

ରାବଣ—

ଉପେନ୍ଦ୍ରବଜ୍ରା ବୃତ୍ତ ।

ବିଦେହକାନ୍ୟା ସୁଷମାତିରେକା
ବିଦେହଜା ଜାଣିଣ ରାମରକ୍ତା
ନିତାନ୍ତ ନିର୍ଦ୍ଦଗ୍ଧ ସଦାସ୍ୟ ମର୍ମ
କୃତାନ୍ତ–ସଂକାଶ ମନୋଜ କର୍ମ । ୪୭ ।

ବିଦୂଷକ—(ସକ୍ରୋଧେ ନିଶ୍ୱାସ ତ୍ୟାଗପୂର୍ବକ) ଅନାଚମାସ୍ୟ ମାଣିଚକର୍ତ୍ତୃକ ପ୍ରଥମତଃ ଅହଲ୍ୟାସ୍ୱଜନକୁ ଗତଜୀବିତ କରାଇବା ଉଚିତ; ତା ପରେ ଅନ୍ୟମାନଙ୍କର କଥା ଦେଖାଯିବ ।

ଅଥବା—

ମାଳିନୀ ବୃତ୍ତ ।

ସ୍ତୁତି ପଠନ କଲା ସେ ରାମସାପେକ୍ଷତାରେ
ଉପୃବରହିତ-ଚିତ୍ତେ ବନ୍ଧଲୋକ-ପ୍ରଥାରେ ।
ଜନକ ନୃପତି ତାହା ବାକ୍ୟରେ ହୋଇ ଥାଚି
କପଟ ଶୁଣୁଥିଲେ ସନ୍ଦେହ-ଚିତ୍ତେ ତଥାପି । ୪୮ ।

ଦେବବ୍ରତ—ହଁ, ଆପଣ ଯାହା କହିଲେ ତାହା ଠିକ୍ ହୋଇ ଥାଇ ପାରେ; ପରନ୍ତୁ ରାମଚନ୍ଦ୍ରଙ୍କୁ ପ୍ରଶଂସା କରୁଥିବା ସମୟରେ ମହାରାଜ ଅନ୍ତଦୃ୍ଷ୍ଟରୁ ଦେବଙ୍କୁ ଏପରି ମଧ୍ୟ କହିଅଛନ୍ତି ।

ସତ୍ୟବ୍ରତ—କଣ ତାହା ?

( ଅନ୍ୟମାନଙ୍କର ସାନନ୍ଦେ ଶୁଣିବାର ଅଭିନୟ )

ଦେବବ୍ରତ—

ଉପଜାତି ବୃତ୍ତ ।

ଉତ୍କଣ୍ଠିତା ହେଉ ସୁତା ନିତାନ୍ତ,
ରାମେ ପ୍ରଶଂସା କର ସୁପ୍ରଶସ୍ତ ।
ତପୋସ୍ୟ ସମ୍ବନ୍ଧ ଗରିଷ୍ଠ ସତ୍ୟ,
ତଥାପି ତାହା ତ ଅସାଧ୍ୟ କୃତ୍ୟ । ୪୯ ।

ବିଦ୍ୟୁଜ୍ଜିହ୍ୱ—ଧନ୍ୟ ଜନକରାଜ ! ଆପଣ ସମ୍ୟକ ପ୍ରବଞ୍ଚର କରିଅଛନ୍ତି ।

ରାବଣ—ସେ ତ ମହାବୁଦ୍ଧିଶାଳୀ ।

ସାରଣ—ମହାରାଜ ! ଆପଣ ସୀତାର ଅଭିଳାଷୀ ଥିବା ସ୍ଥଳେ ରାମ ପକ୍ଷେ ଅବା ତାହା ସୁସାଧ୍ୟ ହେବ କିପରି ?

ସତ୍ୟବ୍ରତ—ମହାରାଜ୍ଞ ସେପରି କାହିଁକି କହଲେ ?

ଦେବବ୍ରତ—ସଖେ ! ଜନକ ମହାରାଜ ଆହ୍ମର ତାଦୃଶ ଗୋଟିଏ କଥା କହଅଛନ୍ତି; ଆପଣ ଶୁଣନ୍ତୁ ।

ଅନୁଷ୍ଟୁପ୍ ବୃତ୍ତ ।

ବୈଦେହୀ ପ୍ରାର୍ଥନା ଇଚ୍ଛା ନୈକଷେୟ କରେ ବୋଲି ।
ଅଧୁନା ସ୍ପଷ୍ଟ ଅସ୍ପଷ୍ଟେ ପ୍ରକୃରିତ ଜନଶ୍ରୁତି । ୫୦ ।

ଅପିଚ—

ସ୍ରଗ୍ଧରା ବୃତ୍ତ ।

ସେ ତ୍ରୈଲୋକ୍ୟୈକବୀର ପ୍ରିୟସୁହୃଦ ତଥା ସୃଷ୍ଟିକର୍ତ୍ତାଙ୍କ ପୌତ୍ର
ବଂଶାର୍କଗ୍ରୀବ ଶୈବପ୍ରବର ଯଦ୍ୟ ମତେ ମାଗିବେ ଅପି ଅତ୍ର ।
ରାମସ୍ନେହୈକସକ୍ତା ଅଟଇ ତ ତନୁଜା ଦେବ ତାହାଙ୍କୁ କେହ୍ନେ,
କେହ୍ନେ ବା ନାସ୍ତି ବାଣୀ କହିବ, ହୃଦୟ ମୋ କ୍ଷୁଣ୍ଣ ହେଲା
ଅତ୍ରିଷ୍ନେ । ୫ ।

ବହୁ୍ୟକ୍ତିହ—ଜନକରାଜ ଶତାନନ୍ଦଙ୍କୁ ଉକ୍ତତ କଥା କହି- ଛନ୍ତି ।

ରାବଣ—(ସାଶ୍ରୁ ଗଦ୍ଗଦେ) ସଖେ ଜନକରାଜ ! ତୁମ୍ଭର କ୍ଳେଶ

ନ ହେଉ । ମୁଁ କଣ ତୁମ୍ଭର କ୍ଲେଶଦାୟକ କାର୍ଯ୍ୟ କରିବ ?

ସାରଣ—ମହାରାଜ ! ଆପଣ ନିଜ ରୂପରେ କନ୍ୟାପ୍ରାର୍ଥୀ ହେବେ ନାହିଁ ତ; କିନ୍ତୁ ରାମ ବେଶରେ ତାହାଙ୍କ ପାଣି–ଗ୍ରହଣ କରିବେ ।

ସତ୍ୟବ୍ରତ—(ସହାସ୍ୟେ) ଜନକ ମହାରାଜ କଣ ସତେ ଏପରି କହିଥିଲେ ? ଅଚ୍ଛା ତେବେ ଶୁଣନ୍ତୁ—

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ପୂର୍ବେ ବାଳର ରୁକ୍ଷକକ୍ଷତଳରେ ସରୁବ ଯେ ଅଗକୁ
ବାହାବଂଶଜ ବକ୍ତ୍ରପଂକ୍ତି ପୁରତେ ତେଣେ * ଚତୁଃପାଦକୁ‡
ନକ୍ଷେପି କ୍ଷମତା ନ ପାଇଣ ତନୁ ସମ୍ମୋଚନେ କମ୍ପିତ
ଯେ ଏ ରାବଣ କିପ୍ରକାର ଭୁବନେ ବୀରାଗ୍ରଣୀ ସାମ୍ପ୍ରତ । ୧୨ ।

ରାବଣ—(ସକ୍ରୋଧେ) ଏକ୍ଷଣି ଏହି ଦୁରାତ୍ମା ବ୍ରାହ୍ମଣଶିଶୁର ଗଳ ନିଷ୍ପେଷିତ କରିବ ।

(କ୍ରୋଧରେ ଉଠି ରାକ୍ଷସଦ୍ୱୟଙ୍କଦ୍ୱାରା ନିବାରିତ ହୋଇ ବସିବା)

ବଦ୍ଧ୍ୟଜିହ୍ୱ—ଧିକ୍ ମୂର୍ଖ ! ତୁ ଏ ବିଷୟରେ କିଛି ଜାଣୁ ନାହିଁ ।

---

* ତେଣେ = ପଶ୍ଚାଦ୍ଭାଗକୁ ।

‡ "କପିପ୍ରବରକକ୍ଷଗୋତ୍ରପକର୍ଷଦୋର୍ବିଂଶତେଃ ।
କିରୀଟଦଶକକ୍ରମଗ୍ରତଃ ପଦତରୁଷ୍କସ୍ୟ ଗ୍ରନ୍ଥତଃ ॥
ଅଖଣ୍ଡିତମଧୂମାର ଯଃ ସ୍ୱତନୁମୋଚନାର୍ଥଂ ପୁରା ।
କଥଂ ସ ଦଶକନ୍ଧରୋ ଭୁବନବୀରମଦୋର୍ଦ୍ଧନଃ ॥"
ମୂଳ ଗ୍ରନ୍ଥରେ ଏପରି ଅଛି ।

ସ୍ରଗ୍ଧରା ବୃତ୍ତ ।

ପୂର୍ବେ କୈଳାସ ଦେଖି ଦ୍ବିଦଶଭୁଜ-ସମୁତ୍ତୋଳନେ ବ୍ୟଗ୍ରଚିତ୍ତ
ସ୍ବସ୍ଥାନ-ଭ୍ରଷ୍ଟ କ୍ଷିତିକ୍ଷୁଭିତହୃଦୟରେ ତକ୍ଷଣେ ବିଶ୍ବନାଥ
କାନ୍ତାସଂଶ୍ଳେଷ ବର୍ଜି ସ୍ତବ ପଠନ କଲେ ଦୈତ୍ୟସନ୍ଦୋହ-
ନାଥେ ।
ଏହିପ୍ରାପ୍ୟେ ବର୍ଜେ ଜମ୍ବୁଜନିତ ମହାକୀର୍ତ୍ତିସନ୍ଦେହ ଏଥେ ।୫୩।

ରାବଣ—( ବିନୟାଭିନୟରେ ) ବିଦ୍ୟୁଜ୍ଜିହ୍ବ ! ତାହା ବକ୍ତବ୍ୟ ନୁହେ । ସେହି ସ୍ତୁତ୍ୟବର୍ଯ୍ୟ ଭଗବାନ୍ ମହେଶ୍ବର ସ୍ତୁତି କରିବା କଥାଟା କହ ନାହିଁ । ପୂର୍ବେ ମୁଁ ଯେତେବେଳେ କଠୋର ତପସ୍ୟାରେ ରତ ଥିଲି, ସେହି ସମୟର ଗୋଟିଏ କଥା ଶୁଣ ।

ମାଲିନୀ ବୃତ୍ତ ।

ଧରଣିଧରତନୂଜା-ବକ୍ଷବାଞ୍ଛୀକିଯୁକ୍ତ—
କରକମଳତଳେ ଯେ ପାର୍ବତୀପ୍ରାଣକାନ୍ତ
ସକରୁଣ କହିଲେ ସଂମାର୍ଜି ମୋ ଶୀର୍ଷପଂକ୍ତି
ଅନବରତତପେ ହା ! କ୍ଷୀଣ ତୁ ବ୍ରହ୍ମନାତ । ୫୪ ।

ଦେବବ୍ରତ—ସତ୍ୟବ୍ରତ ! ତୁମ୍ଭେ ଏପରି କଣ କହୁଅଛ ? କାହାର ଅବା କେଉଁଠି ଅକସ୍ମାତ୍ ପ୍ରତାପ ସ୍ଖଳନ ହେଲେ, ତାହା କଣ୍ଡୁ ଗୋଟିଏ ପ୍ରଧାନ ଦୋଷରେ ଗଣ୍ୟ ନୁହେ ତ ।

ରାବଣ—(ସାସୂୟ ହାସ୍ୟ ପ୍ରକାଶପୂର୍ବକ) ପ୍ରତାପସ୍ଖଳନ୍ କପରି !

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଡାକନ୍ତେ ମୂର୍ଖ ଯୁଦ୍ଧପାଇଁ ସୁବଳୀ ଭାବି ଭ୍ରମେ ବାଳକ,
ଯେ ବୋଧେ ଭୁଜରେ ନ ଜାଣି ମମ ସଂପ୍ରୀତା ଭୁଜାପାଳକ ।
ମୃତ୍ୟୁ ଯାଦ୍ୟାତଜ ମୋହ ପାଇ ଅରଜେ ମୋ ସୈନ୍ୟ-ସଞ୍ଚାଳକ,
ମୁଁ କେତେ ସ୍ଖଳିତ-ପ୍ରତାପ ଅଧୁନା ପାଏ ବୃଥା ଗାଳକ । ୫୫ ।

ସାରଣ—ଯେଉଁମାନେ ମୂର୍ଖ-ପ୍ରକୃତ, ସେମାନେ କେବଳ
ଲଙ୍କେଶ୍ୱରଙ୍କର ପ୍ରତାପ ଗରିମା ଜାଣି ପାରନ୍ତି ନାହିଁ ।

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଯେ ଉତ୍ତୋଳି ସହେଳଖେଳନପଟୁ ପ୍ରାପ୍ୟେ ତ କୈଳାସକୁ
ତତ୍ ବିଂଶାର୍ବ୍ବକରେ ଭରେ ସହଜରେ ନିକ୍ଷେପି ଆକାଶକୁ,
ଶ୍ରଦ୍ଧାରେ ଦଶହସ୍ତରେ ଧରିଥିଲେ ଆଲୋକ ତା ପାତକୁ
ସେ ତ୍ରୈଲୋକ୍ୟଜୟୀଙ୍କ ତୁଲ୍ୟ କରି କେ ବୈଧେୟ ଏକାଶକୁ ।୫୬।

ସତ୍ୟବ୍ରତ—ଦେବବ୍ରତ ! ସ୍ମରଣୀୟ କଳଙ୍କ ଆଚ୍ଛାଦନାର୍ଥ
ଆପଣଙ୍କର ଯେ ଚେଷ୍ଟା, ବର୍ତ୍ତମାନ ତାହା ବୃଥା ହେଲା ।
ବିଚାର କରନ୍ତୁ ଯେ—

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ପୂର୍ବେ ନର୍ମଦ ନର୍ମଦା ସଲିଳରେ ଲୀଳାବିହାରୋଦ୍ୟତ
ରୋଧି ସ୍ରୋତ ସହସ୍ର ଅର୍ଦ୍ଧ ଭୁଜରେ ନାରୀଗଣେ ସଙ୍ଗତ ।
ହୈହୟାଧିପ ଖେଳିବା ସମୟରେ ବେଣୀ କରି ଯୋଜିତ
ଯୁଦ୍ଧାର୍ଥେ ଗମି ଏ ଦଶାସ୍ୟ ତ ଥିଲା କାରାକୁଟୀମୀଳିତ । ୫୭ ।

ରାବଣ—ଅହୋ ! ଏହି ଦୁରାତ୍ମା ମଧ୍ୟ ସେହି ମୂଢ଼ହୀନ ତ୍ରିଶଙ୍କୁ-
ଯାଜକର ଶିଷ୍ୟତ୍ୱରୁ ତଦନୁରୂପ ଅସଭ୍ୟ ପ୍ରଳାପ କରୁ-
ଅଛି । ଏ ରାକ୍ଷସମାନଙ୍କର କବଳିତ ହେବା ଉଚିତ ।

ଦେବବ୍ରତ—ସେ କଥା ତେବେ ଥାଉ, ଏହା ଶୁଣ ତ ।

ସ୍ରଗ୍ଧରା ବୃତ୍ତ ।

ଅତ୍ୟନ୍ତାଶ୍ଚର୍ଯ୍ୟଚର୍ଯ୍ୟ ବୈଦବଚର ଦଶପୁତ୍ରମାନଙ୍କ ଆଗେ
ପାପିଷ୍ଠେ ପାଇ ରକ୍ଷା ନିରସ୍ତ୍ରରୁ କହିଲେ ବନ୍ଦନା ଯାକୁ ଅଗେ ।
ଯାହା ହାସ ପ୍ରକାଶେ ଦ୍ରୁତଗତି ମହିଷଭ୍ରଷ୍ଟ ହେବାରୁ ଘୋର
ଔଦ୍ଧତ୍ୟେ ମତ୍ତ ଦୈତ୍ୟେ ପ୍ରହସନ କହିଲେ କିମ୍ବା ସେ ନିନ୍ଦ୍ୟ
ବୋଲି ? । ୪୮ ।

ବନ୍ଦ୍ୟୁକ୍ତିହ—ଦେବବ୍ରତ ! ତୁମ୍ଭେ ସାଧୁ ଅଛ । ତ୍ୱଦୀୟ ବଚନ
ଶ୍ରବଣରେ ଅମନ୍ଦ ଆନନ୍ଦ ଜନ୍ମେ ।

ସାରଣ—ଏ କେବଳ ସାଧୁ, ଏହା ନୁହେ; ଏ ପୁଣି ଯାହାଙ୍କର
ଶିଷ୍ୟ, ସେ ମଧ୍ୟ ସାଧୁ ଅଛନ୍ତି ।

ରାବଣ—

ଅନୁଷ୍ଟୁପ୍ ବୃତ୍ତ ।

ଯେ ଯେ ଜନକ ସମ୍ବନ୍ଧୀ ସେ ସମସ୍ତେ ମମ ପ୍ରିୟ ।
ଚମ୍ପାପୁଷ୍ପର ସଂଯୋଗେ ଯଥା ସପୁଟବାସିତ ॥

ସତ୍ୟବ୍ରତ—ଅମ୍ଭେ ତୁମ୍ଭଙ୍କର ଏତାଦୃଶ ବୃଥା ବାକ୍ୟକଳହରେ

ସମସ୍ତ ଅତିକ୍ରାନ୍ତ ହେଉଅଛି । ଚାଲନ୍ତୁ, ଗୁରୁକୁଳକୁ ବାହାରିଯିବା ।

( ଦୁହେଁ ନିଷ୍କ୍ରାନ୍ତ । )

ରାବଣ—ଅମ୍ଭେମାନେ ମଧ୍ୟ ପରିଦୃଶ୍ୟମାନ ଏହି କୌଶିକୀତୀରର ପର୍ଯ୍ୟନ୍ତଭୂଷିତ ଅରଣ୍ୟର ଭୂଷଣସ୍ୱରୂପ ସହକାର-କାନନରେ ବିହାରପୂର୍ବକ ତବ ତବ ପ୍ରଚଳିତ ବୃତ୍ତାନ୍ତ-ମାନ ଶ୍ରବଣ କରି ଜାନକୀଜନ୍ମମହିମାରେ ପୂତପୂର୍ବ-ପୁଣ୍ୟପୁଞ୍ଜ ଜନକରାଜଙ୍କ ନିକଟକୁ ପ୍ରସ୍ଥାନ କରିବା ।

ଇତର ଦୁହେଁ—ମହାରାଜଙ୍କର ଯେ ଅଭିରୁଚି ।

( ସମସ୍ତେ ନିଷ୍କ୍ରାନ୍ତ )

ଇତି ପ୍ରଥମ ଅଙ୍କ ।



# ଦ୍ୱିତୀୟ ଅଙ୍କ ।



ଅତ୍ରି ଓ ଅନସୂୟାଙ୍କର ପ୍ରବେଶ ।

ଅତ୍ରି—ଅନସୂୟେ ! ଯଜ୍ଞାର୍ଥ କୃତନିଶ୍ଚୟ ମହର୍ଷି ବିଶ୍ୱାମିତ୍ରଙ୍କ କର୍ତ୍ତୃକ ଆହୂତ ହୋଇ ବର୍ତ୍ତମାନ ଆମ୍ଭେ ତୁମ୍ଭ ସହିତ ତଦୀୟ ଆଶ୍ରମରେ ପ୍ରବିଷ୍ଟ ହେଲୁଁ ; କିନ୍ତୁ ଜନକରାଜଙ୍କ ସହ ଅତ୍ର ସମାଗତ ବତ୍ସା ଜାନକୀର ହସ୍ତରେ କି ଉପହାର ଦେବୁଁ ; ଏହାହିଁ ଭାବୁଅଛୁଁ ।

ଅନସୂୟା—ତେବେ ଦେବତାପ୍ରଦତ୍ତ ଚୀନାଂଶୁକ ଆଉ ଅଙ୍ଗରାଗ ମୋଠିଁ ଅଛି । କୁଳସ୍ତ୍ରୀ ଯଦି ତାହା ଧାରଣ କରିଥାନ୍ତି, ଯକ୍ଷ ଓ ରାକ୍ଷସମାନଙ୍କର ତର୍ଜନାରେ ମଧ୍ୟ କାତର ହେବେ ନାହିଁ, କିମ୍ୱା ନୈସର୍ଗିକ ସ୍ୱଭାବ କଦାପି ଛାଡ଼ିବେ ନାହିଁ ।

ଅତ୍ରି—ତାହାହେଲେ ଭଲ ହେଲା । ଶୁଣୁଅଛୁଁ, ରାବଣ ଜାନକୀର ପ୍ରାର୍ଥନାରେ ଉଦ୍ୟତ ଅଛି ।

(ପୂର୍ବେଭାଗକୁ ଅନାଇ)

ଏ ପୁଣି କିଏ ? ଦୁଇ ହାତରେ ସରସ ସରୋଜପତ୍ର ଆଉ ମୃଣାଳଗୁଡ଼ିଏ ଧରି ଯାଉଅଛି ।

ଅନସୂୟା—ମୁଁ ମନେ କରେଁ, ଏ ଜାନକୀର ସଖୀ ସୁଚରିତା ହେବ ! ବୋଧହୁଏ ସୀତା ବିରହାଗ୍ନି ସଂତାପ ଯୋଗୁଁ,

ନୃତ୍ୟେ ତ ଅତୀବ ଆତପରେ ଗମନାଗମନ କରିବା ହେତୁରୁ ବଡ଼ ଅସୁସ୍ଥା ହୋଇଅଛି ।

ଅତ୍ରି—( ସ୍ମରଣାଭିନୟପୂର୍ବକ ) ମୁଁ ସମାଧିସିଦ୍ଧ ଦୃଷ୍ଟିରେ ଦେଖି ପାରୁଅଛି, ମଦନାଗ୍ନି ସନ୍ତାପରେ କେବଳ ସୀତା ଅସୁସ୍ଥା ହୋଇଅଛି ।

ମନ୍ଦାକ୍ରାନ୍ତା ବୃତ୍ତ ।

ଯେ ସୌନ୍ଦର୍ଯ୍ୟେ ମନମଥ ଜଣେ ରାମ ଲୋକାଭିରାମ ।
ସ୍ୱୟମ୍ବରେ ଜନକଦୁହିତା ଦେଖି ତାଙ୍କୁ ପ୍ରକାମ ।
ସ୍ନେହାଧିକ୍ୟ-ପ୍ରବଣହୃଦୟା ତ୍ୟକ୍ତ—ଅନ୍ୟାନ୍ୟକାମା ।
ପୀଡ଼ାଭୋଗେ କଣଳତଳପେ ଶାୟିନୀ ତଦଗତାତ୍ମା । ୧ ।

ଅଚ୍ଛା ହେଉ, ତେବେ ତୁହେଁ ଜନକନୃପତିଙ୍କ ନିକଟକୁ କେବଳ ଯିବା ଚାଲ ।

( ତୁହେଁ ନିଷ୍କ୍ରାନ୍ତ )

ବିଷ୍କମ୍ଭ ।

ଅନନ୍ତର ସାରଣ ଓ ବିଦ୍ୟୁଜ୍ଜିହ୍ୱ ସଙ୍ଗେ ରାବଣର ପ୍ରବେଶ ।

ରାବଣ—

ସ୍ରଗ୍ଧରା ବୃତ୍ତ ।

ଆହା ଯାହାର ଶୋଭା ବିଷମବିଶିଖର ପ୍ରେୟସୀ ଦେଖି ରଙ୍କ ।
ଯା ଅବତାର ଯଜ୍ଞ-ପ୍ରସୂତ ଧରଣୀରେ ନୈବ ପୀରଧ୍ୱଜଙ୍କ ।

ସେ ତ୍ରୈଲୋକ୍ୟକଳାନ୍ତା ନସ୍ପୃହବଳରୁ ମୋ ହେବ
ସଂହୃଷ୍ଟ ହେଜ ।
ସାଷ୍ଟର୍ଯ୍ୟାନନ୍ଦକନ୍ଦାମୃତଜଳନିଧିରେ ମଗ୍ନ ମୋ ଚିତ୍ତ ଥାକ । ୨ ।

ସାରଣ ! କହିଲ ଭଲ, ସେହି କୌଶିକାଶ୍ରମକୁ କେଉଁ ବାଟେ ଯିବାକୁ ହେବ ?

ସାରଣ—ଏହି ବକଙ୍କତାରଣ୍ୟର ଦକ୍ଷିଣ ଓ ପଲାଶାଟବୀର ଉତ୍ତରରେ ପରିଦୃଶ୍ୟମାନ ମାର୍ଗ ଦେଇ ଯିବାକୁ ହେବ ।

ବିଦୂଷକ—ମହାରାଜ ! ଏହି ବାଟେ ଆସନ୍ତୁ । (ସମସ୍ତେ ଚାଲିବା)

ରାବଣ—ସାରଣ ! ଏହି କୌଶିକୀ ନଦୀତୀରରେ ମଧ୍ୟ ଅନ୍ୟ ଗୋଟିଏ ନନ୍ଦନବନ ଅଛି ?

ସାରଣ—ମହାରାଜ ! ଏ ନନ୍ଦନବନ ନୁହେ ।

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ମାକନ୍ଦେ ବସି ଗାନ କୋକିଳ କରେ ମାଧୁର୍ଯ୍ୟଧୂର୍ଯ୍ୟ-ସ୍ୱରେ
କୁମ୍ଭକେଶର କୋରକାବଳିରୁ ଆମୋଦପ୍ରବାହ ସ୍ଫୁରେ ।
ଛାୟାରମ୍ୟ ସୁଶୀତଳ-ସ୍ଥଳ ଅଟେ ରମ୍ୟା ଗୁବାକାଗମେ
ଏ ଋଷ୍ୟାଶ୍ରମ ଦେଖି ମାନସ ତଥା ସନ୍ତୁଷ୍ଟ ତୋଷାଗମେ । ୩ ।

ବିଦୂଷକ—ଅହୋ ! ସେହି ମୁନିଙ୍କ ଆଶ୍ରମର କି ମନୋହାରିତା ଯେ !

ସ୍ରଗ୍ଧରା ବୃତ୍ତ ।

ଛୂଗପ୍ରଚ୍ଛିନ୍ନ ପକ୍ୱ ପ୍ରସବଚୟ ଯତ୍ର ଶ୍ରୀ ପ୍ରକାଶେ ବଶେଷେ ।
ରମ୍ଭା ନମ୍ରା ସୁଲୋଲା ପ୍ରଚୁର ଫଳଭରରେ ବାୟୁ ତା ସ୍ପର୍ଶି ଆସେ ।
ମୂଳେ ମାକନ୍ଦବୃନ୍ଦ ସ୍ୱପରିଣତ ଫଳବ୍ରାତ ସମ୍ପତ୍ତି ସଙ୍ଗେ ।
ନାରିକେଳୀ ସୁନାରୀସ୍ତ-ନଭରସୁଷମାପ୍ରର୍ଦ୍ଧିନୀ ହାସ୍ୟ ରଙ୍ଗେ ।୪।

ନେପଥ୍ୟରେ—

ଯେତେବେଳେ ପ୍ରିୟସଖୀ ଶୀଳବତୀ ଚିତ୍ର ଲେଖିବା ନିମନ୍ତେ ଚିତ୍ରର ସାମଗ୍ରୀ ଆଣିବାପାଇଁ ଆଉ ଶୀତଳୋ-ପଚାର ନିମିତ୍ତ ସୁଚରିତା ସଖୀ ପଦ୍ମପତ୍ର ଆଣିବାପାଇଁ ବାହାରିଗଲେ, ସେତିକବେଳରୁ ନିର୍ଜନ ଦେଖି ବଳବନ୍ତ ମନ୍ମଥ ମୋତେ ନିତାନ୍ତ ବାଧା ଦେଉଅଛି । ହାୟ ! କି ଉପାୟ କରିବି !

ରାବଣ—(ଶ୍ରବଣାଭିନୟରେ)

ଇନ୍ଦ୍ରବଜ୍ରା ବୃତ୍ତ ॥

ନିର୍ମନ୍ଦ ମାକନ୍ଦ ମରନ୍ଦପାନେ
ସୁବ୍ୟକ୍ତ କଣ୍ଠ-ସ୍ୱର ହୋଇ ତାନେ ॥
କନ୍ଦର୍ପ ଭେରୀବଳି ପାଠ କଲୁ
ଗାଏ ପିକସ୍ତ୍ରୀ କି ହୃଏ ବକଲୁ । ୫ ।

ସାରଣ—ମହାରାଜ ! ବର୍ଣ୍ଣମାନଙ୍କର ମନୋହର ସୁସ୍ପଷ୍ଟ ଉଚ୍ଚାରଣ ଭଲରୂପେ ଶୁଭୁଅଛି । ଏହା ପିକଶବ୍ଦ ନୁହେଁ । ମୁଁ ମନେ କରେଁ ଶାରିକା ପଢ଼ୁଥିବ ।

ପୁନରପି ନେପଥ୍ୟରେ—

ଭଗବନ୍ ପ୍ରସୂନବିଶିଖ ! ଏହି ଚିତ୍ରଫଳକରେ ମଦୀୟ ପ୍ରିୟଜନଙ୍କର ସୌମ୍ୟ ରୂପ ଲେଖି ଥରେ ମାତ୍ର ଦର୍ଶନ କଲା ପରେ ତୁମ୍ଭ ସକାଶେ ମୋର ପ୍ରାଣ ବିସର୍ଜନ କରିଦେବି, କ୍ଷଣମାତ୍ର ମୋ ପ୍ରତି ସଦୟବୁଦ୍ଧି ପ୍ରକାଶ କର ।

ରାବଣ—(ଆକର୍ଣ୍ଣ) ବୋଧହୁଏ କେହି ଜଣେ ପ୍ରିୟଜନବିରହ-ସନ୍ତପ୍ତହୃଦୟା ଅସହ୍ୟ ବେଦନାରେ ବିଳାପ କରୁଅଛି । ଅଚ୍ଛା,ଭଲରୂପେ ଦେଖ ତ କେହି ସେ ସ୍ପଷ୍ଟ ଜଣାଯିବ ।

ମାଳିନୀ ବୃତ୍ତ ।

ମଦକଳ-ପିକଯୋଷା ଶାରିକାଗୀତ ଯେହ୍ନେ
ଶୁଭଇ ମଧୁରବାଣୀ ବର୍ଷି ପୀୟୂଷ ତେହ୍ନେ ।
ତ୍ରିଭୁବନ-ଗତ ଶୋଭା କାନ୍ତି ଲାବଣ୍ୟ-ସାର
ବହିଥିବ ମୃଦୁଦେହେ ମାନସେ ଏ ବିଗ୍ଭର । ୬ ।

ସାରଣ—ମହାରାଜଙ୍କର ଯେ ଆଜ୍ଞା । (ତତ୍ର ଯାଇ ପୁନରପି ପ୍ରବେଶି ସାଶ୍ଚର୍ଯ୍ୟେ) ମହାରାଜ ! କୁତ୍ରାପି କେହି ଦିଶୁ ନାହିଁ । କେ ଜାଣି କେ ଅବା ଏପରି କହିଲା କିଛି ଜଣାଯାଉ ନାହିଁ ।

ରାବଣ—( ସାଶ୍ଚର୍ଯ୍ୟେ ଉତ୍ଥାନ ପୂର୍ବକ ନିରେଖି ) କଣ ! ଏଠାରେ କେହି ତ ଦିଶୁ ନାହିଁ, କିପରି ଏପରି ବଚନ ଶୁଣାଗଲା ? ଏତ ବଡ଼ ଆଶ୍ଚର୍ଯ୍ୟର ସ୍ଥାନ ଜଣାଯାଏ ।

ପୁନରପି ନେପଥ୍ୟରେ—

ବନସ୍ୟ ପତ୍ର ପ୍ରାର୍ଥନା କରୁଥିଲେହେଁ, ହାୟ ! ସେହ
ନନ୍ଦସ୍ୟ ମନ୍ମଥ ମୋତେ ଅତ୍ୟୁର ବାଧା ଦେଉଅଛୁ ।

ସାରଣ—ଅହୋ ! ପୁନରପି ସେହ ନରାଶ୍ରମ୍ୟ ବଚନ ଶୁଭୁଅଛୁ ତ !

ସ୍ୱବଣ—ହାୟ ହାୟ ! ବନା ମେଘରେ ଅମୃତ ବୃଷ୍ଟି ହେଉଅଛୁ ।
ଏହ ବିଷ୍ୟାଶ୍ରମ ବ୍ୟାପାରର ମହିମା ଅଚନ୍ତ୍ୟ ଅଟେ ।

ପୁନରପି ନେପଥ୍ୟରେ—

ଏବେ ବିଷଭକ୍ଷଣ ମାତ୍ର ଗତ ।

ସମସ୍ତେ—( ସ୍ମବଣାଭିନୟ କରି ) ବୋଧହୁଏ କେହ ଜଣେ
ବରହୋତ୍କଣ୍ଠିତା ଅମ୍ଭମାନଙ୍କର ଦୃଷ୍ଟିର ଅଗୋଚର
ରୂପେ ରହ ଏତାଦୃଶ ବଳାପ କରୁଅଛୁ ।

(ଜବନକାକୁ ଠେଲି ପଦ୍ମପତ୍ରହସ୍ତା ସୁଚରତାର ପ୍ରବେଶ)

ସୁଚରତା—ପ୍ରିୟସଖି ! ଏପର ଅମଙ୍ଗଳ କଥା କହ ନାହିଁ ।

(ପ୍ରବାଳଶଯ୍ୟନଗତା ସୀତାଙ୍କର ପ୍ରବେଶ)

ସୀତା—ଅଥବା ହୃଦୟବଲ୍ଲଭଙ୍କର ମୁଖଚନ୍ଦ୍ର ଦର୍ଶନ ସୁଖ
କେବଳ ଗତ । (ଏହା କହ ମୂର୍ଚ୍ଛିତା ହେବା)

ସୁଚରତା—ସଖି ! ସ୍ଥିର ହୁଅ, ସ୍ଥିର ହୁଅ । ହୃଦୟ ଧର ।
(ପଦ୍ମପତ୍ରରେ ବଞ୍ଚିବା)

ରାବଣ—

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ବାଲା ସନ୍ତତ କାନ୍ତଚନ୍ଦ୍ରନଭରେ ହୋଇ ତ ସମୋହିତା ।
ବସେ ତେଣୁ ସବାର ବାରିଜଦଳେ ତା ସଙ୍ଗିନୀ ଦୁଃଖିତା ।
ବାରେ ହେବ କି ମାରପୀଡ଼ନଭର ମୋ ନେବ ମାର୍ଗେ ସ୍ଥିତା ?
ଏ ବାଧାକୁ ବଳେଣ ଯାଚିବ ହରି, ହା ! ତା ଦଦୃକ୍ଷା ବୃଥା ।୭।

ସାରଣ—ସେ ତ ଦିଶୁ ନାହିଁ । ତାହାର ସଖୀ ମାନ ଦିଶୁଅଛୁ ।
ଏ ବଡ଼ ଆଶ୍ଚର୍ଯ୍ୟର କଥା ।

ବଦ୍ଧ୍ୟକ୍ଷିହ୍ନ—କ୍ରମଶଃ ତାହା ମଧ୍ୟ ଜାଣି ପାରିବା ।

ସୁଚରିତା—ଏହାର ସନ୍ତାପ ଅମାପ ହେଲାଣି । କିଛି ଚନ୍ଦନ ପତ୍ରର ରସ ସିଞ୍ଚିବା । (ଦୁଇହାତରେ ଚନ୍ଦନ ପତ୍ର ମନ୍ଥିବା)

ରାବଣ—

ଆର୍ଯ୍ୟା ବୃତ୍ତ ।

ଚନ୍ଦନର ମୃଦୁ ପଲ୍ଲବ ନିଷ୍ପେଷିତ କରନ୍ତି ତ ସଖୀ ହସ୍ତେ ।
ତାହାର ଶୋଭଙ୍ଗୀ—ଦେହ ମାର୍ଦ୍ଦବ ଅପହୃତ ଭାବ । ୮ ।

ସୁଚରିତା—(ସେଚନ କରି) ସଖି ! ଚନ୍ଦନ ରସ ସେଚନରେ ତୋର କିଛି ସୁଖ ବୋଧ ହୁଏ କି ?

ସୀତା—( କଷ୍ଟରେ କମ୍ପିତ ଆଶ୍ୱାସିତା ହୋଇ ) ଆଉ କେତେକାଳ ପର୍ଯ୍ୟନ୍ତ ସଖୀମାନଙ୍କର ଏପରି ଅଭ୍ୟାସ-କାରିଣୀ ହେବି ?

ସୁଚରିତା—ସଖି ! ଏକ୍ଷଣି ମୁଁ ଶୁଣିଲି, ଆସନ୍ତା କାଲି ତୋର ପ୍ରିୟବଲ୍ଲଭ ଆସିବେ ।

ସାରଣ—ଆଉ ଅନ୍ୟ କେହି ସେ ? ଏହାର ପ୍ରିୟ ବଲ୍ଲଭ ।

ରାବଣ—ଯେ ଅମିତ ପୁଣ୍ୟ କରିଅଛୁ ।

ସୀତା—ସଖି ! ଆଗାମୀ ଦିନଯାଏ ଏ ଅଭାଗିନୀ ପ୍ରାଣ ଧାରଣ କରି ପାରିଥିଲେ ସିନା ?

ରାବଣ—

ଉପେନ୍ଦ୍ରବଜ୍ରା ବୃତ୍ତ ।

ଯାହାକୁ ଏ ପ୍ରେମଭରରେ ନିରେଖି
ସ୍ମରେଷୁଖିନୀ ମୃଗଶାବକାକ୍ଷୀ ।
ସଂସାରରେ ସେ ଶତ ଧନ୍ୟ ଧନ୍ୟ
ହୁଏ ଉଦାସୀ ଅଥବା ଅଧନ୍ୟ । ୯ ।

ସୁଚରିତା—ସଖି ! ଏପରି କାହିଁକି କହୁଅଛ ? ଚିତ୍ରଲିଖିତ ବଲ୍ଲଭଙ୍କର ଦର୍ଶନରେ ଏକଦିନ ମାତ୍ର ଅତିବାହିତ କର ।

(ଅନନ୍ତର ଚିତ୍ରସାମଗ୍ରୀହସ୍ତା ଶୀଳବତୀର ପ୍ରବେଶ )

ଶୀଳବତୀ—ସଖି ! ଏହି ନିଅନ୍ତୁ ଚିତ୍ରଫଳକ ଆଉ ଚିତ୍ର ସମ୍ଭାର । (ସବୁ ସମର୍ପଣ କରିବା)

ସୁଚରିତା—ସଖି ! କଷ୍ଟ କଷ୍ଟରେ ଧୈର୍ଯ୍ୟ ଧରି ଲେଖିବାର ଆରମ୍ଭ କର ।

ସୀତା—(ଚିତ୍ରଫଳକ ଧରି ଗାତ୍ରସ୍ତମ୍ଭ ଅଭିନୟ କରିବା )

ସୁଚରିତା—ସଖି ! କଣ ବିଚାର କରୁଅଛ ?

ଶୀଳବତୀ—ସୁଚରିତେ ! ଆଉ ପଚାରୁଛ କଣ ? ଯେଉଁ ମହାନୁଭବଙ୍କୁ ନବାସମୟରେ କନ୍ଦର୍ପ ଦେଖାଇଥିଲା, ତାହାଙ୍କୁ ।

ସାରଣ—ମହାରାଜ ! ଆପଣଙ୍କର ଜୟ, ଆପଣଙ୍କୁ ଛାଡ଼ି ଏହି ବ୍ରହ୍ମାଣ୍ଡରେ ଆଉ ମହାନୁଭବ କିଏ ଅଛି ?

ରାବଣ—ମନରେ କୁତୂହଳ ଜନ୍ମୁଅଛି । ଅଚ୍ଛା, ଆଗକୁ କି ହେବ ଦେଖା ଯାଉ ।

ସୀତା—

ପ୍ରହର୍ଷିଣୀ ବୃତ୍ତ ।

ସେ ଲଙ୍କା ବରଜନ ଯେ ଥିଲା ଗରିଷ୍ଠା ।
ଏବେ ମୋ ଧୃତି କି ଧରେ ଅନଳ୍ପକଷ୍ଟା ।
ହେ କାମଜ୍ୱର ହୁଅ ଅଦ୍ୟ ପୁଣ୍ୟ-ପାତ୍ର ।
ଦେ ମୋତେ ଅବସର ଅଳ୍ପକାଳ ମାତ୍ର । ୧୦ ।

( କଷ୍ଟେ କଷ୍ଟେ ଲେଖିବା । )

ରାବଣ—

ଶିଖରିଣୀ ବୃତ୍ତ ।

ଯଥା ସ୍ଥାନେ ନେବଦ୍ରୁମ ନନ୍ଦନ ସେ ନନ୍ଦିମିଷରେ
ଯଥା ଲେଖେ ଲେଖାବଳି ଲଳିତ ଅଳେଖ୍ୟପଟରେ ।
ତଥା ମୋ କର୍ଣ୍ଣେ ତା କରବଳୟଶିଞ୍ଜା କଳରବ
ଜଣାଏ ଶୁଭ୍ରାଙ୍ଗୀ-ପଟଲିଖନ ନୈପୁଣ୍ୟ ବିଭବ । ୧୧ ।

ସୀତା—ସଖି ସୁଚରିତେ ! ଦୁଷ୍ମନ୍ତଜନଙ୍କର ମୂର୍ତ୍ତି ଲେଖନ ପ୍ରୟାସରେ ଅବା କି ପ୍ରୟୋଜନ ? ଏହା ଭାବି ମୋର ହୃଦୟ ଲଜ୍ଜିତ ହୁଏ ।

( ଅଶ୍ରୁ ତ୍ୟାଗ କରିବା )

ରାବଣ—ବୋଧହୁଏ ବାଳିକା କଷ୍ଟେ ଦୁଃଖରେ ରୋଦନ କରୁ-ଅଛି, ଯେହେତୁ—

ସୁମୁଖୀ ବୃତ୍ତ ।

ନୟନାଞ୍ଜନରେ ତଥା ମିଶି ବହୁ ଅଶ୍ରୁ କପୋଳ କୁଙ୍କୁମେ ।
ଅରବିନ୍ଦପରାଗ-ଭୂଷିତ-ଭ୍ରମରୀର ପରି ମନୋରମେ । ୧୭ ।

ସୁଚରିତା—ସଖି ! ତୋର ସେହି ପ୍ରିୟଜନ ସୁଲଭ ଅଟନ୍ତି । କାହିଁକି ବୃଥାରେ କାନ୍ଦୁଅଛୁ ?

ସୀତା—( ମୁଖ ପୋଛି ପୁନରପି ଲେଖିବା )

ଶୀଳବତୀ—(ରହସ୍ୟରେ) ସଖି ସୁଚରିତେ ! ଅନୁମାନ କରେଁ, ସେହି ମହାତ୍ମାଙ୍କ ପ୍ରତି ଆମ ପ୍ରିୟସଖୀର ପ୍ରେମ ଅତି ବଳିଆର ହେଲଣି । ଦେଖ, ତଦୀୟ ସ୍ମରଣ ମାତ୍ରକେ ଗଣ୍ଡମଣ୍ଡଳରେ ଅବିରଳ ରୋମାଞ୍ଚପୁଞ୍ଜ ଓ ଲେଖୁ ଲେଖୁ ଅଙ୍ଗୁଳମାନଙ୍କରେ କମ୍ପ ଜନ୍ମୁଅଛି । ଆଉ ସେ ନଜେ ହର୍ଷୋତ୍ଫୁଲ୍ଲ ନୟନଯୁଗଳରେ ସପ୍ରେମରେ ମୂର୍ତ୍ତି ପ୍ରତି ଚାହିଁ ରହୁଅଛି ।

ସୁଚରିତା—ସ୍ୱପ୍ନରେ ଯାଦୃଶ ରୂପ ଦେଖିଅଛୁ, ଠିକ୍ ସେହିପରି ମୂର୍ତ୍ତି ଲେଖିବାପାଇଁ ତାହାର ଅଭିଳାଷ ।

ରାବଣ—ହୃଦୟ ! କାହିଁକି ଏପରି ଚଞ୍ଚଳ ହେଉଅଛୁ ? ଆଗକୁ
କି ହେବ ଦେଖ ।

ସୀତା— ( ଲକ୍ଷିତ ଚିତ୍ରକୁ ଚାହିଁ ସ୍ୱଗତ )

ମାଲିନୀ ବୃତ୍ତ ।

ହିମକର-ବଦନ ପ୍ରତ୍ୟଗ୍ର ନୀଳୋତ୍ପଳାଭ,
ବପୁଲତର ମନୋଜ୍ଞ ଜାନୁ-ବାହୁଦ୍ୱୟାଢ୍ୟ ।
ଅରୁଣିତ ନୟନାନ୍ତେ ପ୍ରେକ୍ଷିଲି ପ୍ରାୟ ଏଣେ
ଲଳିତ ଲିଖିତ ଅହୋ ମୂର୍ତ୍ତି-ସୌନ୍ଦର୍ଯ୍ୟ କେତେ । ୧୩ ।

( ସହର୍ଷେ )

ସ୍ରଗ୍ଧରା ବୃତ୍ତ ।

ଅଂସଦ୍ୱନ୍ଦେ ତୂଣୀରଦ୍ୱୟ ପୁଣି କରରେ ଦେଇ କୋଦଣ୍ଡ କାଣ୍ଡ
ବସ୍ତ୍ରାନ୍ତେ ଦସ୍ତୁରେଖା କୃଶକଟିତଟରେ ମୁକ୍ତିକା କାଞ୍ଚିଖଣ୍ଡ ।
ସଶ୍ରୀକାମ୍ଭୋଜବକ୍ତ୍ରେ ଶିଶୁକୁସୁମଲଟଶ୍ରେଣୀ ସୌନ୍ଦର୍ଯ୍ୟ ପୂର—
ନବ୍ୟ ଶ୍ମଶ୍ରୁପ୍ରଣାଳୀ ଲିଖିବ ସଯତନେ ପାଇ
ସଂତୋଷ ସାର । ୧୪ ।

(ପୁନରପି ଲେଖିବା ।)

ରାବଣ—(ଚିତ୍ର ଦର୍ଶନରେ ନିଶ୍ୱାସ ମୁଞ୍ଚି ସ୍ୱଗତ) କପରି !
ଏ ସବୁ ଅନ୍ୟଥା ହୋଇଗଲା ! ହୃଦୟ ! ତୋର ଏ
ସମସ୍ତ ମନୋରଥ ବିତଥ ହେଲା ?

ସୀତା—(ଚିତ୍ରପଟଗତ ନାୟକଙ୍କ ନିରେଖି ସାଞ୍ଜଳି ବଚନେ)
ହେ ନାଥ ! ମଦନମନୋହର !

ମନ୍ଦାକ୍ରାନ୍ତା ବୃତ୍ତ ।

**କ୍ଷୀ**ଣାନ୍ଧ୍ର-ପ୍ରଦ୍ଭବମରୁତ ଜ୍ୱାଳଜାଳ ପ୍ରକାଶେ ।
ଅଗ୍ନି ପ୍ରାୟେ ଭୁବନକର ଯେ ଦାହ ଦେଲା ବଶେଷେ ।
**ଅ**ହା ଏବେ କହ ନୁହଇ ତ କ୍ରୂର କନ୍ଦର୍ପ କଷା ।
ହେ ପ୍ରାଣେଶ ! ସ୍ମର ଭୟ ମନେ କଲ୍ପ ରକ୍ଷା ଉପେକ୍ଷା । ୧୫ ।

ହେ ମାନଦ ! (ଏହି ଅର୍ଦ୍ଧୋକ୍ତିରେ ସ୍ୱଗତ) ଚିତ୍ରପଟ୍ଟ-ଲିଖିତ ପ୍ରିୟଜନଙ୍କୁ ଯଥାର୍ଥ ଭାବ ମୁଁ ମୂଢ଼ବୁଦ୍ଧିରେ କପଟ ନିନ୍ଦା କରିବାକୁ ପ୍ରବର୍ତ୍ତୁ ଅଛି ! (ଏହା ବଚାର ତୁନି ହେବା )

ଶୀଳବତୀ—(ସହାସେ) ସଖି ! ତୃତୀୟ ଚରଣର କିଛି ଅବ-ଶେଷ ରହିବାର ବୋଧ ହୁଏ ?

ସୀତା—(ସଲଜ୍ଜେ) ଅବଶେଷ ଆଉ କିଛି ରହୁ ନାହିଁ । ପ୍ରିୟ-ଜନଙ୍କର ଚିତ୍ର ଅଙ୍କନ ପୂର୍ଣ୍ଣ ହେଲା ।

ସଖୀଦ୍ୱୟ—( ଚିତ୍ର ଦେଖି ଅନ୍ୟୋନ୍ୟ ମୁଖାଲୋକନରେ ଲୁହାଲୁହି ହେବା ) ସଖି ! ଚିତ୍ରପଟ୍ଟଗତ ଆକୃତିକି ଦେଖିଲେ, ଏହାଙ୍କ ପ୍ରତି ଆମ୍ଭ ପ୍ରିୟସଖୀର ଅଭିନିବେଶ ଉଚିତ ବୋଧ ହୁଏ ।

ସାରଣ—( ଦେଖି ଆଶ୍ଚର୍ଯ୍ୟେ )

ସ୍ରଗ୍ଧରା ବୃତ୍ତ ।

ଚନ୍ଦ୍ର ପ୍ରାୟେ ମୁଖଶ୍ରୀ, ନୟନସରସିଜ ପ୍ରାୟ, ଆଜାନୁ ବାହା ।
ଏକାନ୍ତ କ୍ଷୀଣ ମଧ୍ୟସ୍ଥଳ, କପଟ ଉର ସ୍ଥୂଳ ବିସ୍ତୀର୍ଣ୍ଣ ଆହା !

ଉକ୍ତାମ୍ଭୋଜାଭ ଏହା ପଦଯୁଗଳତଳେ ବ୍ୟକ୍ତ ସାମ୍ରାଜ୍ୟଭାର ।
କେ ଦେଖା ନାହିଁ ପୂର୍ବେ ତ୍ରିଭୁବନ ଭିତରେ ଈଦୃଶ
ଶ୍ରେଷ୍ଠ ବୀର । ୧୬ ।

ରାବଣ—(ସ୍ୱଗତ)

ମନ୍ଦାକ୍ରାନ୍ତା ବୃତ୍ତ ।

ଜୃମ୍ଭନ୍ନୀଳୋତ୍ପଳଦଳ ସମ ଶ୍ୟାମସଦ୍ଦୃଗାବ
ଅଲୋକନ୍ତେ ହରଷ ଲଭିବେ ଶତ୍ରୁ ଯେ ପ୍ରାୟ ମିତ୍ର ।
ଅହୋ ଏହା ପ୍ରକୃତ ଜଗତେ ସାଧୁ ସଶ୍ଲାଘନୀୟା
ବ୍ୟକ୍ତପ୍ରାୟା ସ୍ଫୁରଇ ଗୁରୁତା ଅନ୍ୟ ଅପ୍ରାପଣୀୟା । ୧୭ ।

( ପ୍ରକାଶତଃ )

ବଦ୍ଧ୍ୟକ୍ଷିହ୍ୱ ! ଥରେ ଚତ୍ରଲିଖିତ ଆକୃତିକୁ ଦେଖ ।

ବଦ୍ଧ୍ୟକ୍ଷିହ୍ୱ—ମହାରାଜ ! ଦେଖିଅଛୁ ।

ସ୍ରଗ୍ଧରା ବୃତ୍ତ ।

ଧୀରୋଦାତ୍ତତ୍ୱ ଏହା ଅରୁଣିତନୟନ ପ୍ରାନ୍ତରେ ସ୍ପଷ୍ଟଭାବ,
ବକ୍ଷଃସ୍ଥେ ସ୍ତୋକଭସ୍ମ ବ୍ୟକତ କରଇ ଏ ବ୍ରହ୍ମଚର୍ଯ୍ୟଭାବ ।
ନବ୍ୟଶ୍ମଶ୍ରୁ ପ୍ରଣାଳୀ କହୁ ଦିଅଇ ଯୁବା ବୋଲି ବକ୍ଷେ ବିରାଜ,
ହସ୍ତେ କୋଦଣ୍ଡକାଣ୍ଡ ବ୍ୟକତ କରୁ କହେ ବୋଲି ଏ ରାଜବୀଜୀ ॥

ସୀତା—ସଖି ସୁଚରିତେ ! ( ଏତକମାତ୍ର କହୁ ଚିତ୍ରପଟ
ଦେଖାଇବା)

ସୁଚରିତା—(ସହାସେ) ସଖି ! ମୋର ଦେଖାରେ ଅବା କଣ

ହୋଇ ପାରିବ ? ଯଦି ତୁମ୍ଭର ସେହି ପ୍ରିୟବନ୍ଧୁ
ଏ ସବୁ ଦେଖିବେ, ତେବେ ଅବଶ୍ୟ କରକମଳର
ପାରିତୋଷିକସ୍ୱରୂପ ରତ୍ନକଙ୍କଣକୁ ଦେବେ ।

ଶ୍ରବଣ—ସୁଚରିତା ଯଥାର୍ଥ କହିଅଛ, ଯେହେତୁ—

ସ୍ରଗ୍ଧରା ବୃତ୍ତ ।

ରେଖାବୈଲକ୍ଷଣ୍ୟ ବର୍ଣ୍ଣବ୍ୟତିକର ନ ଧରେ ଚିତ୍ରରେ ଚିତ୍ରତାରେ,
ପ୍ରତ୍ୟଙ୍ଗେ କୋମଳତ୍ୱ ପ୍ରକଟିତ ଅଧିକେ ଯୁକ୍ତସଂସ୍ଥାନତାରେ ।
ଏ ମୁଖ୍ୟାଲେଖ୍ୟ ଯୋଗେ ନିରୂପମ ସୁଷମାପ୍ରାପ୍ତଚୈତନ୍ୟ ତୁଲ୍ୟ,
ସୀତାବୈଦଗ୍ଧ୍ୟ ତେଣୁ ଏ ତ୍ରିଭୁବନ ପରି ସଂତୋଷଦ ପ୍ରାପ୍ୟ କଲ୍ୟ ।

ଶୀଲବତୀ—ସଖି ସୁଚରିତେ ! ମୁଁ ମନେ କରେଁ, ପ୍ରିୟ ସଖୀଙ୍କର
ଏତାଦୃଶ କରକୌଶଳ ଦେଖି ତୁ ପ୍ରଥମରୁ କେବଳ
ତଦୀୟ ହସ୍ତରେ ସେହି କଙ୍କଣଯୁଗଳ ସମର୍ପଣ କରି-
ଅଛୁ, ସେ ଦୁଇଟିରେ ଶ୍ରେଷ୍ଠପାଦ୍ମରାଗ ମଣି ଖଚିତ
ଥିବାରୁ ପ୍ରିୟ ସଖୀଙ୍କର ସୁରକ୍ଷଣାର୍ଥେ ସନ୍ତତ ହସ୍ତରେ
ରଖିଥିବାପାଇଁ ତାତ ବୈଶିକ ତୋତେ ଦେଇଥିଲେ ।

(ଶ୍ରବଣ ଓ ସାରଣ ଏହା ଶୁଣି ପରସ୍ପର ମୁଖାବଲୋକନ କରିବା)

ବଦାନ୍ୟକ୍ରିୟ—(ସହାସେ) ସଂପ୍ରତି ଶ୍ରୋତବ୍ୟ ଶ୍ରୁତି ଓ ବେଦି-
ତବ୍ୟ ବଦିତ ହେଲା, ଯେ ଆମ୍ଭମାନଙ୍କର ଦୃଷ୍ଟିର
ଅଗୋଚର, ସେ ସୀତା ଏବଂ ଯାହାକୁ ସେ ଲେଖି-
ଅଛି, ସେ ନିଶ୍ଚୟ ରାମ ଅଟେ ।

ରାବଣ—କଣ ! ଜାନକୀ ସ୍ନେହଦୁର୍ଲ୍ଲଭ ରାମଂ ଏ କେବଳ କି ?

(ଚାପକୁ ଚାହିଁ ଅସହନପୂର୍ବକ ।)

ମନ୍ଦାକ୍ରାନ୍ତା ବୃତ୍ତ ।

ରେ କ୍ରୂରାତ୍ମା ନ କର ଗରିମା ସ୍ୱୀୟ ସୌମ୍ୟ ପ୍ରଭାବେ,
ପ୍ରେମାସକ୍ତା ଜନକଦୁହିତା ହୋଇଲା ଭାବ ଏବେ ।
ମୋ ଅଙ୍କାରେ ଅତୁଳମହିମା ସୌନ୍ଦ ନର୍ମଦ-ସତ୍ୱ
ମାର୍ଗେ ତୋର ପ୍ରଳୟକରଣେ ପ୍ରାପ୍ତସାମର୍ଥ୍ୟ ସତ୍ୟ । ୨୦ ।

ସାରଣ—ମହାରାଜ ! ସେହି ଗାଧିପୁତ୍ରର ଅବନୟମୂଳକ ଅଗାଧ କପଟଚାତୁର୍ଯ୍ୟ ଦେଖନ୍ତୁ । ଆପଣ ସୀତାକୁ ଦେଖିବା ମାତ୍ରକେ ଅପହରଣ କରିବେ, ଏହା ଭାବି ତଦୀୟ ହସ୍ତରେ ରାକ୍ଷସାନ୍ଧକରଣମଣିଯୁକ୍ତ କଙ୍କଣକୁ ଦେଇଅଛି ।

ବିଦ୍ୟୁଜ୍ଜିହ୍ୱ—ସତ୍ୟ, ଏହି କ୍ଷତ୍ରିୟ ବ୍ରାହ୍ମଣ ବଡ଼ ଚତୁର ଅଟେ ।

ରାବଣ—(ହାସ ପ୍ରକାଶପୂର୍ବକ ସକ୍ରୋଧରେ ଆକାଶକୁ ଚାହିଁ) ଅରେ ରେ ବଣ୍ଠାମିତ୍ର ଦୁରାତ୍ମା !

ସ୍ରଗ୍ଧରା ବୃତ୍ତ ।

ହେଲେହେଁ ସ୍ୱର୍ଗକର୍ତ୍ତା ତୁହି ରଣଅଙ୍ଗରେ ସୌନ୍ଦନାଶେ ଅଶକ୍ତ,
ରମ୍ଭା ଏ ତାଟକା କି ? ପ୍ରତିହତ କରଣେ ନାହିଁ ତୋ ଶକ୍ତିସତ୍ତ୍ୱ ।
ତୋହାରି ରାମରକ୍ଷା ନ ଲଭିବଟି କଦା ସେ ତ୍ରିଶଙ୍କୁ ପ୍ରକାର,
ସ୍ତୁତ୍ୟର୍ଥୀ ହେଉ କେଉଁଣେ ? ହୁଅଇ କି ଅଧୁନା ତୋ
ନୃମୂର୍ଦ୍ଧାବିକାର । ୨୧ ।

ସାରଣ—ଅଃ ! ଏହା କଣ କହୁଅଛନ୍ତି ? ସେ ତ ମଲାଣି ।

ରାବଣ—(ସୋତ୍ସୁକେ) ସେ କଥା ଯାହା ହେଉ, ବର୍ତ୍ତମାନ
ଜାନକୀର ଦର୍ଶନ ଉପାୟ ବଚ୍ୟର କର ।

ସାରଣ—ଉପାୟ ନିର୍ଦ୍ଧାରିତ ହେଲାଣି ।

ରାବଣ—(ଉତ୍ସାହପୂର୍ବକ) କପରି ?

ସାରଣ—(କର୍ଣ୍ଣରେ କହିବା)

ରାବଣ—(ହସି) ଏହା ତ ଭଲ ବଚ୍ୟର । ତେବେ ପ୍ରଥମେ
କଙ୍କଣର ପ୍ରାପ୍ତି ନିମନ୍ତେ ତୁମ୍ଭେ ଅଯୋଧ୍ୟାର ତାପସ
ବେଶ ଗ୍ରହଣ କର ।

ସାରଣ—ଅଚ୍ଛା ହେଉ । (ତାପସ ବେଶ ଗ୍ରହଣପୂର୍ବକ ପ୍ରବେଶି)
ଏଠାରେ କିଏ ଅଛ ହେ ? ମୁଁ ଅଯୋଧ୍ୟାନିବାସୀ ମାର୍ଗ
ପରିଶ୍ରମରେ କ୍ଲାନ୍ତ ହୋଇ ପଡ଼ିଅଛି । ଛାୟାଦାନ କରି
ଅଥବା ବ୍ୟଜନରେ ଟିକିଏ ବାୟୁ ମୋତେ ସୁସ୍ଥ କର ।
(ଏହା କହି ମୂର୍ଚ୍ଛା ଅଭିନୟ କରିବା )

ବିଦୁଷକ—ମହାରାଜ ! ସାରଣର ତାପସ ବେଶର କୌଶଳ
ଦେଖନ୍ତୁ ।

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ସନ୍ଧାନସ୍ଥଳୀଥିବାରୁ ପିଙ୍ଗଳଜଟାଜୂଟୋଟେ ଦ୍ୱା ଶିରେ
ଦିଶେ ଲେ, କ୍ଲାନ୍ତ ଲଲାଟଦେଶଭଲକ ସ୍ୱେଦାମ୍ବୁସଂଯୋଗରେ ।
ହସ୍ତେ ଦଣ୍ଡ ଧରି ପ୍ରକାଶି ଅନଶେ ନିଃଶ୍ୱାସ ଆବେଗକୁ
ପୃଷ୍ଠେ ଲମ୍ବିତ ଐଣ ଚର୍ମ ବହି ସଙ୍ଘୋଟରେ ଗମେ ଅଗକୁ । ୨୨ ।

ସୀତା—(ସସମ୍ଭ୍ରମେ) ସଖି ! ଅଯୋଧ୍ୟାବାସୀ ବୋଲି କହୁ-
ଅଛନ୍ତି । ହେ ସୁଚରିତେ ! ଏହି ବ୍ରାହ୍ମଣଙ୍କର କିଛି
ଆପ୍ୟାୟନା କର ।

ସୁଚରିତା—(ନିକଟକୁ ଯାଇ) ହେ ବ୍ରାହ୍ମଣ ! ଆପଣ ଏହିଠାରେ
ବିଶ୍ରାମ କରନ୍ତୁ । (ଏହା କହି ପଦପଲ୍ଲବରେ ବସିବା)

ତାପସ—( ଚକ୍ଷୁଯୁଗଳ କିଞ୍ଚିତ୍ ଉନ୍ମୀଳିତ କରି ) ତୁମ୍ଭର
ଅକାରଣ ସ୍ନେହରେ ମୁଁ ଉଜ୍ଜୀବିତ ହୋଇଅଛି ।

ସୁଚରିତା—(ସ୍ୱଗତ) ଦୈବବଳରୁ ବ୍ରାହ୍ମଣ ଚେତନା ପାଇ-
ଅଛନ୍ତି । (ପ୍ରକାଶତଃ) ଆପଣ କିଏ ? କେଉଁଠାରୁ
ଆସିବା ହେଲେ ?

ତାପସ—ଦଶରଥ ନାମକ ରାଜର୍ଷିଙ୍କର ଜ୍ୟେଷ୍ଠପୁତ୍ର—

ସୀତା—(ସସମ୍ଭ୍ରମେ) ହଁ, ତାଙ୍କର କଣ କି ?

ରାବଣ—(ଅସୂୟା ସହ) ତାଡ଼କା ଓ ମାରୀଚଦ୍ୱାରା ସେ ବିନଷ୍ଟ
ହେଲା ।

ସୁଚରିତା—ଅହେ ବ୍ରାହ୍ମଣୋତ୍ତମ ! ଆଉ କଣ କହିବ, କହ ।

ତାପସ—ମୋର ଜିହ୍ୱା ତ ଶୁଖି ଯାଉଅଛି, କହି ପାରୁ ନାହିଁ ।

ରାବଣ—ବିପକ୍ଷର ନାମୋଚ୍ଚାରଣରୁ ବିଦୀର୍ଣ୍ଣ ହୋଇ ଯାଉ
ନାହିଁ ତ ?

ସୀତା—(ସୋଦ୍ବେଗେ) ଏ ତ ଅପ୍ରିୟ କଥା କହିବାକୁ ଉଦ୍ୟତ
ପରି ଦିଶୁଅଛନ୍ତି । (ଏହା କହି ଦୁଃଖ ଅଭିନୟ କରିବା)

ଶୀଳବତୀ—ସଖି ! ବ୍ରାହ୍ମଣଙ୍କୁ ଜଳପାନ କରାଅ । ଅବଶେଷ
କଥା ସବୁ ଶୁଣି ଯିବା ।

ସୁଚରିତା—(ପଦ୍ମଦଳପୁଟରେ ନଦୀଜଳ ଆଣି ଦେବା)

ତାପସ—ମୁଁ ସ୍ତ୍ରୀଦତ୍ତ ଜଳ ପାନ କରେ ନାହିଁ ।

ସୀତା—( ସାଶ୍ରୁନୟନେ ) ବ୍ରାହ୍ମଣ ଜଳପାନରେ ବିମୁଖ ଓ ଦୁଃଖିତ ଥିବାରୁ ମନରେ ଶଙ୍କା ହୁଏ । ପ୍ରିୟଜନଙ୍କର କି ଅମଙ୍ଗଳ ଘଟିଅଛି ?

ତାପସ—(ସ୍ୱଗତ) କେବଳ ତାହାର ନୁହେ । ତଦଭିମାନୀ ବିଶ୍ୱାମିତ୍ରର ମଧ୍ୟ ସେହି ଦଶା । ( ପ୍ରକାଶତଃ ) ଏପରି ବୃଥା ଉଦ୍‌ବିଗ୍ନ ହୁଅ ନାହିଁ। ସତ୍ୟ କହୁଅଛୁ, ବ୍ରତ ଗ୍ରହଣ କରିଥିବାରୁ ମୁଁ ସ୍ତ୍ରୀଦତ୍ତ ଜଳ ପାନ କରେ ନାହିଁ ।

ସୁଚରିତା—ଭଗବନ୍ ! ଆଉ କଣ କହିବେ, କହନ୍ତୁ ।

ସୀତା—ଏକ୍ଷଣି ମୋ ହୃଦୟ ଅଗ୍ନି ମଧ୍ୟରେ କିମ୍ବା ଅମୃତ ମଧ୍ୟରେ ପଡ଼ିବ ।

ତାପସ—ବର୍ତ୍ତମାନ ମୋର ପୁତ୍ରବତ୍ସଳ ପିତା ଓ ମାତା ଯଦି ମୋତେ ଏପରି ଦୁରବସ୍ଥିତ ଦେଖିବେ, ବଡ଼ ଦୁଃଖିତ ହେବେ ନେ !

ବିଦୁର୍ଯ୍ୟକ୍ତି—( ସୋପହାସେ ) କେବଳ ସେ ଦୁହେଁ ନୁହନ୍ତି । ଏତାଦୃଶ ବିରୂପ ବେଶ ଗ୍ରହଣ ଦେଖି ସମଗ୍ର ରାଷ୍ଟ୍ର ଜାତ ଦୁଃଖିତ ହେବେ ।

ସୀତା—ଏପରି କଥାରେ ମୋର ଦୁଃଖାକୁଳ ହୃଦୟର କି ଲାଭ ହେବ ?

ଶୀଳବତୀ—ଏ କଣ ! ଏପରି ବୃଥା କଥାଗୁଡ଼ାଏ କହି ପ୍ରିୟ-

ସଖୀଙ୍କର ଉଦ୍ବେଗ ଜନ୍ମାଉଅଛ । କହୁଛି ଭଲ କଥା
କହୁ ନାହିଁ । ଏ ନିଶ୍ଚେ ରାକ୍ଷସ ଅଟେ ।

ତାପସ—( ସଭୟେ ସ୍ୱଗତ ) ଏମାନେ ମୋତେ କପଟ ଜାଣି
ପାରିଲେ ! (ବିଚାର କରି) ନା, ଜାଣି ପାରି ନ ଥିବେ ।
(ପ୍ରକାଶତଃ) ମୁଁ ସେହି ରାମଭଦ୍ରଙ୍କର ପ୍ରିୟସଖା ଅଟେ ।

ରାବଣ—(ସହାସେ) ଏଥିରେ ଆଉ ସନ୍ଦେହ କଣ ? ତାହା
ନ ହେଲେ କି ତପୀୟ ସଂହାରାର୍ଥ ପ୍ରଥମରୁ ତୁମ୍ଭେ ଏ
ଉପାୟ ଆରମ୍ଭ କରିଅଛ ?

ସୀତା—ଏ କଥାରେ ମଧ୍ୟ ମୁଁ ଆଶ୍ୱସ୍ତ ହୋଇ ପାରେ ନାହିଁ ।

ସୁଚରିତା—ଅହେ ବ୍ରାହ୍ମଣ ! ତୁମର ଏଠାକୁ ଆସିବାର
ପ୍ରୟୋଜନ କଣ ? କହିଲ ।

ତାପସ—ସେ ସବୁ କହିବି, କିନ୍ତୁ ତୁମ୍ଭେମାନେ ରାବଣର ପକ୍ଷ-
ପାତିନୀ ନୁହଁ ତ ?

ସୀତା—(ସ୍ୱଗତ) ବୋଧହୁଏ, ଏ ନିଶ୍ଚେ ପ୍ରିୟଜନଙ୍କର ବିଶ୍ୱସ୍ତ
ଥିବେ । ତାହା ନ ହେଲେ କି ଏପରି କହୁଅଛନ୍ତି ?

ଶୀଲବତୀ—ସଖି ସୁଚରିତେ ! ରାବଣ କିଏ ?

ରାବଣ—(ସରୋଷେ) ଧିକ୍ ମୂର୍ଖହୃଦୟା ! ଯେ କି ତ୍ରୈଲୋକ୍ୟ-
ବିଜୟୀ, ତାହାକୁ ଜାଣ ନାହିଁ ?

ତାପସ—

ସ୍ରଗ୍ଧରା ବୃତ୍ତ ।

ଉର୍ବୀରେ ଯେହି କୈଳାସାଦ୍ରିର ପୁଣି ମଘବା-ବନ୍ଦ୍ୟ ହାତ୍ୟ ପ୍ରଭୃତେ,
ଯା କ୍ରୂର ସ୍କନ୍ଧଦେଶ ବ୍ରଣ କଣ ବହିଲା ବିଷ୍ଣୁ ଚକ୍ରାଭିଘାତେ ।

ଏବଂ ସାକ୍ଷାତ ଯେହ୍ନ ବିଭୁବନଜନକ-ବ୍ରହ୍ମଦେବ-ପ୍ରପୌତ୍ର,
ସେ ପଂକ୍ତିଗ୍ରୀବ-ବାର୍ତ୍ତା ଶ୍ରବଣଉପଗତା ନୋହିଲା
ଯା ବଚନ । ୨୩ ।

ସୀତା—(ଅପବାଦରେ) ରାକ୍ଷସ ବୋଲି ଯାହାଙ୍କୁ ସମସ୍ତେ ନିନ୍ଦା
କରନ୍ତି, ତାହାଙ୍କର ଗୁଣକଥନରେ କି ପ୍ରୟୋଜନ ?

ରାବଣ—(ଧିକାରପୂର୍ବକ ମୁଖକୁ ଫେରାଇ ଦେଇ) ବଦ୍ଧ୍ୟକ୍ଷିହ୍ନ,
ଯାହା ଶୁଣିବାକୁ ଥିଲା, ତାହା ଶୁଣାଗଲା ।

ବଦ୍ଧ୍ୟକ୍ଷିହ୍ନ—ମହାରାଜ ! ଅତଏବ ଏହାର ବଶୀକରଣାର୍ଥେ
ସେହି ରାମଭଦ୍ରର ରୂପ ଗ୍ରହଣ ବିନା ଉପାୟାନ୍ତର ଦିଶୁ
ନାହିଁ ।

ରାବଣ—ତାହା ତ ମୋର ଅଶକ୍ୟ ହୋଇଅଛି ।

ସ୍ରଗ୍ଧରା ବୃତ୍ତ ।

ଯେ ଅପେ ସାନୁରାଗା ନୁହଇ, ବଧି କି ତା ପ୍ରାପ୍ତି ଆସକ୍ତିମନ୍ତ୍ରୀ ?
ତାହାର ପ୍ରୀଣନାର୍ଥେ ନରପଶୁର ସମାକାର-କାରିତ୍ୱ ଚିନ୍ତା ।
କେବେହେଁ ଅବାଞ୍ଛିତ କରିବି ମୁଁ ଶଠତା ଛନ୍ଦରେ ବର୍ତ୍ତମାନ,
କେବେହେଁ ଦୁର୍ବାର କାମ ଯଦିକି ଲଭିବ ବା ହୋଇବି
କ୍ଷୀଣମାନ । ୨୪ ।

ବଦ୍ଧ୍ୟକ୍ଷିହ୍ନ—ମହାରାଜ ! କାହିଁକି ଏପରି ଦୁଃଖିତ ହେଉ-
ଅଛନ୍ତି ?

ଅନୁଷ୍ଟୁପ୍ ବୃତ୍ତ ।

ବଞ୍ଚନା ଅସ୍ମଦାଦିଙ୍କ କୁଳବୃତ୍ତି ଅଟେ ପ୍ରଭୋ !
ତଦ୍ଦ୍ୱାର ଆଣିବା ତାକୁ ଜମେ ହେବ ବଶମ୍ବଦା । ୨୫ ।

ସୁଚରିତା—ସଖି ଶୀଳବତି ! ଆମ ପିତା ଜନକ ଯେଉଁ ମହା-
ପୁରୁଷଙ୍କୁ ପ୍ରିୟସଖା ବୋଲି ପ୍ରଶଂସା କରୁଥାନ୍ତି, ସେହି
ଲଙ୍କେଶ୍ୱର ରାବଣଙ୍କୁ କଣ ତୁ ଜାଣି ନାହୁଁ ?

ରାବଣ—ଅତଏବ ଜାନକୀର ଅପହରଣରେ ମୁଁ ଇଚ୍ଛୁକ ନୁହେ ।

ଶୀଳବତୀ—ଅହେ ବ୍ରାହ୍ମଣ ! ସେ ରାବଣ ଏବେ ମନେ ପଡ଼ିଲା ।
ଆମ୍ଭେମାନେ ତାହାର ପକ୍ଷପାତିନୀ ରାକ୍ଷସୀ ନୋହୁ । ଏ ତ
ଜନକଦୁହିତା ସୀତା, ଆମ୍ଭେ ଦୁହେଁ ତାହାଙ୍କ ସଖୀ
ଅଟୁଁ ।

ତାପସ—(ସ୍ୱଗତ) ଏ କି ଆଶ୍ଚର୍ଯ୍ୟର ବିଷୟ, କେବଳ ଭୂମି-
ତଳକୁ ଏ ସୀତା ବୋଲି ଦେଖାଉଅଛି !

ସୁଚରିତା—ଭଗବନ୍ ! ଏବେ ଆପଣ ନିଃଶଙ୍କ ହୃଦୟରେ
କହନ୍ତୁ ।

ଶୀଳବତୀ—ଅହେ ବ୍ରାହ୍ମଣ ! ଯଦି ତୁମେ କୁଶଳବାର୍ତ୍ତା
କହିବ, ତେବେ ସୀତାଙ୍କ ହସ୍ତରୁ ଦୁଇଟି ରତ୍ନକଙ୍କଣ
ପାରିତୋଷିକ ପାଇ ପାରିବ ।

ତାପସ—(ସ୍ୱଗତ) ଏଥିପାଇଁ ତ ମୋର ଏହି ଆରମ୍ଭ,
(ପ୍ରକାଶତଃ) ଆଉ ଅନ୍ୟ କଥା କଣ କହିବ ?

ସୀତା—(ସୋଦ୍ବେଗେ) ମର୍ତ୍ତ୍ୟଲୋକର ଅଳଂକାର କି ନଷ୍ଟ
ହୋଇଅଛନ୍ତି ! (ଏହା କହି ମୂର୍ଚ୍ଛିତା ହେବା)

ସଖୀଦ୍ୱୟ—ହା ସଖି ଜାନକି ! ହା ସଖି ଜନକବତ୍ସଳେ ! ହାୟ ଭୂଲୋକମଙ୍ଗଳଦୀପିକେ ! ଏତାବତ୍ ପର୍ଯ୍ୟନ୍ତ ଅନୁଗତ ସଖୀମାନଙ୍କୁ ଛାଡ଼ି ଅଚିର ପରିଚିତ ହୃଦୟବଲ୍ଲଭଙ୍କର ଅନୁଗମନ କରୁଅଛୁ କାହିଁକି ? ଏତାଦୃଶ ନିତାନ୍ତ ନିର୍ଦ୍ଦୟହୃଦୟା ହୁଅ ନାହିଁ ।

( ରୋଦନାଭିନୟ କରିବା )

ତାପସ—ଏ କଣ, କାରଣ ବିନା ଏପରି ବୃଥା ଦୁଃଖ ପାଉଅଛ କାହିଁକି ? ମୋର କଥା ଶୁଣ ।

ସଖୀଦ୍ୱୟ—ପ୍ରିୟସଖି ! ଆଶ୍ୱାସିତା ହୁଅ, ଅବଶିଷ୍ଟ କଥା ଶୁଣିବା ।

ସୀତା—( ଆଶ୍ୱସ୍ତହୃଦୟରେ ତାପସଙ୍କୁ ଚାହିଁବା )

ତାପସ—

ବସନ୍ତ ଭଙ୍ଗ ।

ତୋ ପୁଣ୍ୟରାଶି କୁଶିକାତ୍ମଜ ହୋଇ ରଙ୍ଗେ
ଅଛେ ପ୍ରସୂନଶର-ସୁନ୍ଦର ରାମ ସଙ୍ଗେ ।
ଆଜ ପ୍ରବେଶ କରିବେ ତବ ସନ୍ନିଧାନେ,
ଦୁଃଖାନ୍ୱିତା ହୁଅ କପାଁ ସୁଖସମ୍ବିଧାନେ । ୨୭ ।

ରାବଣ—ଅୟି ସାରଣ ! ତାପସ ରୂପରେ ମଧ୍ୟ କପଟ ମିଥ୍ୟା କହୁଅଛ ? ବନ୍ଦୁର୍ଯ୍ୟନ୍ତ୍ରିହ ରାବଣଙ୍କୁ ଧରି ଆସୁଅଛନ୍ତି; ଏହା କହ ।

ସଖୀଦ୍ୱୟ—ପ୍ରିୟସଖି ! ଭାଗ୍ୟବଳରୁ ତୁମର ମଙ୍ଗଳ ଘଟିଅଛି ।

ସୀତା—( ହର୍ଷସମ୍ଭ୍ରମରେ ଉଠି ସାରଣର ଦୁଇ ହସ୍ତରେ ଦୁଇ-
ଗୋଟି କଙ୍କଣ ପାରିତୋଷିକ ଦେବା )

ରାବଣ—(ସାଶ୍ଚର୍ଯ୍ୟ)

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ବାହ୍ଲୀକପ୍ରଭବ ତୁରଙ୍ଗ ମୟୂଷମା ସୌଦାମିନୀସନ୍ନିଭ
ମେଘାଳୀର ବିନା ସମଗ୍ରହରଗଣେ କି ବ୍ୟାପିଲା ସପ୍ରଭ ?
ନିଷ୍ଟପ୍ତ ଦ୍ରୁତ ଶାତକୁମ୍ଭରସସନ୍ଦୋହପ୍ରବାହ କ୍ରମେ
ଅକାଶ ସ୍ଥିତ ସର୍ବ ଦିକ୍ଚକ୍ରକେ ଆଲେପି ବା ଅକ୍ରମେ । ୨୭ ।

ହାୟ ! ହାୟ !

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଏକବାନ୍ଧବ କାନ୍ତିଜାଳ-ଝଟକେ ପକ୍ଷ୍ମାବଳୀ ମୀଳିତ,
ମୋ ବଂଶାକ୍ଷି ଇତସ୍ତତେ ନ ଜାଣିବା ପୂର୍ବେ ସମୁନ୍ମୀଳିତ ।
ମୋ ଅଗ୍ରେ ଜଗତେ ଅନନ୍ୟସୁଲଭ ଶ୍ରୀଶାଳିନୀ ଭାବିନୀ,
ବିଦ୍ୟୁଲ୍ଲତୂର୍ତ୍ତିର ତୁଳ୍ୟ ମାତ୍ର ଦିଶିଲା ଭୂଲୋକସୌଦାମିନୀ । ୨୮ ।

ନେପଥ୍ୟରେ—

ଉପେନ୍ଦ୍ରବଜ୍ରା ବୃତ୍ତ ।

କାନ୍ତାସମେତେ ଋଷିବର୍ଯ୍ୟ ଅତ୍ରି
ପ୍ରବେଶିଲେ ଯାଗଦିଦୃକ୍ଷୁ ସତ୍ରୀ ।

ତାହାଙ୍କୁ ପୂଜା କର ସୀର-କେତୁ,
ସୁତାକୁ ଡ଼ାକନ୍ତୁ ସୁଯୋଗ ହେତୁ । ୨୯ ।

ଶୀଳବତୀ—ଦୈବବଳରୁ ପ୍ରିୟସଖୀଙ୍କର ଉତ୍ତରୋତ୍ତର ମଙ୍ଗଳ ଦିଶୁଅଛି । ଚିରକାଳ ପତିପୁଂସଂଯୋଗବତୀ ନାରୀମାନେ ଅନସୂୟାଙ୍କର ଦର୍ଶନରୁ ନିଶ୍ଚେ ଶ୍ରେୟ ଲାଭ ହେବ ।

ସୀତା—(ସାନନ୍ଦେ) ସଖି ! ମୋର ମଧ୍ୟ ଇଚ୍ଛା ବଳବତୀ ହେଉଅଛି, ଯିବା ଚାଲ । (ସମସ୍ତେ ବାହାର ଯିବା)

ରାବଣ—ହାୟ ! ହାୟ । କି ଦୁଃଖର କଥା ଯେ, ସୁନ୍ଦରୀ ଦୃଷ୍ଟି-ପଥରୁ ଦୂର ହୋଇ ଯାଇଅଛି ।

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ତା ଚନ୍ଦ୍ରାନନ ଦେଖି ନାହିଁ ସୁଷମାସଂପୂର୍ଣ୍ଣ ବକ୍ଷଃସ୍ଥଳ,
କାଞ୍ଚୀମଣ୍ଡଳ ଦେଖି ନାହିଁ ମୁଁ ଭଲେ ସୌନ୍ଦର୍ଯ୍ୟସାମ୍ରାଜ୍ୟର ।
କନ୍ଦର୍ପାପି ସମ ପ୍ରକାଶି ଦିଶିଲା ତା ବେଣିକା କେବଳ,
ଅନ୍ୟସ୍ଥାନ ବିଲୋକିବାକୁ ନ ସହେ ଆହା ବିଧାତା ଖଳ ।୩୦।

ବହୁ୍ୟକ୍ତିହ୍ୱ—ସାରଣକୁ କଙ୍କଣଦ୍ୱୟ ଦେଇ ପ୍ରତିନିବୃତ୍ତି ସମୟରେ ସୀତାର କରପଲ୍ଲବକୁ ମହାରାଜ କଣ ଦେଖି ନାହାନ୍ତି ?

ରାବଣ—ଦୈବବଳରୁ ତୁମ୍ଭର ଏ କଥାରେ ପ୍ରତିବୋଧିତ ହେଲି ।

ମାଲିନୀ ବୃତ୍ତ ।

କରଜବରଜ ରାଜେ କୀରଚଞ୍ଚୁ ପ୍ରକାର ।
କନକକୁସୁମ ଶୋଭା ଅଙ୍ଗୁଳିଶ୍ରେଣିକାର ।
ବିକଚ ବନଜ ଆଭା ତାର ମଧ୍ୟେ ପବିତ୍ର ।
ସ୍ମରଣ କରଇ ଏବେ ହସ୍ତ ସଂଦୃଷ୍ଟ ମାତ୍ର । ୭୧ ।

ସ୍ରଗ୍ଧରା ବୃତ୍ତ ।

ପୂର୍ବେ ଅନୀତ ସର୍ବ କ୍ଷିତିପତିତନୁଜା ସୁନ୍ଦରୀ ବ୍ୟର୍ଥ ଭାବେ ।
ସ୍ୱେଚ୍ଛାରେ ନାକରାଣୀଗଣ ମମ ନିକଟେ ଥାନ୍ତୁ ବା ଯାନ୍ତୁ ଏବେ ।
ଅମ୍ଭୋଜଶ୍ରୀ ବିଭୂତି ଖଣ୍ଡକ ବିରଚିତ ଯେ କଙ୍କଣ ଶ୍ରୀସମେତ—
ବୈଦେହୀହସ୍ତ ମୋତେ ଯଦି ମିଳିବ ତଦା ହେବ ମୋ
ଜନ୍ମ ସାର୍ଥ । ୭୨ ।

ବିଦ୍ୟୁଜ୍ଜିହ୍ୱ—ଆପଣଙ୍କର ରାମବେଶ ଗ୍ରହଣରେ ଏ କଥା ଦୁର୍ଲ୍ଲଭ ହେବ ନାହିଁ ।

ରାବଣ— ଆର୍ଯ୍ୟାଗୀତି ।

ମାନବ ବେଶ ଗ୍ରହଣେ ହୁଅଇ ଅପୂର୍ଣ୍ଣା ତଥାପି ସେହି ଚିକୀର୍ଷା ।
ଅବିରତ ସମର୍ଦ୍ଧକ କରିଲା ଜଗନ୍ମଙ୍ଗଳ-ଦୀପିକାର ସୁଆଶା । ୭୩ ।

ଅତଏବ ବିଦ୍ୟୁଜ୍ଜିହ୍ୱ ! ତୁମ୍ଭେ କୌଶିକ ବେଶ ଗ୍ରହଣାର୍ଥ ସତ୍ୱର ହୁଅ ।

ବିଦ୍ୟୁଜ୍ଜିହ୍ୱ—ମୋହର ତାହା ଅଯତ୍ନସାଧ୍ୟ ପର । ତଥାଚ ସାରଣ ମଧ୍ୟ ଲକ୍ଷ୍ମଣ ବେଶ ଧାରଣ କରିବେ ।

ସାରଣ—ମହର୍ଷିମାନଙ୍କର ମହିମା ଅଚିନ୍ତ୍ୟ ଅଟେ, ଯେହେତୁ—

ଅନୁଷ୍ଟୁପ୍ ବୃତ୍ତ ।

ସୀତାପ୍ରଦତ୍ତ ସୌବର୍ଣ୍ଣ କଙ୍କଣଦ୍ୱୟ ହସ୍ତରେ
ଧରି ସ୍ୱଦେହାଲଙ୍କାରାର୍ଥ ଅଧୁନା ଅସମର୍ଥ ମୁଁ । ୩୪ ।

(ପାର୍ଶ୍ୱକୁ ଚାହିଁ) ବନ୍ଧୁଜନ ଦର୍ଶନାର୍ଥ ଜୁଞ୍ଚୂହଳାକ୍ରାନ୍ତ କନ୍ୟାମାନେ କପଟ ଏହି ଚିତ୍ରପଟଟିକୁ ପାଶୋରି ଦେଇ ବାହାରିଗଲେ । ଭଲ ହେଲା, ମୁଁ ଏହା ନେଇ ସ୍ୱାମିଙ୍କୁ ସମର୍ପଣ କରିବି । (ଚିତ୍ରପଟ ଧରି) ମହାରାଜ ! ଦେଖନ୍ତୁ ତାହାର ଏହି କଙ୍କଣଯୁଗଳ ଓ ଚିତ୍ରପଟ ।

ବିଦୂଷକ—ମହାରାଜ ! ରାକ୍ଷସାଧିକାରଣମଣିଯୁକ୍ତ କଙ୍କଣ ଆଉ ରାମରୂପଚିତ୍ରିତ ଚିତ୍ରପଟକୁ ଭଲରୂପେ ଦେଖନ୍ତୁ ।

ରାବଣ—

ବସନ୍ତତିଳକ ବୃତ୍ତ ।

ଧିକାର ହେଉ କଙ୍କଣଦ୍ୱୟରେ ବିଶେଷେ ।
ସୀତାକୁ ଗୁପ୍ତ ରଖିଲା ରହି ତାର ପାର୍ଶେ ।
ଧିକ୍କାର ଚିତ୍ରପଟରେ ପୁଣି ହେଉ ଅଦ୍ୟ ।
ସୀତାମନୋହର ଯୁବା ଅଛୁ ଏଥି ମଧ୍ୟ । ୩୫ ।

ସାରଣ—ବିଶେଷ କଣ କହିବି, ଏହାକୁ ଧରିଥିବାରୁ ଆପଣଂ ମାନେ ମଧ୍ୟ ମୋର ଦୃଷ୍ଟିଗୋଚର ହେଉ ନାହାନ୍ତି ।

ବିଦୂଷକ—ଅତଏବ କୌଣସି କାଳେ ଏହା କିଛି ପ୍ରୟୋଜନକୁ ଆସି ପାରେ; ବିମାନ ଭିତରେ ଗୁପ୍ତଭାବରେ ଏହି କଙ୍କଣଦ୍ୱୟକୁ ରଖିଦିଅ ।

ସାରଣ—(ସେପରି ରଖିଦେବା)

ଶ୍ରବଣ—(କ୍ଷୁଭ୍ ବସ୍ତ୍ର କର) ଅହୋ !

### ମନୋଜ୍ଞା ବୃତ୍ତ ।

ସ୍ୱହୃଦର କର ବଞ୍ଚନା ପ୍ରକାଶ,
ଧର ରଘୁଶିଶୁ ନନ୍ଦ୍ୟ ମର୍ତ୍ତ୍ୟବେଶ ।
ଜନକନୃପସୁତା ବିବାହ-ଶର୍ମ
ଅନଭବ କରିବାକୁ ମୋର କାମ । ୩୭ ।

ଇତି ଦ୍ୱିତୀୟ ଅଙ୍କ ।



# ତୃତୀୟ ଅଙ୍କ ।



ମାଣ୍ଡବ୍ୟ ପ୍ରବେଶ ।

ମାଣ୍ଡବ୍ୟ—(ସ୍ମରଣ ପୂର୍ବକ)

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ହେଲା କ୍ଷତ୍ରିୟପୋତ କାର୍ମୁକରୁ ଯା ଘୋରାସ୍ତ୍ର ସନ୍ନର୍ଗତ,
ତଦ୍‌ବାତ୍ୟାଜନିତ-ପ୍ରଭୂତ ବଳରେ ମୋ ସନ୍ନିବନ୍ଧ ଶ୍ଳଥ ।
ତା ଉତ୍ତାରୁ ବିହାୟସେ ସମଧିକେ ମୋତେ କରି କ୍ଷୋଭିତ,
ସେ ଘୋରାସ୍ତ୍ର ବଳରେ ନିମଗ୍ନ କରିଲା ଦେବି ମୁଁ ଉତ୍ତୋଳିତ ।୧।

ହାୟ ହାୟ ! ସେହି କ୍ଷତ୍ରିୟାର୍ଭକ ନିଶ୍ଚେ ନିରୂପମ ପରା-କ୍ରମଶାଳୀ ଅଟେ । ଯେହେତୁ—

ପୃଥ୍ୱୀ ବୃତ୍ତ ।

ଧନୁର୍ଗୁଣକୁ ଟାଣି ସେ ବିଶିଖ ମୁଞ୍ଚୁବାର କ୍ଷଣ
ସ୍ୱସୈନ୍ୟଗଣ ଆହବେ ବିଗଳିତାସୁ ଅଲୋକଣ ।
ସୁବାହୁ ଘନପଂକ୍ତିରେ ଲୁଚିଗଲା ସ୍ୱମାୟାବଳେ ।
ଅହୋ ! ରଘୁକିଶୋର-ମୁକ୍ତ ଶର ନାଶିପିଙ୍ଗେ ତଳେ ।୨।

ଉଥାର ।

ସ୍ରଗ୍ଧରା ବୃତ୍ତ ।

ଦେଖନ୍ତେ ବ୍ୟୋମ, ମାୟାଜନକ ରଜ—
ଘଟାବ୍ୟାପ୍ତ ବେତାଳକାରେ *
ବାଢାନ୍ତେ ନାଶି ତାହା ଝଟିତି ପୁରତରେ ଦେଖିଲୁ ତାଟକାରେ ।
ହସ୍ତ ସ୍ତ୍ରୀଘାତ ଶଙ୍କା ଯୁଗ ଶିଥିଳ କଲୁ ବାଣସନ୍ଧାନୁ ଥାପି ।
ଦୈବେ ସେ ନଷ୍ଟ ହେଲା ଗୁଣରୁ ଖସି ଯିବା ବାଣଘାତେ
ତଥାପି । ୩ ।

(ସଶୋକୋଦ୍ବେଗେ) ହା ମାତ ତାଟକେ ! ହା ସନ୍ତାନ-ବତ୍ସଳେ ! ହା ମାତଙ୍ଗସହସ୍ରବଳଧାରଣି ! ତୁମ୍ଭେ ମଧ୍ୟ ସେହି ଋଷିସୁତମନୁହସ୍ତରେ ଦୁର୍ଦ୍ଦଶାପନ୍ନ ହେଲ ! ହାୟ ! ସର୍ବଥା ଦୈବନିୟୋଗ ଦୁର୍ଲଙ୍ଘ୍ୟ ଅଟେ ।

ସ୍ରଗ୍ଧରା ବୃତ୍ତ ।

ହେ ମାତା ଅସ, ନାଶ ପ୍ରଜ୍ୱଳିତ କର ମୋ ଶୋକସନ୍ତାପଜାଳ ।
(ଅସୂୟାସହ)
ମୋ ସଙ୍ଗେ ବୈର ଆଗେ କଲୁ ଯୁଝିବ ଭଲେ ଜାଣିଥା ଭୂପବାଳ ।
(ସକରୁଣେ)
ମୋ ପ୍ରତ୍ୟକ୍ଷେ ସୁବାହେ ! ମରଣ ଲଭିଲ ଯା ନିନ୍ଦ୍ୟ ମୋ
ଶୌର୍ଯ୍ୟଭାର ।

---

ବେତାଳକାରେ = ନିର୍ଭୟରେ ।

(ଦୁଃଖରେ ନିଶ୍ୱାସ ତ୍ୟାଗପୂର୍ବକ)
ତୋ ବାର୍ତ୍ତା କେଉଁଠାରେ ନ ହୁଅଇ ତ ଶୁଣା ବସ୍ତ୍ର
ଅରେ କପାଳ । ୪ ।

ଅନନ୍ତର କପାଳର ପ୍ରବେଶ ।

**କପାଳ—**

ରମ୍ଭୋରୁ ବୃତ୍ତ ।

ଦୈବଯୋଗୁ ଭୟ ପାଇ ଆହବେ
ଦୂରଦେଶକୁ ଜବେ ମୁଁ ବିଦ୍ରବେ ।
ଦୈବରେ ନ ପଡ଼ି ବାଣପାତରେ
ପ୍ରାଣରେ ରହିଲି ମାତ୍ର କାତରେ । ୫ ।

କିନ୍ତୁ ସେହି ରାମର ଅଶୁଗ ବିଶିଖରେ ଆହତ ମାରୀଚ ଜୀବିତ ଅଛି କି ନାହିଁ, ଜଣା ଯାଉ ନାହିଁ । ଯେହେତୁ—

ସ୍ରଗ୍ଧରା ବୃତ୍ତ ।

ଶୀର୍ଷୁ ପ୍ରଭ୍ରଷ୍ଟ ତାହା ରତନମୁକୁଟ ବିସ୍ରସ୍ତ କେଶ ପ୍ରଶସ୍ତ
ଅହା ପ୍ରଧ୍ୱସ୍ତ ବେଗେ କରରୁ ଫଳକ, ସେ ଛୁଟିଲା ପାଦ ହସ୍ତ ।
ଯେ ପ୍ରାୟେ ଚଣ୍ଡବାତ୍ୟା ଘନକୁ କରଇ ବିକ୍ଷେପି ବୃଦ୍ଧବ୍ର କାୟେ,
ତେତେହେ ସେ ରାମବାଣେ କ୍ଷଣକେ ସମୁଦ୍ରରେ ହୋଇଲା
ତାଟକେୟ । ୬ ।

ବୋଧହୁଏ ମାରୀଚ ଅବଶ୍ୟ ମହେନ୍ଦ୍ରାଦ୍ରି ନିତମ୍ବରେ ଅଥବା ପାରାବାର ତରଙ୍ଗିଣିରେ ପଡିଥିବ । ଅତଏବ ତାହାର ଗବେଷଣାରେ ମୁଁ ଏହି ମହେନ୍ଦ୍ର ଶୈଳରେ ପ୍ରବିଷ୍ଟ ହୋଇଅଛି ।

ସ୍ରଗ୍ଧରା ବୃତ୍ତ ।

କୂଟସ୍ଥ ଗ୍ରାବସଂଘେ ଘରଷଣ ଲଭି ଯେ କନ୍ଦରାମ୍ବୁପ୍ରବାହ
ଶୀର୍ଣ୍ଣ ଶୁଭ୍ରାମ୍ବୁବିନ୍ଦୁ-ପ୍ରକରବଇଭବେ ଗୃରୁ ସେ ଦ୍ରୁମଷଣ୍ଡ ।
ତାହା ପ୍ରାନ୍ତସ୍ଥ କୁଞ୍ଜେ କଟିବରମୁଖଗହ୍ୱରସ୍ଥ ପାଥୋଜକନ୍ଦ
ଅମୋଦେ ଗ୍ରାସ୍ୟ ଗନ୍ଧେ, କରଇ ସବୁଦଗେଁ ହିନ୍ଦର୍ଘୋଷନାଦ ।

ଅଥଚ—

ପୃଥ୍ୱୀ ବୃତ୍ତ ।

ମୃଗେନ୍ଦ୍ରକରତାଡ଼ନ-ତ୍ରୁଟିତ, ହସ୍ତିଶୀର୍ଷ ସ୍ରୁତ—
ଅଶୃଙ୍ଖଳିତ ମୌକ୍ତିକପ୍ରକର ଏବ ନିକ୍ଷେପିତ ।
ବନସ୍ଥଳର ରକ୍ତିମା କରଇ, ହସ୍ତି ଅଧୀନ୍ତକୃତ
ଶୁଭେ ତରୁଣ ଭଲ୍ଲୁକ ଧ୍ୱନି ସମାନ ଯେ ସାମ୍ପ୍ରତ । ୮ ।

(ପୁରୋଭାଗକୁ ଚାହିଁ) ଅହୋ ! ମାଯାଚ ଏଷଣି ଜଳସ୍ଥଳି
ମଧ୍ୟରୁ ଉତ୍ଥିତ ପ୍ରାୟ ଦିଶୁଅଛୁ ତ ! (ନିରେଖି)

ମାଲିନୀ ବୃତ୍ତ ।

ଦଶଇ ଭିମିତ ବସ୍ତ୍ରେ ସାନ୍ଦ୍ରଶୈବାଳଖଣ୍ଡ,
ଅଲମ୍ବ ନିବଦ୍ଧ କେଶେ ନ୍ୟସ୍ତ ହଣ୍ଡୀରପିଣ୍ଡ ।
କରଚରଣତଳେ ଅବ୍ୟକ୍ତ ତା ରକ୍ତ ଧୌତ,
ପଡ଼ିତ ଗିରିନଦୀତତ୍ତେ ହାୟ ! ସ୍ୱନ୍ଦପ୍ରସୂତ । ୯ ।

ମାଯାଚ—(ଜବାଳକୁ ଦେଖି—ସାଶ୍ଚର୍ଯ୍ୟେ ) ବତ୍ସ ଜବାଳ !
କାହିଁଅଛୁ ତ । ଆସ ଥରେ ମୋତେ ଆଲିଙ୍ଗନ କର !

କପିଳ—ଆର୍ଯ୍ୟ ମାରୀଚ ! ଦୈବବଳରୁ ଆପଣ ରାମସାୟକରୁ
 ମୁକ୍ତ ହୋଇଅଛନ୍ତି । ( ସାଶ୍ରୁ ନୟନରେ ଆଲିଙ୍ଗନ
 କରିବା )

ମାରୀଚ—ବତ୍ସ ! ଆଉ ଅନ୍ୟ କଥା କଣ କହିବ !

ସ୍ରଗ୍ଧରା ବୃତ୍ତ ।

ତାହାର ଜ୍ୟାର ଘୋଷ ପ୍ରତିରସିତ ମହାବାଣଝଙ୍କାରଶବ୍ଦ
"ହେଲ ବଧ୍ୟସ୍ତ" ବୋଲି ପ୍ରମୁଦିତବନ୍ଦୀଗୀର୍ବାଣ-ବାକ୍ୟ ପ୍ରଣାଦ ।
ଏ ସିନ୍ଧୁଧ୍ୱାନ, ଊର୍ବୀନଳପତିତପଯୋବାସଜନ୍ତୁଙ୍କ ରବ
ଏକାବେଳେ ପ୍ରବିଷ୍ଟ ଶ୍ରୁତିଯୁଗକୁହରେ, ନଷ୍ଟ ମୋ
 ଗୀରବ୍ଭବ । ୧୦ ।

ତା ପରେ—

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ମୋ ନଷାତରୁ ଶୀର୍ଣ୍ଣ ଖାଟନକରଦ୍ୱାରି ଯଦା ନିର୍ଗତ
ଯାତାଳୋଦର ମାର୍ଗ, ତାର ଭିତରେ ଶୀଘ୍ରେ ମୁଁ ହେଲି ବ୍ୟୂତ ।
ଏ ଘୋରାର୍ଣ୍ଣବ ତକ୍ଷଣେ ପ୍ରଚଳିତ ସ୍ରୀଯ୍ୟାମ୍ବୁ ଆବେଗରେ,
ହା ! ସେ ମାର୍ଗ ନିରୋଧି ଟେକଣ ମତେ ନିକ୍ଷେପିଲା ଖରରେ ।୧୧।

କପିଳ— ସାଧୁ ସମୁଦ୍ର ! ତୋର କାର୍ଯ୍ୟ ସାଧୁ ଅଟେ । ମହାରାଜ
 ରାବଣଙ୍କ ପ୍ରତାପରୁ ଭୀତ ହୋଇ ତଦୀୟ ଅନୁଚର
 ମାରୀଚଙ୍କର ପରିତ୍ରାଣ କରିଅଛୁ ।

ମାରୀଚ—(ପଶ୍ଚାତ୍ତାପପୂର୍ବକ) କପିଳ ! ଆଉ କଣ କହିବ !

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଅହା ମୋ ପ୍ରଭୁ ବଂଶବାନ୍ତୁ କରୁଣା ଥାଏ, ସଦା ଭୁବଣ
ଖ୍ୟାତ-ବସ୍ତୁ ସମସ୍ତ ଭୂଧର ଧରା ଅମ୍ଭୋଧି ବନ୍ୟା ପୁଣ ।
ପାଏ କିନ୍ତୁ ମୁଁ ଯା ତଦୀୟ ଜନସଂଘାତେ ଉଦାସୀନତା,
ମୋହ୍ୱାର ପ୍ରଭୁ କୀର୍ତ୍ତିସନ୍ତତି ଭଲେ ହେଲା କଳଙ୍କାବୃତା । ୧ ।

କରାଳ—ଆର୍ଯ୍ୟ ! ସେପରି କହ ନାହିଁ । ସେହି କ୍ଷତ୍ରିୟବଟୁ
ବଳବାନ୍ ସତ୍ୟ; ତଥାପି ଅମିତ ମାୟାବଳରେ ତାହାକୁ
ନିପାତ କରିବାକୁ ହେବ । ଯଦ୍ୟପି ନିହତ ନ କର
ପ୍ରତିନିବୃତ୍ତ ହେବା, ମହାରାଜ ଅମ୍ଭମାନଙ୍କୁ ସର୍ବଥା
ଅପ୍ରଶଂସା କରିବେ । ଅପିଚ ମହାରାଜ ଗୃହୀତ-ରାମରୂପ
ହେଲେ ସୁଦ୍ଧା ତାହାଙ୍କର ସୀତାବିବାହସମ୍ବନ୍ଧରେ
ଦୁରାତ୍ମା କୌଶିକ ମୁନି ଅପରୀକ୍ଷିତ ସେହି କ୍ଷତ୍ରିୟ-
ପୋତଦ୍ୱାର ପ୍ରତ୍ୟୂହ ଆଚରଣ କରିବ । ମହାରାଜ ରାମ-
ବେଶ ଗ୍ରହଣ କରିବେ ବୋଲି ତାଟକା ମଧ୍ୟ କହିଅଛନ୍ତି ।

ମାରୀଚ—ଅତଏବ ସେହି ମୁନିପାଶ ଅନୁଯାୟିଙ୍କ ସଙ୍ଗେ ଯେପରି
ସ୍ୱସ୍ଥାନକୁ ଯାଇ ନ ପାରେ, ତଦନୁରୂପ ଅନ୍ତରାୟ
ଆଚରିବା ଉଚିତ ।

କରାଳ—ଏ ବିଷୟରେ ଆର୍ଯ୍ୟ ପ୍ରଜ୍ଞାଚକ୍ଷୁରେ କିଛି ନିରପାୟ
ଉପାୟ ଦେଖିଅଛନ୍ତି କି ?

ମାରୀଚ—(ଅଳ୍ପ ବିଚାର କରି) ହିଁ, ତାହା ହୋଇଅଛି ।

କରାଳ—କିପରି ?

ମାରୀଚ—(କର୍ଣ୍ଣରେ କହିବା)

କରାଳ—( ହାସ୍ୟପ୍ରକାଶପୂର୍ବକ ) ସମ୍ପ୍ରତି ଆପଣଙ୍କର ଏହା ଶୁଭଙ୍କର ଅଟେ । ଯେହେତୁ—

ଆର୍ଯ୍ୟା ବୃତ୍ତ ।

ଅପ୍ରିୟ କଥା ଶୁଣି ସେ ମାନ୍ୟା ପୀଡ଼ା ତ ହେବ ବହିଗତା ।
ତଦନୁଗତ ରାମ ହେବ ସ୍ମରଣ ତଦୀୟ ଭ୍ରାବମହତ୍ତ୍ରା । ୧୩ ।

ତଦନନ୍ତର ପୁତ୍ରଶୋକବିମୋହିତ ରାଜା ଦଶରଥଙ୍କୁ ଆଶ୍ୱାସନାରେ ସଙ୍ଗେ ଧରି ବିଶ୍ୱାମିତ୍ର ଅଯୋଧ୍ୟାକୁ କେବଳ ପ୍ରତିନିବୃତ୍ତ ହେବ । କିନ୍ତୁ ସେହି ମହର୍ଷି ବିଶ୍ୱାମିତ୍ରର ଅନୁପସ୍ଥିତି ଓ ଅନବଗତିରେ ମାୟାର ପ୍ରକାଶ କରିବାକୁ ହେବ ।

ମାରୀଚ—ତୁମ୍ଭେ ଠିକ୍ କହୁଅଛ । ଆଚ୍ଛା ତେବେ ବର୍ତ୍ତମାନ ଯେଉଁଠି ରାମ ପ୍ରଭୃତି ଅଛନ୍ତି, ସେଠାକୁ ଯିବା ଚାଲ ।

(ଦୁହେଁ ପ୍ରସ୍ଥାନ କରିବା)

କରାଳ—(ଅଗ୍ରତଃ ବିଲୋକ) କୌଶିକାଶ୍ରମରୁ ଅର୍ଦ୍ଧ ଯୋଜନ ମାତ୍ର ଦୂରସ୍ଥ ଏହି କୌଶିକୀ ନଦୀ ତୀରରେ ଦଶରଥ କପଟ ଶିବିର ସନ୍ନିବେଶ କରିଅଛୁ । ଦେଖନ୍ତୁ, ଏସ୍ଥଳ କପଟ—

ସ୍ରଗ୍ଧରା ବୃତ୍ତ ।

ରଥ୍ୟାଶ୍ୱବ୍ରାତହ୍ରେଷା ସହ-ବନ ମହିଷ-କ୍ରୂର ଶୃଙ୍ଗେ ବଶୀର୍ଣ୍ଣ—
ବଲ୍ମୀକୁ ବ୍ୟାଳ ରଙ୍ଘ୍ରେ ପରୁଷତର ବଷୋଦ୍ଗାର ଯେ ଖ୍ୟାତପୂର୍ଣ୍ଣ ।
ଭେରୀଝଙ୍କାରନାଦ-ପ୍ରମୂଦ୍ରିତ-କପିଏ ତାଣ୍ଡବେ ମାତିଛନ୍ତି,
ସେନାମାତଙ୍ଗମାନେ କବଳରୁ ବଲକା ଦର୍ଭ ନକ୍ଷେପିଛନ୍ତି ।୧୪।

ସେହି ରାଘବ ଶିଶୁକୁ କୌଶଳରେ ଏହିଠାରୁ ଅତି ଦୂରକୁ ଘେନଯିବାର ଅବଶ୍ୟକ ।

ନେପଥ୍ୟରେ—

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ମାର୍ଗଶ୍ରାନ୍ତିବଶ ପ୍ରସୁପ୍ତଜନକାଦେଶେ ଉପେକ୍ଷା କରି
ଅନ୍ୟସ୍ଥାନଗତାନୁଜଙ୍କର ତଥା ଆମନ୍ତ୍ରଣା ବିସ୍ମରି,
ପାଦେ ଚର୍ମର ପାଦୁକା ଧରି କରେ କୋଦଣ୍ଡ କାଣ୍ଡାବଳୀ
ଆକ୍ଷେଟାର୍ଥ ବନେ ପ୍ରବିଷ୍ଟ କୁତୁକେ ଶ୍ରୀରାମ ଏକା ବଳୀ ।୧୫।

ଅତଏବ ସେନାମଧ୍ୟସ୍ଥ ରାମଚନ୍ଦ୍ରଙ୍କର ପରିଜନମାନେ ଅବିଳମ୍ବେ ଅରଣ୍ୟରେ ପ୍ରବେଶ କରନ୍ତୁ । ମୁଁ ମଧ୍ୟ ଏକ୍ଷଣି ତାହାଙ୍କୁ ଅନୁସରି ଯାଉ ଅଛି ।

କପିଳ—ରାମଚନ୍ଦ୍ରର ପ୍ରିୟ ମିତ୍ର ପିଙ୍ଗଳ ନାମକ ବିପ୍ରବଟୁ ଏପରି ଘୋଷଣା କରୁଅଛି ।

ମାରୀଚ—(ସହର୍ଷେ) ଦୈବବଳରୁ ଆମ୍ଭ ଦୁହିଙ୍କୁ ଭଲ ଅବସର ମିଳିଅଛି । ବନ୍ଧୁ କପିଳ । ଏହି ବିପ୍ରବଟୁକ ଯିବା

ପୂର୍ବରୁ ତୁ ମାୟିକ ଛଦ୍ମ ରୂପ ପ୍ରଦର୍ଶନରେ ଅରଣ୍ୟ ମଧ୍ୟ ହସ୍ତି ଦ୍ୱାରା ଆପେ ଗୃହୀତ ହେବାର କହି ବିଳାପ କରିବୁ । ରାମ ତତ୍‌କ୍ଷଣରେ ନିଜ ସ୍ନେହବଶରୁ ଅନୁଧାବନ କଲେ କୌଶଳରେ ଅତି ଦୂର ଅରଣ୍ୟକୁ ଘେନିଯିବୁ । ମୁଁ ମଧ୍ୟ କୌଶିକ ମହର୍ଷିର ଶିଷ୍ୟ କାଶ୍ୟପର ବେଶ ଧାରଣରେ ରାମର ବିରହସନ୍ତପ୍ତା ସୀତାକୁ ମାୟାବଳରେ ତଦଗ୍ରତଃ ପ୍ରକାଶ କରି ଯଥାମନୋରଥକୁ ସାର୍ଥ କରିବ ।

(ଇତି ମନ୍ତ୍ରଣାରେ ଦୁହେଁ ନିଷ୍କ୍ରାନ୍ତ)

ବିଷ୍କମ୍ଭକ ।

ଅନନ୍ତର ମହାରଣ୍ୟରେ ଧନୁର୍ବାଣଧର ରାମଚନ୍ଦ୍ରଙ୍କର ପ୍ରବେଶ ।

ରାମ— ସ୍ରଗ୍ଧରା ବୃତ୍ତ ।

କ୍ରୋଧାନ୍ଧୀଭୂତ ନାଗେ ଅମିତ ମଦଭରେ ଉଦ୍ଧତେ ବକ୍ରମନ୍ତ୍ର ।
ବକ୍ରେ ଗ୍ରୀବା ନବେଶି ଦ୍ୱିରଦବଇରୀଏ ରୋଷରେ ଗର୍ଜ୍ଜୁଁ ଛନ୍ତି ।
ଗୁର୍ବୀ ମୌର୍ବୀନିନାଦ ଶ୍ରବଣ କରି ମୁଦେ ବର୍ହିଏ ତାଣ୍ଡବନ୍ତି ।
ଅଖେଟାଖେଟଲୀଳା ବହୁବଦନକୁ ବନେ ଦେଖି ଯାଏଁ ମୁଁ ତୃପ୍ତି । ୧୭ ।

ଅପିଚ ଏସ୍ଥଳରେ—

ବସନ୍ତତିଳକ ବୃତ୍ତ ।

ପ୍ରୌଢ଼ାଙ୍ଗନା-ଲଳିତବୀକ୍ଷଣ ତୁଲ୍ୟ କାନ୍ତ
ସବୁଜ ନୀଳ ଜଳକାବଳୀ-କାନ୍ତିଯୁକ୍ତ

ସ୍ୱରୂ ରମ୍ଭୋରୁକସମୂହର ଦେଖି ଦୃଷ୍ଟି
ଅଞ୍ଜାତ-ଭବ-ଶବରେ ନ ଲଭନ୍ତୁ ତୁଷ୍ଟି । ୧୭ ।

(ସୋହ୍ଲଣ୍ଠେ)

ମାଲିନୀ ବୃତ୍ତ ।

ରଜତ ହରଣଶାବେ ଯାଦୃଶ ପ୍ରେମପୂର୍ଣ୍ଣ
ତରଳ ନୟନକୋଣେ ଚାହିଁ ମୋହନ୍ତି ତତ୍ତ ।
ମଣଇ ମୁଁ ତଦପେକ୍ଷା ସୌମ୍ୟ ସୌଭାଗ୍ୟ-ଭାଗୀ
ଜନକନୃପତିକନ୍ୟା ଚାରୁ ଚାହାଣି ଭଙ୍ଗୀ । ୧୮ ।

ନେପଥ୍ୟରେ—

ହେ ସଖେ ! ରାମଚନ୍ଦ୍ର ! ହାୟ ହାୟ ! ରକ୍ଷା କର ।

ରାମ—(ଶ୍ରବଣମାତ୍ରକେ ସସମ୍ଭ୍ରମେ)
ଜଣ ଏ ! ଏହି ନିର୍ଜନ ବନରେ କେହି ଜଣେ ପୁରୁଷ
ଦୀନସ୍ୱରରେ ମୋତେ ଡାକୁଅଛି !

(ଧନୁର୍ବାଣହସ୍ତରେ ସୌବିଦେତ୍ୟ ଶୀଘ୍ର ଗମନ କରିବା )

ପୁନରପି ନେପଥ୍ୟରେ—

ଏହି ଦୁଷ୍ଟ ମତଙ୍ଗଜ ଶୁଣ୍ଡରେ ମୋତେ ଆକୃଷ୍ଟ କରି
ବିନାଶ କରୁଅଛି, ରକ୍ଷା କର ।

ରାମ—ଜଣ ! ପିଙ୍ଗଳର ବିଳାପ ପରି ଶୁଭୁଅଛି ତ ! ( ଅତି
ଶୀଘ୍ର ଚାଲିବା ) ହାୟ ! କେଡ଼େ ବିପଦ ଯେ !

ପୃଥ୍ୱୀବୃତ୍ତ ।

ସୁଦୁଢ଼ନ ବନା· ବନେ ମୃଗଲଲ୍ପୃ ସର୍ବାଗ୍ରତଃ
ପ୍ରବିଷ୍ଟ ମୁହୁଂ ଅଦ୍ୟ ପିଙ୍ଗଳକ ଏକାଲ ଅଗତ ।
ଅରଣ୍ୟଗଜ ଶୁଣ୍ଡରେ କରଣ ତାକୁ ବଦ୍ଧ କ୍ରମେ
ଅତି ଦ୍ରୁତପଦେ ଗମେ ନିଜ ନିକୁଞ୍ଜରେ ସମ୍ଭ୍ରମେ । ୧୯ ।

ପୁନରପି ନେପଥ୍ୟରେ—

ହା ପିତଃ ! ହା ପୁତ୍ରବତ୍ସଳ ! ହାୟ ହାୟ ! ଏବେ ନିଶ୍ଚେ ମୋ ପ୍ରାଣ ନିର୍ଗତ ହେଲା ! ହା ମାତଃ ଅଭାଗ୍ୟବତି ! ଏତାଦୃଶ ମୃତ୍ୟୁମୁଖରେ ଦେବାପାଇଁ ମୋତେ ଜନ୍ମ କରିଥିଲ ! ହା ପ୍ରିୟସଖା ରାମଚନ୍ଦ୍ର ! ମୋ ପ୍ରତି ଆପଣଙ୍କର ସ୍ନେହାନୁବନ୍ଧ ବର୍ତ୍ତମାନ ପରିପାକକାଳରେ ଅତି ଦାରୁଣ ହୋଇଉଠିଲା ?

ରାମ—( ସକରୁଣାରମ୍ଭରେ ) ଭୟ କର ନାହିଁ, ଭୟ କର ନାହିଁ । ହୋଇଛି ମୁଁ ସତ୍ୱର ଆସୁଅଛି । ( ନିକଟକୁ ଯାଇ) ଅହୋ ! ଧିକ୍ ମୋର ଅସାବଧାନତା ! ବର୍ତ୍ତମାନ କଣ ହେବ ! ସେହି କରିରାଜ ବାଣଲକ୍ଷ୍ୟରୁ ଦୂରକୁ ପଳାଇଗଲାଣି ଯେ ! (ଧନୁକୁ ସମ୍ବରଣ କରି ଆଗକୁ ଚାହିଁ) କଣ ଏ ! ସେହି କରିରାଜ କାହିଁ ଦିଶୁ ନାହିଁ ତ ! (ଚିନ୍ତାରେ ନିଶ୍ୱାସ ମୁଞ୍ଚି)

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଅଚ୍ଛା ହେଉ ମୁଁ ସେ ଗଜେନ୍ଦ୍ର ସରଣୀ ଅଦ୍ୟୈବ ଅନ୍ୱେଷିବି,
ଯେ ମାର୍ଗେ ଗମି ଦୂରଦେଶକୁ ସଖା ଆପତ୍ତି ସହାରିବ ।

ଯେବେ ତା ପଦଚିହ୍ନମାନ ବିମଳ ଗ୍ରାବେ ନୁହେ ପ୍ରସ୍ଫୁଟ,
ଭଙ୍ଗଶ୍ରେଣି-ବିକ୍ଷୁଷ୍ଟ ତା ମଦଜଳାସାରେ ତ ହେବ ସ୍ଫୁଟ ।୬୦ ।

(ଅଳ୍ପ ଗନ୍ତ ଯାଇ ଅବଲୋକନ କରି)

ସ୍ରଗ୍ଧରା ବୃତ୍ତ ।

ଅଦ ଗ୍ରାବପ୍ରପାତେ ଝର ବହୁଅଛୁ ଯେ ରମ୍ୟହଂସାବତଂସ,
ଯାହେଁ ଜ୍ଞାରଞ୍ଜିକୁଞ୍ଜ ପ୍ରଚଳିତ କଳିକାପୁଞ୍ଜରେ ସୁପ୍ରକାଶ ।
ଏହିଁ ଜାଗର୍ତ୍ତିଗର୍ତ୍ତେ ବିଷଧରର ସମାଲୋକନେ ଭ୍ରାନ୍ତ ଭ୍ରାନ୍ତ—
ବାତାପ୍ଲୁତ୍ରାନ୍ତ-ନେବୋପୂଲରମ୍ୟ ସୁଷମାଯୋଗରେ ନୈଳ୍ୟଯୁକ୍ତ ॥

ଏଣୁ ବୋଧହୁଏ ଏହିଠାରେ ସେ କରିରାଜ ଥାଇ ପାରେ ।
ଅଚ୍ଛା ଥରେ ଏ ବଟେ ସେ ବଟେ ଖୋଜିବା । (ଦେଖି
ସହର୍ଷେ) ଅହୋ ! ଗଜଗୃହୀତ ପିଙ୍ଗଳ ଦୈବବଳରୁ
ମୁକ୍ତି ପାଇ ହେଇଛି ଅବ ମୋହିତ ହୋଇ ପଡ଼ିଅଛି ।

( ପିଙ୍ଗଳବେଶରେ ଶିଳାତଳୋପବିଷ୍ଟ କବିଳର ମୂର୍ଚ୍ଛାଭିନୟ
ପୂର୍ବକ ପ୍ରବେଶ । )

ରାମ—(ନିକଟକୁ ଯାଇଁ) ସଖେ ! ଆଶ୍ୱାସିତ ହୁଅ, ଆଶ୍ୱାସିତ ହୁଅ ।
(ବସ୍ତ୍ରାଞ୍ଚଳରେ ବିଞ୍ଚିବା)

ଇନ୍ଦ୍ରବଜ୍ରା ବୃତ୍ତ ।

ଏ ଦୁଃଖେ ମୋ ମର୍ମ ଦହେ ବିଶେଷେ ।
ଆହ୍ଲାଦିଲା ସମ୍ପ୍ରତି ମୋହ ତୋଷେ ।

ପ୍ରବୀଣ ତୁମ୍ଭେ ପଡ଼ ଭୂମିଭାଗେ
ମୋତେ କି ବାଞ୍ଛା କର ଦୁଃଖଭୋଗେ । ୨୨ ।

କରାଳ—(ସ୍ୱଗତ) ମହାରାଜ ରାବଣଙ୍କର ଯାହାହିଁ ଅଭିରୁଚି ।
(ଅତି କଷ୍ଟରେ ନେତ୍ର ଉନ୍ମୀଳନ କରି ପ୍ରକାଶତଃ)

ଅହୋ ! ପ୍ରିୟବନ୍ଧୁପ୍ରିୟ ରାମଚନ୍ଦ୍ର !

ରାମ—ହିଁ ସଖେ !

କରାଳ—(ସମାଶ୍ୱସିତ ହୋଇ) ସଖେ ! ଆପଣଙ୍କର ମୃଗୟ୍ୟା-ବଦୃକ୍ଷାରେ ଅସି ମାର୍ଗ ମଧ୍ୟରେ ମତ୍ତହସ୍ତିକର୍ତ୍ତୃକ ଗୃହୀତ ହେଲି । ତଦନନ୍ତର—

ଶାଳମ୍ମା ବୃତ୍ତ ।

ଶୁଣ୍ଡିକ୍ୟା-ନିର୍ମୁକ୍ତ ନିର୍ଦ୍ଦୋଷ-ପୂର୍ଣ୍ଣ
ଯିହାରାବେ କର୍ଣ୍ଣ ହେବାରୁ ପୂର୍ଣ୍ଣ ।
କେବା ହସ୍ତୀ ଅନ୍ୟ କେବା ମୁଁ କେହ୍ର
ମୂର୍ଚ୍ଛାଯୋଗେ ନିର୍ଦ୍ଧାରି ତା ପାରି ନାହିଁ । ୨୩ ।

ରାମ—ଏହି କଥାରୁ ମୁଁ ମନେ କରେଁ, ଯିହ ଗର୍ଜନରୁ ବନସ୍ତ ସେହି ହସ୍ତିର ହସ୍ତରୁ ତୁମ୍ଭେ ଭାଗ୍ୟବଳରେ ମୁକ୍ତି ପାଇଅଛ । ଅଚ୍ଛା ହେଉ, ବକୁଳଛାୟାଯୁକ୍ତ ଏହି ଶୀତଳ ପ୍ରଦେଶରେ ଅଳ୍ପ ବିଶ୍ରାମ କର ।

କରାଳ—ଆପଣ ମଧ୍ୟ ମୃଗୟାନୁକ୍ରମରେ ବୁଲି ବୁଲି ଶ୍ରାନ୍ତ ଅଛନ୍ତି, ଏହି ସ୍ଥଳରେ ଅଳ୍ପ ବିଶ୍ରାମ କରନ୍ତୁ । ଦେଖନ୍ତୁ ଏହି ଅରଣ୍ୟର ପ୍ରାନ୍ତଭାଗ

ମନ୍ଦାକ୍ରାନ୍ତା ବୃତ୍ତ ।

ନାନା ବଲ୍ଲୀ ଝିଲ୍ଲିରୁଦ୍ଧଚରଣେ ଭୂମି ସଂପ୍ରାପ୍ତଭୂଷା
ଏହା ପ୍ରାନ୍ତେ ବହଇ ତଟିନୀ ପଦ୍ମମାଳାବତଂସା ।
ଶୈତ୍ୟାମୋଦାନ୍ୱିତ ପବନ ସନ୍ତୋଷ ଜନ୍ମାଇ ଚଳେ
ଧୀରେ ଅସେ ମଦକଳପିକାଗ୍ରବ ବିସ୍ତାର ଏଥେ । ୨୪ ।

ରାମ—ଏହି ପ୍ରଦେଶଟି ଅତି ରମଣୀୟ ଦିଶୁଅଛି । ପରିଜନ-
ମାନଙ୍କର ଆଗମନ ପର୍ଯ୍ୟନ୍ତ ଅମ୍ଭେ ଦୁହେଁ ଏହି ସ୍ଥାନରେ
କେବଳ ସୁଖରେ ବସିଥିବା ।

କଳା—(ସ୍ୱଗତ) ମାଗ୍ୱଚର ଆଗମନ ପର୍ଯ୍ୟନ୍ତ ବୋଲି କହିବା
ଉଚିତ । (ପ୍ରକାଶତଃ) ଆପଣଙ୍କର ଯେ ଅଭିରୁଚି ।

ରାମ—ସଖେ ! ଦୈବବଳରୁ ସିନା ତୁମ୍ଭକୁ ପୁନରପି ନିରାପଦ
ଦେଖିଲି ।

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ମତ୍ପ୍ରାଣପ୍ରିୟ ମିତ୍ର ! ତୁମ୍ଭ ବିରହେ ହୃଦ୍‌ବାସିନୀ ମୈଥିଳୀ
ହେଲେହେଁ ମମ ଦର୍ଶଥା ସ୍ଫୁରଲିହା ଇଚ୍ଛା ନୁହନ୍ତା ଧରି ।
ଚେତେଣେ ଥାଉ ବିବାହଉତ୍ସବ କଥା ତ୍ୱତ୍‌ପ୍ରାଣବାର୍ତ୍ତା ଶୁଣି
ନକଲେ ବା ଶରଧା ବିଦାର୍ଣ୍ଣ ହୁଦ ମୋ ଅହା ନୂହନ୍ତା ପୁଣି ।୨୫।

ନିରାଜ—(ସ୍ୱଗତ) ଜାନକୀର ବିବାହମଙ୍ଗଳ ଅପଣାକୁ ପ୍ରାପ୍ତ
ହେବ, ଏହା କଣ ଏ ରଘୁକିଶୋର ନକେ ଜାଣି
ପାରିଅଛୁ ! (ପ୍ରକାଶତଃ) ସଖେ ! ଏପରି କହନ୍ତୁ ନା ।
ଅପଣ ମତ୍ତ୍ୱିରହବିଷାଦରେ ଯଦି ବିବାହରେ ବିମୁଖ

ତୁଅନ୍ତୁ, ତେବେ ଜାନକୀ କଦାଚ ପ୍ରାଣରେ ବଞ୍ଚିବେ ନାହିଁ ।

ରାମ—(ସୋତ୍କଣ୍ଠେ) ସଖେ ! କାଶ୍ୟପଙ୍କ ମୁଖରୁ ଶୁଣି ତୁମ୍ଭେ ମୋତେ ଯାହା କହୁଅଛ, ତାହା ଯଥାର୍ଥ କି ? ଯଥା—

ମନ୍ଦାକ୍ରାନ୍ତା ବୃତ୍ତ ।

କାମାବସ୍ଥା ଜନକତନୟା ସ୍ୱପ୍ନସନ୍ଦୃଷ୍ଟ ରୂପ
ଭାବ ପ୍ରେମେ ଅଭିଭୂତ କଲା ଏକତାନେ ଅମାପ ।
କଷ୍ଟେ ବକ୍ଷେ କମଳଦଳପେ ଚନ୍ଦ୍ର ସେ ତୁମ୍ଭ ମୂର୍ତ୍ତି,
ଆଳୀମାନେ କହ ବନ୍ଧୁମତେ ତାକୁ ଆଶ୍ୱାସୁଛନ୍ତି । ୨୬ ।

କରାଳ—( ନ ଶୁଣିବାର ଅଭିନୟ କରି ସ୍ୱଗତ )
କଣ ଏ ! ଏତେବେଳ ପର୍ଯ୍ୟନ୍ତ ମାଗଧ ଆସିଲା ନାହିଁ କାହିଁକି ? (ଚିନ୍ତିତ ରହିବା)

ରାମ—ସଖେ ! କାଶ୍ୟପଙ୍କ ମୁଖରୁ ଶୁଣି ତୁମ୍ଭେ ମୋତେ ଯାହା କହୁଅଛ, ତାହା ଯଥାର୍ଥ କି ?

କରାଳ— କାଶ୍ୟପ କିଏ ?

ରାମ—ସଖେ ! ଯାହାଙ୍କୁ କୌଶିକଶିଷ୍ୟ ବୋଲି ମୋତେ କହୁଥାଅ, ତାହାଙ୍କୁ ପାସୋରି ଦେଇଅଛ ?

କରାଳ—(ଭୟରେ ଥରି ସ୍ୱଗତ ) ଅହୋ ! ମୋର କେଡ଼େ ଅସାବଧାନତା ଯେ ! ମାଗଧର ଚିନ୍ତାରେ ଅନ୍ୟମନସ୍କ ହୋଇ ପ୍ରସ୍ତୁତବିରୋଧ କଥା କହିଦେଲି ! ଅଚ୍ଛା କେହି ତେବେ ଏପରି କଥାଟା ଘୋଡ଼ାଇ ନେବ ।

(ପ୍ରକାଶତଃ) କାପର ପାଟେସାର ଦେବ ? କନ୍ତୁ ମତ୍ତହସ୍ତି-ଗ୍ରହଣ ଚନ୍ତାରେ ମୁଁ ଏକାବେଳକେ ବିହ୍ୱଳଚିତ୍ତ ହୋଇ ଯାଇଅଛୁ । ସେହି କାଶ୍ୟପଙ୍କ ବଚନ କଦାପି ମିଥ୍ୟା ନୁହେଁ, ସଖେ ଶୁଣନ୍ତୁ ।

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଓଷ୍ଠେ ପଲ୍ଲବ, ହଂସତୂଳଶଯ୍ୟନେ ବର୍ଜେ ସଦା ଆଦର,
ହସ୍ତେ କାଞ୍ଚନ କଙ୍କଣାଦି ନ ଧରେ, ବାନ୍ଧେ ମୃଣାଳାଙ୍କୁର ।
ସଙ୍ଗୀତେ ଶୁଣି ତୁମ୍ଭ ଭାଗ୍ୟଗରିମା ସନ୍ତୁଷ୍ଟ-ଦତ୍ତ-ଶ୍ରୁତି
ଅହା ! ଏପରି ତୁମ୍ଭ ଲାଗି ଲଭିଲା ସେ ଜାନକୀ ଦୁର୍ଗତି । ୨୭ ।

ରାମ—(ସ୍ୱଗତ) ସେହି କଲ୍ୟାଣୀ ଜାନକୀ ସତେ କଣ ମୋ ଉଦ୍ଦେଶରେ ଏତାଦୃଶ ଦୟନୀୟ ଅବସ୍ଥାକୁ ପାଇଅଛି ! (ପ୍ରକାଶତଃ) ଏପରି ପରିହାସ କରିବା ବୃଥା ।

କପିଳ—(ସ୍ୱଗତ) ଏହାର ମାନସିକ ପ୍ରବୃତ୍ତି ପ୍ରସ୍ତୁତ କାର୍ଯ୍ୟରେ ଉପଯୋଗୀ ହେଲା ପରି ଦେଖାଯାଏ । ଅଚ୍ଛା ତେବେ ଏପରି କହିବ । (ପ୍ରକାଶତଃ) ମୋର କଥାରେ ମଧ୍ୟ ଆପଣଙ୍କର ବିଶ୍ୱାସ ଜନ୍ମି ନାହିଁ ? ସଖେ ! ଏହା ସମ୍ପୂର୍ଣ୍ଣ ସତ୍ୟ ମନେ କରନ୍ତୁ । ସମ୍ପ୍ରତି—

ସ୍ରଗ୍ଧରା ବୃତ୍ତ ।

ତୈଳ ସ୍ନାନାନୁଲେପ ପ୍ରଭୃତି ଜନକଜା କେଶସଂସ୍କାର ସାଥ
କ୍ରୀଡ଼ାସଂସକ୍ତଚିତ୍ତା ନ ହୁଅଇ, ନ ଶୁଣେ ସଙ୍ଗୀତ-ବୃନ୍ଦୋକ୍ତି ।

ଦୁଃଖେ ବନ୍ୟାଦି ଆହା ମୁଖ କରଡଳରେ ଅଶ୍ରୁନେତ୍ରେ ତ ସତେ
ନାଦ୍ରାଭିବେ ଅଜସ୍ରେ ତବ ମୂରତି ହୃଦେ ଚିନ୍ତ୍ର ନିଃଶ୍ୱାସ ମୁଞ୍ଚେ ।

ରାମ—(ସ୍ୱଗତ)

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଯେତ୍ତେ ଶୀତମୟୂଖ ଶୀତଳତର ପ୍ରତ୍ୟଗ୍ରଭ୍ର ଛାବତ
ଦେଖା ମାତ୍ରକରେ ସମୁଦ୍ରକୁ କରେ ଏକାନ୍ତ ସନ୍ତୋଷିତ ।
ତେତ୍ତେ ମହର ବକ୍ତ୍ରନିର୍ଗତ କଥା ହେଲା ଷଣେ ମୋ ଶ୍ରୁତ
ଅର୍ଥ୍ୟର୍ଥୀ ମନୋଜ୍ଞ ମୋର ହୃଦଯେ ଅଲୋଡିଲା ସାମ୍ପ୍ରତ । ୨୯ ।

କଣ୍ୱ—କାଶ୍ୟପ ଆତ୍ମଜ ମଧ୍ୟ କିଛି କହୁଅଛନ୍ତି ।

ରାମ—ଆଉ କଣ କହୁଅଛନ୍ତି ?

କଣ୍ୱ—

ଦ୍ରୁତବିଲମ୍ବିତ ।

କୁମୁଦକୋରକ-ସୌରଭ ମିଶ୍ରିତ
ମରୁତ ଅଗତ ରଶ୍ମିମୁଖେ ମିତ ।
ଲଭଣ ସଂକଳପେ ତବ ସଂଗତ
ହୋଇ ଚନ୍ଦ୍ରନିଶା ଲଭି ଦୁର୍ଗତି । ୩୦ ।

ରାମ—(ସପୁଲକେ ସ୍ୱଗତ)

ଅନୁଷ୍ଟୁପ୍ ବୃତ୍ତ ।

ସମାଲିଙ୍ଗନ ସେ ବାଳା ସଙ୍କଳ୍ପେ ଲଭିବା ଶୁଣି ।
ସୋତ୍କଣ୍ଠ ଚିତ୍ତ ମୋ ବନ୍ଧ ହୋଇଲା ସହସା ବଳେ । ୩୧ ।

ଅତଏବ ସଂପ୍ରତି—

କୁସୁମାଶୁଗ ବୃତ୍ତ ।*

ଲଭିବାରୁଟି ରନ୍ଧ୍ର ମୋର ଚିତ୍ତ
ପଡିଲା ଗଳି ଧୈର୍ଯ୍ୟ-ଲାଜ-ବିତ୍ତ ।
ପଶିଲା ତହିଁ ପୂର୍ବ ଅପ୍ରବିଷ୍ଟ ।
ପ୍ରସବାଶୁଗ—ଏହି ଘୋର କଷ୍ଟ । ୩୨ ।

କପିଳ—ସଖେ ! ଆପଣ ନୀରବ ରହିଲେ କାହିଁକି ?

ରାମ —(ଧୈର୍ଯ୍ୟ ଅବଲମ୍ବନ କରି ପ୍ରକାଶତଃ)
ସେହି କନ୍ୟାର କଥାରେ ଆମ୍ଭମାନଙ୍କର କି ପ୍ରୟୋଜନ ?

କପିଳ—(ସହାସ୍ୟେ)

ମନ୍ଦାକ୍ରାନ୍ତା ବୃତ୍ତ ।

ଅଗେ ତାହା ଚରିତ ଶୁଣିବାପାଇଁ ରାଗେ ପଚାରି
ମଧେ ମଧେ ଶ୍ରବଣ କଲି ତ ପ୍ରେମରେ ହୋଇ ଘାରି ।
ଏବେ କେତେ ପୁଣି କିସ ମନେ ଭାବ ମୋତେ ନିବାରି
କାମଦ୍ୱାରା ବ୍ୟଥିତ ନ ହୁଏ କେହି ବା ଦେହଧାରୀ । ୩୩ ।

ରାମ—(ସଲଜ୍ଜେ—ସ୍ୱଗତ)
କଣ ! ମଦୀୟ ଚପଳତାକୁ ଏ କପିଳ ପ୍ରତିପନ୍ନ କରି ପାରିଲେ ! ରେ ଦଗ୍ଧ ହୃଦୟ ! କାହିଁକି ଏପରି ହେଉ-ଅଛୁ ?

---

* ଏବ ଚତୁଷ୍ଛେଦ ସ୍ରଦ ବୃତ୍ତ ।

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଯେ ବାଳା ଭଗବନ୍ତଭୋଜର ମହାମାତ୍ୟ ପରାମ୍ଭେ ଥରେ
ମୋ ନେତ୍ର ଶ୍ରୁତିରେ ନୁହେ ଉପଗତା ସ୍ୱବେଶରେ ଜାଗରେ।
ଚିନ୍ତା ଯୋଗୁଁ ତଥାପି ଏପରି ଦଶା ପାଏ ସଦା, ଲ୍ଲବଣ
ଅନଦ୍ଭାବିତ ଶୋର୍କ କୌତୁକ ଭୟ ବ୍ରୀଡ଼ା ଲଭେ ମୋ ମନ ॥

(ପ୍ରକାଶତଃ) ସଖେ ! ତୁମ୍ଭର ଅଜଣା ତ କିଛି ନାହିଁ ।

କିନ୍ତୁ ସେହି ସୁଦକ୍ଷ ସୁଲକ୍ଷ ନୁହେ; ଅତଏବ ପ୍ରତିଷେଧ କଲୁଁ ।

କରାଳ—(ସ୍ୱଗତ) ସମ୍ପ୍ରତି ବନ୍ଧୁଯତ୍ନତଃ ସୀତା ପ୍ରତି ଏହାର ଅନୁରାଗକୁ ଦୃଢ଼ମୂଳ କଲି । (ପ୍ରକାଶତଃ) ତୁମ୍ଭର କୌଣସି ଚିନ୍ତା ନାହିଁ । ସେହି ଘଟନା ନିମିତ୍ତ କୌଶିକ ମହର୍ଷି ଯଥୋଚିତ ପ୍ରଯତ୍ନ କରୁଅଛନ୍ତି ।

ରାମ—(ସ୍ୱଗତ) କଣ! ପିଙ୍ଗଳ ଅସମ୍ଭବ କଥା କହୁଅଛି କିପରି ? (ପ୍ରକାଶତଃ) ତାହା ତୁମର ଅବଗତ ହେଲା କିପରି ?

କରାଳ—( ସ୍ୱଗତ ) ଏ କଥା କଣ ଏ ଜାଣି ନାହିଁ ? (ପ୍ରକାଶତଃ) ଏ ସବୁ କାଶ୍ୟପଙ୍କ ମୁଖରୁ ମୁଁ ଶୁଣିଅଛି ।

ନେପଥ୍ୟରେ—

ସଖି ! ମୃଣାଳଗୁଚ୍ଛ ଆଣିଦିଅ ।

କରାଳ—(ସ୍ୱଗତ) ଏହା କଣ ମାଗଧର ମାୟାପ୍ରୟୋଗର ଅନ୍ତର୍ଗତ କି ?

( ତଦନନ୍ତର ମାୟାଛଦ୍ମବେଶଧାରୀ ମାରୀଚର ପ୍ରବେଶ । )

ମାରୀଚ—

ସ୍ରଗ୍ଧରା ବୃତ୍ତ ।

ସୀତା ଯେମନ୍ତ ତାହା ପରିଚରଜନ ଯେମନ୍ତ ଦୁଃଖାଭିତପ୍ତ
ମାୟା କାର୍ଯ୍ୟ ପ୍ରସାରେ ବରଜନ ପୁଣି ଯେପ୍ରାୟେ ଯାଉ ନ୍ତ ସୁତ୍ୟ ।
କରୁ କ୍ଷୌଣୀତନୂଜା ପିତୃବଧ ଛଳରେ କଲ୍ପି ବା ବହ୍ନିବାସ
ପ୍ରତ୍ୟକ୍ଷେ ନର୍ବିବଲେ କଳପିବ ପୁଣି ସେ ରାମବହ୍ନି ପ୍ରବେଶ ।୬୫।

ଅତଏବ ସମ୍ପ୍ରତି ତାଟକାନନ୍ଦନର ପ୍ରତୀକାର ଅଥଚ ମହାରାଜ ରାବଣଙ୍କ ମନୋରଥର ସଫଳତା ନର୍ବିଘ୍ନିତ ପ୍ରାୟେ ଦେଖିଲି । (ଚତୁର୍ଦ୍ଦିଗରେ ଦୃଷ୍ଟି ନିକ୍ଷେପି) ମାୟାପ୍ରୟୋଗବଶତଃ ଧୃତପିଙ୍ଗଳବେଶ କପାଳଧାରୀ ମୀତ ରାମଚନ୍ଦ୍ର ଏହି କେଶର ବୃକ୍ଷମୂଳରେ ଉପବିଷ୍ଟ ଥିଲା ପରି ଦିଶୁଅଛି ।

ରାମ— ସଖେ ! କାଶ୍ୟପ ଆପଣେ ମୋତେ କହୁଥିଲେ କି "ଯଜ୍ଞ ନିମିତ୍ତ ତୁମ୍ଭଙ୍କୁ ନିମନ୍ତ୍ରଣ କରିବାପାଇଁ ମହର୍ଷି ବଶିଷ୍ଠ ଆସିଅଛନ୍ତି ।"

ମାରୀଚ—(ସାଶଙ୍କେ ସ୍ୱଗତ) ରାମ ଏହାକୁ କାଶ୍ୟପ ବୋଲି ଆମନ୍ତ୍ରଣ କରୁଅଛି । ଏ କିଏ ସତେ କାଶ୍ୟପ କି ? ତାହାହେଲେ ପିଙ୍ଗଳର ବେଶ ଧାରଣରେ ଏହାର ପ୍ରୟୋଜନ କିଣ ? ଅଚ୍ଛା ତେବେ ଏହି ପରିଦୃଶ୍ୟମାନ କଦଳୀକାନନରେ ଲୁକ୍କାୟିତ ରହି ସବୁ ବୁଝି ନେବି ।

କପିଳ—(ସ୍ୱଗତ) ଏ ନିଶ୍ଚୟତଃ ଜାଣିଅଛି କି, ଋଷ୍ୟାମିଙ୍କ କେବଳ ଯଜ୍ଞ ନିମନ୍ତେ ନିମନ୍ତ୍ରଣ କରିବାକୁ ଆସିଅଛି । (ପ୍ରକାଶତଃ) ଏପରି କହନ୍ତୁ ନା । ଏ ସବୁ ବଧୋମିନଙ୍କର କପଟ ଚତୁରି—

ପୁନରପି ନେପଥ୍ୟରେ—

ସଖି ! ହେଉଛି ମୃଣାଳଗୁଚ୍ଛ ଏ ଅଣିଲି ।

ରାମ—ଏହାର ଦକ୍ଷିଣ ଦିଗରେ କେହି ଆଳାପ କରୁଥିବାର ଶୁଣାଯାଏ ।

କପିଳ—( ସର୍ବତ୍ର ଦୃଷ୍ଟି ନିକ୍ଷେପି ସ୍ୱଗତ) କାଶ୍ୟପବେଶଧାରୀ ମାରୀଚ ଅଦ୍ୟାପି ଦିଶୁ ନାହିଁ । ବୋଧହୁଏ ଏହା ମାୟା ପ୍ରୟୋଗ ନୁହେ । ( ପ୍ରକାଶତଃ ) ବନସ୍ଥଳରେ ବନଦେବତାମାନେ ବିହାର କରୁଥିବେ ।

ମାରୀଚ—ଜଣାଗଲା, ଏ ନିଶ୍ଚେ କାଶ୍ୟପ କେବଳ, ଏ ଯଦି ମଦୀୟ ମାୟାନୁବେତ୍ତା କପିଳ, ତାହାହେଲେ "ଏମାନେ ସୀତାର ପରିଜନ" ଏପରି ସୂଚନା କରିଥାଆନ୍ତା । (ବିଚାରି କରି) ତେବେ କପିଳ କେଉଁଆଡ଼େ ଗଲା ? ତାହାକୁ ସ୍ମରଣ କରି ହୃଦୟ ସନ୍ତପ୍ତ ହେଉଅଛି । ଅଥବା—

ଆର୍ଯ୍ୟା ବୃତ୍ତ ।

ମାୟାପଙ୍କଳବେଣୀ କପିଳ କରକୁ କୌଣି କଅଦେଶେ
ରମାନୁଜ ନାଶ ହେଲା ନିଃସହାୟ ଦେଖି ବନଦେଶେ । ୩୨ ।

ଅଚ୍ଛା ହେଉ, ମୁଁ ମାୟାବଳରେ ରାମ ଓ କାଶ୍ୟପଙ୍କୁ ନାଶ କରିବ । ତେବେ ସୁବାହୁର ପକ୍ଷ କପିଳର ମଧ୍ୟ ଶବ୍ଦୋଦ୍ଧାର ହେବ ।

ରାମ—ସଖେ ! ଯିବା ଚାଲ । ଏହି ନିକୁଞ୍ଜ ଭିତରେ ବଟପାଦପରାଜିରେ ଲୁଚି ରହି ଦେଖିବା । (ଧନୁର୍ବାଣ ହସ୍ତରେ ଉଠିବା)

କପିଳ—ହେଉ ତେବେ ତାହାହିଁ କରିବା । (ରାମଙ୍କ ଅନୁଗମନ କରିବା )

ମାରୀଚ—

ମାଲିନୀ ବୃତ୍ତ ।

ରଘୁକୁଳବର କେହ୍ନେ ଧୀର ସୌନ୍ଦର୍ଯ୍ୟ-ସାର
ଧରଣ ଉଭୟ ହସ୍ତେ ଦୀର୍ଘ କୋଦଣ୍ଡ ଶର ।
ଅମିତ-ଭୟଦ ଅହା ! ଦନ୍ତ-କେଦାଭିବୃଷ୍ଟି,
ଗରଳ ବମିଣ ଯେହ୍ନେ ନାଗପୋତାଙ୍ଗଯଷ୍ଟି । ୬୨ ।

ରାମ—(ପୁରୋଭାଗକୁ ଚାହିଁ ସାଶ୍ଚର୍ଯ୍ୟ)

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ମଧ୍ୟେ ଶୁଷ୍କ ଉଶୀର ଚନ୍ଦନରସ-ପ୍ରଭ୍ରଷ୍ଟ ଧୂଳିଚୟ,
ଶେଷେ କଜ୍ଜଳଯୁକ୍ତ ନେତ୍ରଗଳଜ୍ଜାଷ୍ଟାମ୍ବୁବିନ୍ଦୂଚ୍ଚୟ ।
ପାର୍ଶ୍ୱେ ଶୁଷ୍କ ମୃଣାଳହାର ବଳୟଶ୍ରେଣୀ ଦିଶେ କାତର ।
କେଉଁ ସ୍ତ୍ରୀର ଶରୀରମର୍ଦ୍ଦିତ ଅଛେ ଏହି ପ୍ରବାଳାସ୍ତର ।୬୩।

କମଳ— ବୋଧହୁଏ କି ଆମ୍ଭମାନଙ୍କର ଆଳାପରୁ ଲଜ୍ଜିତା କେହି ଜଣେ ବରବୋଳୁଣିତା ଏହି ଶଯ୍ୟା ତ୍ୟାଗ କରି ବାହାରି ଯାଇଅଛି ।

ପୁନରପି ନେପଥ୍ୟରେ—

ସଖି ! ଏହି ଦୁଃଖିନୀର ସନ୍ତାପ ସମଧିକ ହୋଇଅଛି । ଏହାର ବକ୍ଷଃସ୍ଥଳରେ ଏହି ମୃଦୁଳ ମୃଣାଳଗୁଡିକୁ ଅର୍ପଣ କର ।

ରାମ—ସଖେ ତୁମ୍ଭ ବଚନର ସଙ୍ଗତ ବୋଧ ହୁଏ ।

କମଳ—(ସ୍ୱଗତ) ମାରୀଚ ଅବା କେଉଁଠାରେ ନିଗୂଢ଼ ରହି ଏପରି ମାୟା ବିସ୍ତାର କରୁଅଛି; ଅଥବା ଏସବୁ ଯଥାର୍ଥ ? ଅଚ୍ଛା ହେଉ ଦେଖାଯିବ। (ପ୍ରକାଶତଃ) ସଖେ ! ଆହୁରି ଟିକିଏ ଆଗକୁ ଯିବା ଚାଲନ୍ତୁ ।

ରାମ—ହେଉ ତେବେ ଚାଲ । (କେତେକ ପାଦ ଯାଇ) ଏହି ନବକିରଣ୍ଡଚେଳା ଅବଲୋକି କିଏ ? ପଲ୍ଲବିତ ଅଶୋକଲତା ତୁଲ୍ୟ ରମଣୀୟା ଦିଶୁଅଛି କି କାହିଁକି । ମତ୍ତଗଜର ସଦ୍ୟଃ ଛିନ୍ନ ଦନ୍ତପ୍ରଭମ ରୁଚର ମୃଣାଳନାଳ-ଗୁଡ଼ିଏ ଧରି ଯାଉଅଛି ?

କମଳ—(ସଶୋକେ—ସ୍ୱଗତ)

ଇନ୍ଦ୍ରବଜ୍ରା ବୃତ୍ତ ।

ମାୟାବଳେ କାଶ୍ୟପରୂପ ସେହି
ମାରୀଚ କୁତ୍ରାପି ଦିଶେ ତ ନାହିଁ ।

ଗାଧେୟସ୍ୟ ବା ଜାଣିଣ ଏହି କାଣ୍ଡ
ରାମାନୁଜେ ଧ୍ୱସ୍ତ କଲା ପ୍ରଚଣ୍ଡ । ୩୯ ।

ସେ ଯାହାହେଉ, ବର୍ତ୍ତମାନ ଦୁଃଖରେ ବସି ରହିବାର ସମୟ ନୁହେ । (ପ୍ରକାଶତଃ) ସଖେ ! ଆମ୍ଭମାନଙ୍କର ଏହି ପରସ୍ତ୍ରୀ ଦର୍ଶନରୁ କି ପ୍ରୟୋଜନ ? ପରିଜନ-ମାନଙ୍କୁ ଅନ୍ୱେଷିବା ନିମନ୍ତେ ଅନ୍ୟ ଦିଗକୁ ଯିବା ଚାଲନ୍ତୁ ।

ମାରୀଚ—(ସଶୋକେ) ସତ୍ୟ ଏ କେବଳ କାଶ୍ୟପ ଅଟେ । ଅତଏବ ରାମ ଏଥିରେ ଯେପରି ବିମୁଖ ହୁଏ, ତାହାହିଁ କରୁଅଛି । ତଥାପି ଏହାର ମନୋଗତ କଥା ଜାଣିବା ଉଚିତ । (ଧ୍ୟାନାଭିନୟଂ କରିବା)

ରାମ—ସଖେ ! ଦେଖ ଦେଖ—

ମନ୍ଦାକ୍ରାନ୍ତା ବୃତ୍ତ ।

ଏହି କ୍ରୀଡ଼ା ଶିଖରିକଟକେ ସ୍ୱର୍ଣ୍ଣ ରମ୍ୟା ପ୍ରକାଶ,
ଏହା ପ୍ରାନ୍ତେ ବହଇ ତଟିନୀ ଫୁଲ୍ଲପଦ୍ମାବତଂସ ।
ପାଖେ ପାଖେ ପ୍ରକଟିତରଚିତ-ଶ୍ୟାମମାକନ୍ଦକୁଞ୍ଜ,
ମଧ୍ୟେ ମଧ୍ୟେ କରଇ ମଧୁରାରବ ଷଟ୍‌ପାଦପୁଞ୍ଜ । ୪୦ ।

ବୋଧହୁଏ ଏହିଠାରୁ କେବଳ ସେହି ସୁନ୍ଦରୀ ମୃଣାଳ ଅଣୁଅଛି ।

କପିଳ—ଏହି ଘଟନାଟି ବଡ଼ ମନୋହର ହୋଇଅଛି । ଅବଶ୍ୟ ଦେଖିବା ଉଚିତ । (ପୁନରପି ନିକଟକୁ ଯାଇ ଦେଖିବା)

ମାଗଧ—(ସଗର୍ବେ) ଅରେ ରେ କାଶ୍ୟପ ! ଆଜ ତୁ ମାଗଧ-
ହସ୍ତରୁ ନିଷ୍ଟେ ନିହତ ହେବୁ ।

( ପୁନରପି ନେପଥ୍ୟରେ )

ସଖି ! ମୃଣାଳ ଅର୍ପଣ କଲି । ତୁ ଏବେ ଉଶୀର ଆଉ
ଚନ୍ଦନରସ ସେଚନ କର ।

କଲ୍ୟ—(ସ୍ୱଗତ) ଏହା ତ ବାଲିକାମାନଙ୍କର ଆଳାପ ପରି
ଶୁଣାଯାଏ ! ସମୀପକୁ ଯାଇ ଦେଖିବି । ଅଥବା ଦେଖିବାର
ପ୍ରୟୋଜନ ନାହିଁ ।

ରଥୋଦ୍ଧତା ବୃତ୍ତ ।

ବୃଷପଙ୍କର କୁଳକ୍ରମାଗତ—
ଦମ୍ଭକାର୍ଯ୍ୟ-ଗୁରୁ ତାଡ଼କାସୁତ
ହୋଇବାରୁ ହତ ଖିନ୍ନ-ମାନସ
ହେଲି ଆବର ବନଷ୍ଟସାହସ । ୪୧ ।

(ପ୍ରକାଶତଃ) ସଖେ ! ଏହି ମଧୁର ଆଳାପ କାହାର ?
ଦେଖନ୍ତୁ ଭଲା ।

ରାମ—( ପୁରୋଭାଗକୁ ଯାଇ ଦେଖି ) ସଖେ ପିଙ୍ଗଳ !
ସମାନରୂପସଙ୍ଗତିଶାଳିନୀ ଏହି କନ୍ୟାମାନେ କିଏ ?

(ଅନନ୍ତର ପ୍ରବାଳତଳ୍ପଶୟନା ସୀତା ଓ ସଖୀମାନଙ୍କର ପ୍ରବେଶ)

ପ୍ରଥମା—ସଖି ! ନଳିନୀଦଳତାଳବୃନ୍ତରେ ବାୟୁଦେଇ ବନ୍ଧୁର
ବନ୍ଧୁର ବକ୍ଷଃସ୍ଥଳରେ ଚନ୍ଦନ ଲେପନ କର ।

କପିଳ—(ସ୍ୱଗତ) ଏହି ଅସାମାନ୍ୟ ରୂପଲାବଣ୍ୟବତୀ ସୁନ୍ଦରୀ କିଏ ? ସୀତାରୂପରେ ମନ୍ମଥ ବାଧା ଅନୁଭବ କରୁଅଛି । ମୁଁ ମନେ କରେଁ, ଏ ସବୁ ମାୟାବୀଙ୍କ ମାୟାପ୍ରୟୋଗ ହେବ । (ପ୍ରକାଶତଃ)

ବସନ୍ତତିଳକ ବୃତ୍ତ ।

ଏ ବାଳିକାଗଣ ଅଟନ୍ତି ସୁରାଙ୍ଗନା ବା ।
ଅପେତନାକୃତି ଭୁଜଙ୍ଗ-ନିତମ୍ବିନୀ ବା ।
କନ୍ଦର୍ପ ଭୂପତିର ବା ଜୟବୈଜୟନ୍ତୀ ।
ଲୀଳାଗୃହୀତ-ଯୁବତୀତନୁ ଅଦରନ୍ତି । ୪୨ ।

ରାମ—(ପାର୍ଶ୍ୱର୍ତ୍ତେ) ଦେଖ ଦେଖ ଏମାନଙ୍କ ମଧ୍ୟରେ ଏହି ମନୋମୋହକାରିଣୀ ବାଳିକା—

ମନ୍ଦାକ୍ରାନ୍ତା ବୃତ୍ତ ।

ଯହିଁ ଶଙ୍କା ଗଗନ ପବନେ ମେଘୁ ହେଲା ବିଭକ୍ତା ।
ସୋଏ କମ୍ପା କମଳତଳପେ ହୋଇ ସେ ଦେହଯୁକ୍ତା ।

ଅଥବା—

ଶମ୍ଭୁ କ୍ରୋଧେ ଦହିବବଶରେ ଦଗ୍ଧ ହେବାରୁ ମାର
ତାହା କାନ୍ତା ବିରହବିକଳା ଦୁଃଖ ପାଏ ଅପାର । ୪୩ ।

କପିଳ—ସଖେ ! ଏ ସବୁ ମୁଁ ଦେଖୁଅଛି ।

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଗଣ୍ଡେ ହେଁ କାତର ଦୃଷ୍ଟିରେ ମଳିନତା ଦେହେ ବଢ଼େ କ୍ଷୀଣତା,
ଚଣ୍ଡ୍ରଦ୍ୱନ୍ଦ ତଟେ ମୃଣାଳକଳିକା ପ୍ରାୟେ ବଢ଼େ ପାଣ୍ଡୁତା ।
ତା ବକ୍ଷୋଜତଟୀ ନିତାନ୍ତ ଶିଥିଳା ଅଲୋକ ଏ ଯାବତ
'ପାଏ ମନ୍ମଥ କଷ୍ଟ' ଏପରି ମନେ ବିଶ୍ୱାସ ଜନ୍ମେ ମିତ ।୪୪।

ମାଧବ—(ସହର୍ଷେ) ବର୍ତ୍ତମାନ ଏହି ଋଷିକିଶୋରୀ କାଶ୍ୟପ ସହିତ ମାଧବର ମାଧ୍ୱୀବାଗୁରିରେ ପଡ଼ିତ ହେଲି ।

ଅନୁଷ୍ଟୁପ୍ ବୃତ୍ତ ।

ଲକ୍ଷ୍ମଣେ ବଗତପ୍ରାଣ ସୁବାହୁର କରାଳର
ପ୍ରତୀକାର ନିମନ୍ତେ ମୁଁ ଏ ଦୁହିଙ୍କି ବନାଶିବ ।୪୫।

(ପୁନରପି ଧ୍ୟାନାଭିନୟ କରିବା)

ରାମ—ଏ କି ଆଶ୍ଚର୍ଯ୍ୟ ଚର୍ଯ୍ୟା ! ଏ ସବୁ ତ ଭିନ୍ନପ୍ରକାର ହୋଇ ଯାଇଅଛି !

ବସନ୍ତତିଳକ ବୃତ୍ତ ।

ଇଚ୍ଛା ନୁହେ ସ୍ଥିତଦଧି ପ୍ରତି ସାରକାର ।
ଜାଲମ୍ବ ବୀଜକୁ ନ ଖାଅଇ କେଳିକୀର ।
ହଂସୀ ମୃଣାଳ-କବଳେ ମନ ଦେଉ ନାହିଁ ।
ଏହାର ଦୁଃଖକୁ ବିଲୋକଣ ଦୁଃଖ ପାଇ ।୪୬।

ଲକ୍ଷ୍ମଣ—(ସ୍ୱଗତ) ବର୍ତ୍ତମାନ ଠିକ୍ ଜଣାଗଲା । ଏହା ମାଧବର

ମାୟାପ୍ରୟୋଗ କେବଳ । (ପ୍ରକାଶତଃ) ସଖେ ! ମହର୍ଷି
ବଶିଷ୍ଠଙ୍କର ଅଶ୍ରମ ଏଠାରୁ ନିକଟବର୍ତ୍ତୀ ଥିବାରୁ,
ମୁଁ ମନେ କରେଁ କି, ଏହି ବାଳିକା ଜାନକୀ ହେବ ।

ରାମ—(ସ୍ୱଗତ) ଏହା ହୋଇ ପାରେ, ତାହାର ଅବସ୍ଥା ମଧ୍ୟ
ଏତାଦୃଶ ଥିବାର କାଶ୍ୟପ କହିଥିଲେ । (ପ୍ରକାଶତଃ)
ଏହା ତ ଅସମ୍ଭବ କଥା । ଏପରି କହିବାରେ ପ୍ରୟୋଜନ
କଣ ?

(କାଶ୍ୟପଙ୍କର ପ୍ରବେଶ)

କାଶ୍ୟପ—

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଶ୍ରୀରାମଙ୍କ ଉଦାର ସୁସ୍ଥିର ମହାଗମ୍ଭୀର ହୃଚ୍ଚେଷ୍ଟିତ
ହେଲା ପିଙ୍ଗଳ କର୍ତ୍ତୃକ ଷିତସୂତାଟମ୍ବହେ ସମାବେଶିତ ।
ମଧ୍ୟସ୍ଥ କ୍ରମରେ ସ୍ୱୟଂ ରହିଣ ସେ ଗାଧେୟ ଅପ୍ରାକୃତ
ଯେ ଅଦେଶ କଲେ ପ୍ରଯତ୍ନବଳରେ ହେଲା ତ ତା ସାଧିତ ॥ ୪୭

(ବହିର କରି) ମୃଗୟାପ୍ରବୃତ୍ତ ରାମଚନ୍ଦ୍ର କେଉଁଠି କଣ
ଅବା କରୁଅଛନ୍ତି, ଜଣାଗଲା ନାହିଁ । ପିଙ୍ଗଳ ମଧ୍ୟ ମୋ
ପାଖରୁ ବାହାରି ଅସି ତାହାଙ୍କୁ ଖୋଜି ଖୋଜି
କେଉଁଠାରେ ରହିଗଲେ । ଅଚ୍ଛା ହେଉ, ବର୍ତ୍ତମାନ ମୁଁ
ଏହି ମାକନ୍ଦବନରେ ପ୍ରବେଶ କରି ଅନ୍ୱେଷଣ କରିବ ।
(ଗୃହଯିବା)

କପିଳ—(କାଶ୍ୟପଙ୍କୁ ଦେଖି ସହର୍ଷେ ସ୍ୱଗତ) ରାମର ମାୟିକ
ଜାନକୀରୂପ ପ୍ରଦର୍ଶକ କାଶ୍ୟପବେଶଧାରୀ ମାରୀଚ

ହୋଇଛି ଆସୁଅଛୁ । (ପ୍ରକାଶରେ) ସଖେ ! ମୋର କଥା ଅସମ୍ଭବ କପର ? ସୀତାର ସମଗ୍ର ବୃତ୍ତାନ୍ତବେଦୀ କାଶ୍ୟପ ଏଇ ତ ଦେଖନ୍ତୁ ଏହୁଆଡ଼େ ଆସୁଅଛନ୍ତି । ମୁଁ ଯାଉଛୁ, ତାହାଙ୍କୁ ଆପଣଙ୍କ ନିକଟକୁ ଶୀଘ୍ର ପେଶ ଅଛି । (ଏହା କହ ନଷ୍କ୍ରାନ୍ତ)

ରାମ—(ଦୀର୍ଘ ନିଃଶ୍ୱାସ ତ୍ୟାଗପୂର୍ବକ)

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଏକାନ୍ତ ସ୍ମରବାଣ-ପୀଡ଼ନପର୍ବ ଏହାକୁ ଅଲୋକଣ
ବିଶ୍ୱାମିତ୍ର-ସୁଛନ କାଶ୍ୟପମତେ ଏ ଜାନକୀ ବୋଲଣ ।
ନିଃସନ୍ଦେହ ମନେ ପ୍ରକାଶ କରବେ; କମ୍ବା ଅବିଶ୍ୱାସକୁ
ଏହୁପ୍ରାୟ ଚର୍ଚ୍ଚର ଦୁଃଖିତ ହୁଏ ସନ୍ଦେହ ମୋ କ୍ଷେମକୁ ।୪୮।

ମାରୀଚ—ପିଙ୍ଗଳବେଶଧାରୀ କାଶ୍ୟପ ରାମକୁ ତ୍ୟାଗ କର ଦୂରକୁ ବାହାର ଯାଇଅଛୁ । ସମ୍ପ୍ରତି ଏହ ଅବସରରେ ମୁଁ ତଦୀୟ ରୂପ ଧାରଣପୂର୍ବକ ସ୍ୱୀୟ ସଙ୍କଳ୍ପିତ କାର୍ଯ୍ୟକୁ କ୍ରମରେ ସୁସାଧିତ କରନେବ । (ଧ୍ୟାନାଭିନୟ କରିବା)

ସୀତା—ସଖି !

ଆର୍ଯ୍ୟାଗୀତି ବୃତ୍ତ ।

ଏହ ଶିଶିରୋପଚାରରେ ମଦୀୟ ସନ୍ତାପ ନୋହିଲା ଦୂର ।
କପର ସୁଖିତା ଦିବସରେ ହେବ ଉତ୍ପଳିନୀ ପାଇ ଘନନୀର ।୪୯

(ଏହା କହ ରୋଦନ)

ରାମ—ଅହୋ ! ଏ କିଏ !

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଏ ବାଳାର ସୁଧାପହୋଦର ମୃଦୁ ବ୍ୟାହାର ହୋଇ ଶ୍ରୁତ,
କର୍ଣ୍ଣାନ୍ତର୍ଗତ କାକଳୀ ପର ମନେ ବଶ୍ୟସ୍ତ ହେଲା ଯତ ।
ଅତ୍ୟନ୍ତାସବ-ପାନଜାତ-ମଦରେ ଲୋକେ ଯଥା ମୋହିତ ।
ଅହାହା କରିଲା ମଦୀୟ ହୃଦୟ କ୍ଷିପ୍ରେ ତଥା ଘୂର୍ଣ୍ଣିତ । ୪୦ ।

ତଦନନ୍ତର କାଶ୍ୟପବେଶଧାରୀ ମାରୀଚର ପ୍ରବେଶ ।

ମାରୀଚ—(ସ୍ୱଗତ)
ପିଙ୍ଗଳବେଶଧାରୀ କାଶ୍ୟପ ବର୍ତ୍ତମାନ ବାହାର ଯାଇ-
ଅଛି । ମୁଁ ରାମର ନିକଟକୁ ଯାଇ ତାହାକୁ ସ୍ୱାଗତ
କରିବ । (ଏହି ବର୍ତ୍ତରରେ ନିକଟକୁ ଯିବା)

ରାମ—ଅହୋ ଏହି ବାଳିକାର ବଚନ ରୂପର ଅନୁଗୁଣ, ତଥାତ
ରୂପଶ୍ରୀ ମଧ୍ୟ ବାଣୀର ଅନୁଗୁଣ ହୋଇଅଛି ।

ସ୍ରଗ୍ଧରା ବୃତ୍ତ ।

ଧିକ୍କାରେ ଭୃଙ୍ଗମାଳା ସୁରଚିର ଅଳକଶ୍ରେଣି ଏଣୀଦୃଶାର ।
ଧିକ୍କାରେ ମାରଶସ୍ତ୍ରେ ତରଳିତ ନୟନଦ୍ୱନ୍ଦ ସୌନ୍ଦର୍ଯ୍ୟସାର ।
ବକ୍ଷୋଜଦ୍ୱନ୍ଦ ହୈମାମ୍ବୁଜ ମୁକୁଳ ଜଣେ ପ୍ରୀତି ଜନ୍ମାଇବାକୁ ।
ମାୟାରେ ରଚିଲା ସେ କୁସୁମଶର ଜଗନ୍ମୋହନୀ ବାଳିକାକୁ ।

ମାରୀଚ—(ହସି ସ୍ୱଗତ) ମାରୀଚ ରଚିଲା ବୋଲି କହିବା
ଉଚିତ ।

ରାମ—( ଗୃହଁ ) କାଶ୍ୟପ ଆସୁଅଛନ୍ତି । ତାହାଙ୍କୁ ଦେଖି ମୁଁ ଲଜ୍ଜିତହୃଦୟ ହୁଏ । (ମୁଖ ନୁଆଁଇ ବସିବା )

ମାଣ୍ଡବ—(ସ୍ୱଗତ) ହେଉଛି ଏଇ ତ ସେହୁ ତାଟକାନିଧନ-ମହାପାପୀ କ୍ଷତ୍ରିୟପୋତ ।

ସ୍ରଗ୍ଧରା ବୃତ୍ତ ।

ଚନ୍ଦ୍ରେ ତା ଗର୍ବ ଗୂଢ଼େ ରଖିଛୁ ନିଜ ମହା-
ଧୈର୍ଯ୍ୟ ଗାମ୍ଭୀର୍ଯ୍ୟ ଯୋଗେ,
ଲୋକେ ଦୁର୍ଦ୍ଧର୍ଷ ଖ୍ରାହ୍ମୟ ରସ ସତନୁ
ହୋଇଲା ପ୍ରାୟ ଲଗେ ।
ସୌଭାଗ୍ୟାଦ୍ଭେଗୁ ଏବେ ଅମୃତରସକୁ ମୋ
ନେତ୍ରଯୁଗ୍ମେ ନଦେଖ
ଯେଉଁ ସୀପାଛି ଚେଷ୍ଟେ ବିକଳ କରଇ ସ-
ସ୍ୟନ୍ଦତାକ୍ଷଙ୍କୁ ମୂର୍ତ୍ତି । ୪୬ ।

ମୁଁ ପୁଣି କେବେ ଏହାକୁ ଅଗ୍ନିରେ ପ୍ରବିଷ୍ଟ କରି ପାରିବି । (ସମୀପକୁ ଯାଇ ପ୍ରକାଶତଃ) କୁମାର ରାମଭଦ୍ର ବନ୍ଦ୍ୟ ହୁଅ ।

ରାମ—କପରି ! ଆପଣ କାଶ୍ୟପ ଅପିବା ହେଲେ ।

ମାଣ୍ଡବ—(ସଶଙ୍କେ ସ୍ୱଗତ) ଏ କଣ ମୋର ଶାଠ୍ୟ ଜାଣି ପାରିଅଛି ? (ବିଚାରି) ନା, ତାହା କେବେ ହୋଇ ନ ପାରେ । କିନ୍ତୁ ମୁଁ ମନେ କରେଁ, ମୋତେ ପ୍ରକୃତ କାଶ୍ୟପ ଜାଣି ପିଙ୍ଗଳରୂପ ତ୍ୟାଗପୂର୍ବକ ନିଜ ରୂପ ଧାରଣ

କହିବାର ପ୍ରୟୋଜନ ପଡ଼ୁଅଛି । ହେଉ ତେବେ—
(ପ୍ରକାଶତଃ) ମୋତେ ମହର୍ଷିଙ୍କର ଅକୈତବ ଶିଷ୍ୟ
ମନେ କରନ୍ତୁ ।

ରାମ—(ସ୍ୱଗତ) ପିଙ୍ଗଳ ଏହାଙ୍କୁ ନଷ୍ଟେ ଦେଖିଅଛନ୍ତି । ଅତଏବ
ଏହି ବଚନଦ୍ୱାରା ପୁରଃପ୍ରଦର୍ଶିତ ଏହି ବାଳକା ଯଥାର୍ଥ
ଜାନକୀ ବୋଲି ନର୍ଦ୍ଧାରିତ କରୁଅଛନ୍ତି । (ପ୍ରକାଶତଃ)
ଏ କଣ ସତେ ସୀତା ଅଟନ୍ତି ?

ମାରୀଚ—(ସ୍ୱଗତ) ଯେ କି ପିଙ୍ଗଳବେଶ ଧାରଣ କରିଥିଲି,
ସେ କାଶ୍ୟପ ନୁହେ । କାରଣ ତୁମ୍ଭେ ଯଦି ଅକୈତବ,
ତେବେ ପିଙ୍ଗଳବେଶ କାହିଁକି ଧରିଥିଲ ? ଏହା
ମୋତେ ଏ ପଚ୍ଚର ନାହିଁ । ( ପ୍ରକାଶତଃ) ହଁ, ଏ ସେହି
ସୀତା କେବଳ ।

ରାମ—( ସହର୍ଷେ ସ୍ୱଗତ ) ରେ ହୃଦୟ ! ତୁ ଧନ୍ୟ ଅଟୁ ।
(ପ୍ରକାଶତଃ) ସଖେ ! ଏ ସମ୍ବନ୍ଧରେ ପିଙ୍ଗଳ ସତ୍ୟ
କହୁଅଛନ୍ତି ।

ମାରୀଚ—(ସ୍ୱଗତ) ସେ ଯଥାର୍ଥତଃ ପିଙ୍ଗଳ କେବଳ, କରାଳ
ଲକ୍ଷ୍ମଣ କର୍ତ୍ତୃକ ନଷ୍ଟେ ନହତ ହୋଇଅଛି । ବର୍ତ୍ତମାନ
ମୁଁ କଣ କରିବ ? (ପ୍ରକାଶତଃ) ପିଙ୍ଗଳ କେଉଁଆଡ଼େ
ଗଲେ ?

ରାମ—(ସ୍ୱଗତ) ଏ ତାହାଙ୍କ ସହିତ କଥା ହୋଇ ଜାହାନ୍ତି,
କମ୍ବା ଦେଖା ସୁଦ୍ଧା କରି ନାହାନ୍ତି । ଏ କି ବଚନ !
( ପ୍ରକାଶତଃ ) ତୁମ୍ଭଙ୍କୁ ଏଆଡ଼କୁ ଆସୁଥିବାର ଦେଖି

ସଙ୍ଗେ ଅଣିବ ବୋଲି କହି ଯାଇଅଛନ୍ତି । ସେ କଣ ଫେରି ପୂର୍ବ ପରି ବନଗଜଦ୍ୱାରା ଧୃତ ହେଲେ କି ?

ମାଣ୍ଡବ୍ୟ—( ସହର୍ଷେ ସ୍ୱଗତ ) କପିଳ କେବଳ ପିଙ୍ଗଳରୂପ ଧାରଣ କରିଥିଲି । ମୁଁ ଏହି ଅବସରରେ ଏପରି ଭ୍ରାନ୍ତ ହୋଇଅଛି । ( ପ୍ରକାଶତଃ ) ଏହି ମାକନ୍ଦବନରେ ତାହାର ପ୍ରସଙ୍ଗ କିଛି ନାହିଁ । (ଧ୍ୟାନାଭିନୟ କରିବା)

କାଶ୍ୟପ—(କିଞ୍ଚିତ୍ ଦୂରରୁ ପୁରୋଭାଗକୁ ଅବଲୋକନ କରି) ଅହୋ ଏ କଣ ! ସୀତା ଏହିଠାରେ ପ୍ରବାଳଶଯ୍ୟାରେ ଶୋଇଅଛି, ତାହାର ସଖୀମାନେ ନାନାବିଧ ଶୀତଳ-ଉପଚାରରେ କନ୍ଦର୍ପ ସନ୍ତାପ ନିବାରଣ କରୁଅଛନ୍ତି କିପରି ! ସୀତାଦେବୀ ତ ଏଠାରୁ ଅର୍ଦ୍ଧ ଯୋଜନରେ ବାଲ୍ମୀକିଙ୍କ ଆଶ୍ରମରେ ଅଛି, ତେବେ ଏ କିଏ ? ବୋଧହୁଏ ତଦୀୟ ତୁଲ୍ୟରୂପା କେହି ଜଣେ ଅନ୍ୟ ସ୍ତ୍ରୀ ହୋଇଥିବ । ( ଯେଉଁ ଦୃଶ୍ୟର ପଶ୍ଚାଦ୍‌ଭାଗକୁ ଚାହିଁ ) (ସଭୟେ) ହାୟ ହାୟ ! ଏ କି ଆଶ୍ଚର୍ଯ୍ୟର ବ୍ୟାପାର ! ଭଗବାନ୍ ଅଗ୍ନିଦେବ ଶୁଷ୍କକାଷ୍ଠନିଚୟରେ ଦେଦୀପ୍ୟମାନ ହୋଇ ଏହି ମହାଗର୍ତ୍ତ ମଧ୍ୟରେ ନିକଟସ୍ଥ ବିଶାଳ ଶିଳାର ଆବରଣରେ ତିରୋହିତ ଅଛନ୍ତି । ମନେ ହୁଏ, ଏହି ତରୁଣୀ ରମଣୀମଣି ଦୁଃସହ ବିରହସନ୍ତାପକୁ ସହ୍ୟ କରିବାକୁ ନ ପାରି ଏହି ଅନଳକୁ ସଞ୍ଚିତ କରିଅଛି । ଅଚ୍ଛା ହେଉ, ତେବେ ପିଙ୍ଗଳସମାଗମ ଅବା ରାମଦର୍ଶନ ପ୍ରାପ୍ତି ପର୍ଯ୍ୟନ୍ତ ଏହି ବୃକ୍ଷ ଅନ୍ତରାଳରେ ରହି ଦେଖିବି । (ତଥା ଚାହିଁ ବସିବା)

ତଦନନ୍ତର ପିଙ୍ଗଳ ପ୍ରବେଶ ।

ପିଙ୍ଗଳ—ବର୍ତ୍ତମାନ ମୃଗୟାପ୍ରବୃତ୍ତ ପ୍ରିୟସଖ ରାମଚନ୍ଦ୍ରଙ୍କୁ କେଉଁଠାରେ ଦେଖି ପାରିବ ? (ସବ୍ବତ ନିରେଖି ସହର୍ଷେ)

ସ୍ରଗ୍ଧରା ବୃତ୍ତ ।

ବାଣଶ୍ରେଣୀ ବଦଳିତତନୁ—ଶଲ୍ଲଭଲ୍ଲୂକ ନାଗ—
ବ୍ୟାଘ୍ରକ୍ରୋଡ଼ ପ୍ରଭୃତିରକତେ ହୋଇଲା ଜ୍ଞାତ ମାର୍ଗ ।
ଏ ମାର୍ଗେ ସେ ଗମନ କରିଲେ; ଅସି ବେଗେ ନିଶଙ୍କ
ଦେବେ ଏବେ ଦରଶନ ଲଭେଁ ଏ ସ୍ଥଳେ କାଶ୍ୟପଙ୍କ ।୫୭।

ବୟସ୍ୟ ରାମଭଦ୍ର ମଧ୍ୟ ଏହିଠାରେ ଅବସ୍ଥାନ କରୁଥିବେ; କାରଣ ବସନ୍ତ ବିନା ମନ୍ଦମାରୁତର ପ୍ରସରଣ ହୁଅଇ ନାହିଁ । ହେଉଛି ମଦୀୟ ଭାଗ୍ୟବଶରୁ କାଶ୍ୟପଙ୍କ ପାର୍ଶ୍ୱରେ—

ବସନ୍ତତିଲକ ବୃତ୍ତ ।

ଅଂସେ ନିବେଶି ଗୁରୁ ତୂରୁ କଳାପଭାର,
ହସ୍ତଦ୍ୱୟେ ବୃହତଚାପ ଅମୋଘ ଶର ।
ଦୂର୍ବାଦଳପ୍ରତିମକାନ୍ତି ବିଶାଳଭାଲ,
ଶ୍ରୀରାମଭଦ୍ର ବସିଛନ୍ତି ରସାଳମୂଳ ।

(ସମୀପକୁ ଯିବା)

ମାରୀଚ—(ଦେଖି ସ୍ୱଗତ) ହେଉଛି ପିଙ୍ଗଳବେଶଧାରୀ କରାଳ

ଅସୁଅଛି । (ପ୍ରକାଶତଃ) ବୟସ୍ୟ ! ଏଇ ଦେଖନ୍ତୁ ପିଙ୍ଗଳ ଆସୁଅଛନ୍ତି ।

ରାମ—(ଦେଖି) ସଖେ ପିଙ୍ଗଳ ! ମୁଁ ଆପଣଙ୍କୁ ସମ୍ଭାବିତାର୍ଥବାଦୀ ବୋଲି ବିଶ୍ୱାସ କରେଁ ।

ପିଙ୍ଗଳ—(ସ୍ୱଗତ) ଏ କଣ ! ବିନା ଅବସରରେ ବୟସ୍ୟ ମୋତେ ଏପରି କାହିଁକି କହୁଅଛନ୍ତି । (ପ୍ରକାଶତଃ) ବୟସ୍ୟ ! ଆପଣ ଯାହା କହିଲେ, ତାହାର ଅର୍ଥ ମୁଁ କିଛି ବୁଝି ପାରିଲି ନାହିଁ ।

ମାଣ୍ଡବ—(ପିଙ୍ଗଳକୁ ଆଲିଙ୍ଗନ କରି ରହସ୍ୟରେ) କପିଳ ! ଦୈବବଳରୁ ମୁଁ ତୋତେ ଜୀବିତ ଦେଖି ପାରିଲି, ଯେତେବେଳେ କାଶ୍ୟପ ପିଙ୍ଗଳବେଶ ଗ୍ରହଣ କରି-ଥିବାର ଶଙ୍କା ଜନ୍ମିଥିଲା, ସେତେବେଳେ ତୁ ଲକ୍ଷ୍ମଣର ଅମୋଘାସ୍ତ୍ରରେ ନିହତ ହୋଇଅଛୁ ବୋଲି ଦୁଃସହ ଶୋକାବେଗକୁ ଭୋଗ କରୁଥିଲି ।

ପିଙ୍ଗଳ—(ହସି ସ୍ୱଗତ) ଏ ତ ଆହୁରି ଅଦ୍ଭୁତ ବିଚାର । କାଶ୍ୟପ ମଧ୍ୟ କଣ ଅସମ୍ବଦ୍ଧ କଥାଗୁଡ଼ାଏ କହୁଅଛନ୍ତି !(ପ୍ରକାଶତଃ) ଆପଣ ଯାହା କହୁଅଛନ୍ତି, ତାହା ଆଉ ଥରେ କହନ୍ତୁ ତ ?

ମାଣ୍ଡବ—(ଭୟରେ ତୁନି ହେବା )

ରାମ—ସଖେ ପିଙ୍ଗଳ ! ମୁଁ ଏହି ରମଣୀର ଉଦ୍ଦେଶ୍ୟରେ କହୁ-ଅଛି । (ଏହା କହି ଭ୍ରୂସଙ୍କେତରେ ଦେଖାଇଦେବା )

ପିଙ୍ଗଳ—( ସ୍ୱଗତ ) ପକ୍ଷୀଗଣସେବିତା ସମୁଲ୍ଲଣିତା ସୀତା କପରି ଏହି ବଟପାଦ୍ରୁରାଳରେ ପଲ୍ଲବକଲ୍ପିତ ତଳ୍ପରେ ଶୋଉଅଛୁ ! ଇତପୂର୍ବେ ବୟସ୍ୟ ରାମଚନ୍ଦ୍ରଙ୍କୁ ସୀତାର ଏତାଦୃଶ ଅବସ୍ଥା ମୁଁ କହିଥିବାରୁ ସେ ବର୍ତ୍ତମାନ ସେ ତାହା ମୋତେ ସ୍ମରଣ କରାଇଲେ । (ବଗ୍ଭିର) ସେହି ସୀତାର ଅବସ୍ଥାନ ତ କୌଶିକାଶ୍ରମରୁ ଅର୍ଦ୍ଧଯୋଜନ ଦୂରରେ ରହିଅଛୁ । ଏସ୍ଥଳରେ ଏହା କପରି ସମ୍ଭବ ହୋଇ ପାରେ ? (ଏହା ଭାବି ସବସ୍ମୟେ ଗଛିଁ ବସିବା)

ମାରୀଚ—(ସ୍ୱଗତ) ଏଟା କରାଳ ନୁହେ, ପିଙ୍ଗଳ କେବଳ । ହାୟ ହାୟ ! କ ହେଲା ଯେ ! !

ଅନୁଷ୍ଟୁପ୍ ବୃତ୍ତ ।

କରାଳ ପ୍ରତି ଯେ ପାପ-ଶଙ୍କା ମୋ ଝୁଦ୍ର ମାନସେ ।
ଜନତ ପ୍ରଥମେ ତାହା ଏବେ ନିଷ୍ଠିତ ହୋଇଲା । ୨୫ ।

ଅଥବା ପିଙ୍ଗଳବେଶ ଧାରଣରେ ଅନ୍ୟସ୍ଥାନକୁ ଯାଇଅଛୁ ? ସେ ଯାହାହେଉ, ବର୍ତ୍ତମାନ ଶୋକ କରିବାର ସମୟ ନୁହେ । ମାୟାରେ ରାମକଥାକୁ ଶୀଘ୍ର ସମାପନ କରିବାକୁ ହେବ । (ପ୍ରକାଶତଃ) ସଖେ ! ଏହିଆଡ଼େ ଦେଖନ୍ତୁ । ହାୟ ! ଏହି ସୁନ୍ଦରୀ ଅଶ୍ରୁ ମୋଚନ କରୁଅଛୁ ।

ରାମ—ଦେଖଅଛୁ ।

ମାଲଗୀ ବୃତ୍ତ ।

ଲଳତ ନୟନ ପଦ୍ମଦ୍ୱନ୍ଦୁ ମାରନ୍ଦବନ୍ଦୁ
ମୁଖବିଧୁରୁ ଗଳେ ଯେ ପ୍ରାୟ ପୀୟୂଷବନ୍ଦୁ ।

ଅତହ ସୁଷମ ତେତେଷ୍ଟେ ବାଳକା ଅଶ୍ରୁପାତ
କରଇ ତରଳ ଅହା ହେ ସଖେ ମୋର ଚିତ୍ତ ।୫୬।

ମାଣ୍ଡବ—(ଧ୍ୟାନାଭିନୟ କରିବା)

ଏକ ସଖୀ—

ଇନ୍ଦ୍ରବଜ୍ରା ବୃତ୍ତ ।

ସୀତା ଅଟେ ଉତ୍ପଳିନୀ ସମାନ ।
ସୁଧାଂଶୁ ତୁଲ୍ୟ ପ୍ରିୟ ରାମ ଜାଣ ।
ଆଶ୍ଳିଷ୍ଟ ତାହାଙ୍କ କରପ୍ରସାର
ହେଲେ ସତେ ହୋଇବ ସୌଖ୍ୟ ତାର । ୫୭ ।

ରାମ—

ରଥୋଦ୍ଧତା ବୃତ୍ତ ।

ଜାନକୀର ସଜନୀର ଭାରତୀ । ରୋମହର୍ଷିତ କଲା ମଦଙ୍ଗକୁ ।
ନୂତନାମ୍ବୁଜଳଯୋଗ ଯେସନେ । କୁଟ୍ମଳାଞ୍ଚିତ କରେ କଦମ୍ବକୁ ।

ପିଙ୍ଗଳ—( ବଗ୍ଭରପୂର୍ବକ ସ୍ୱଗତ ) ଏ କଦାପି କାଶ୍ୟପ ନୁହେ । ଅତଏବ ବୋଧ ହୁଏ—

ଅନୁଷ୍ଟୁପ୍ ବୃତ୍ତ ।

ମାୟାରେ ଜାନକୀ ରୂପ ଦର୍ଶାଇ କେହିଁ ରାକ୍ଷସ
ତାଙ୍କ ଜୀବନଧନ କ୍ରୋଧେ ଶ୍ରୀରାମେ ପାପ ଇଚ୍ଛଇ । ୫୯ ।

ତାହା ନ ହେଲେ କି ପ୍ରଥମେ କିଛି ଅସମ୍ଭବ କଥା କହି ପୁନଃ ପ୍ରଶ୍ନରେ ଭ୍ରୁଭଙ୍ଗଚଞ୍ଚଳତାରକରେ ନୀରବ ରହି-

ଆନ୍ତା ? ଅଚ୍ଛା ହେଉ, ତେବେ ମୁଁ ଏହା କହିବି ।
(ପ୍ରକାଶତଃ) ସଖେ ରାମଭଦ୍ର ! ଏହା ଯଥାର୍ଥ ମଣନ୍ତୁ ଯେ,
ଏହି ପରିଦୃଶ୍ୟମାନା ଜାନକୀ ନୁହେ, କିମ୍ବା ଏମାନେ
ତାହାର ପରିଜନ ନୁହନ୍ତି । ଏହି ଅରଣ୍ୟ ମଧ୍ୟରେ
ସୀତାର ଅବସ୍ଥିତି ସମ୍ଭବ ନୁହେ । ଏ ସବୁ ମାୟିକ
ପ୍ରୟୋଗ ।

ରାମ—(ସ୍ୱଗତ) ଏ ତ ପୂର୍ବାପରବିରୁଦ୍ଧ ବଚନ କହୁଅଛି । ଯେ
କି ପ୍ରଥମତଃ ଏହାଙ୍କୁ ସତ୍ୟ ଜାନକୀ ବୋଲି ପ୍ରତିଜ୍ଞା-
ପୂର୍ବକ ପ୍ରକାଶ କରି ତଦୀୟ ବୃତ୍ତାନ୍ତବେଦୀ କାଶ୍ୟପଙ୍କୁ
ଡାକି ଅଣିବାପାଇଁ ଯାଇଥିଲା, ସେହି ତ ଏ ? ତେବେ
ଏକ୍ଷଣି ଏହି ସପରିବାର ଜାନକୀ କିପରି ମାୟା ବୋଲି-
ଥିବ ? (ପ୍ରକାଶତଃ) ସଖେ କାଶ୍ୟପ ! ପିଙ୍ଗଳର ବଚନ
ଶୁଣିଲ କି ?

ମାରୀଚ—( ରାମଙ୍କ ପ୍ରତି—ରହସ୍ୟରେ )

ଇନ୍ଦ୍ରବଜ୍ରା ବୃତ୍ତି ।

ହେ ରାମ ଏ ରାକ୍ଷସ ଗୂଢ଼ବେଶ
ମାୟାବଳେ ପିଙ୍ଗଳସନ୍ନିକାଶ ।
ତୁମ୍ଭଙ୍କୁ ବୈରୀ ମଣି ତା ଜଘାସା
ଅନ୍ୟତ୍ର ନେବାକୁ କରେ ମନୀଷା । ୭୦ ।

ରାମ—ଆପଣ ସତ୍ୟ କହିଲେ । ଯଦିବା ପିଙ୍ଗଳ ପୁନରପି ଏଠାକୁ
ଆସନ୍ତି, ତେବେ ଏ କଣ ହେବେ ଯେ ?

ମାଣ୍ଡବ—ତାଡ଼କା ଓ ସୁବାହୁ ଯାହା ହେଲେ—

ରାମ—ହଁ, ତାହାହିଁ ହେବେ ।

ପିଙ୍ଗଳ—(ସ୍ୱଗତ) ବଂଶ୍ୟ ଏହାକୁ ଯଥାର୍ଥ କାଶ୍ୟପ ଭାବି ଏହାର ବଚନକୁ ବିଶ୍ୱସ୍ତହୃଦୟରେ ଗ୍ରହଣ କରୁଅଛନ୍ତି । (ପ୍ରକାଶତଃ) ସଖେ ! ମୋ କଥା ତ୍ୟାଗ କରି ଏହାର ବଚନ କପଟ ଶ୍ରବଣ କରୁଅଛନ୍ତ ?

ରାମ—(ଭ୍ରୂବିକାର ସହ) ଏହି ଋଷିପତ୍ନୀ ଆଳାପରେ ବିଘ୍ନ ଘଟାଉଅଛୁ କାହିଁକ ?

ପିଙ୍ଗଳ—(ସଭୟଶୋକହୃଦୟେ ସ୍ୱଗତ) ଏ ମୋତେ ଇତର ଜନ ବୋଲି ଭାବିଅଛନ୍ତି, ଏହା କେବଳ ନୁହେ । ପରନ୍ତୁ ଋଷିପ ବୋଲି ମଧ୍ୟ ବିଶ୍ୱାସ କରିଅଛନ୍ତି । ହାୟ ହାୟ ! ଏହି କର୍ଣ୍ଣେଜପ କାଶ୍ୟପରୂପ ରାକ୍ଷସ- ଦ୍ୱାରା ମୁଁ ବଞ୍ଚିତ ଓ ନଷ୍ଟ ହେଲି ଯେ ! (ପ୍ରକାଶତଃ) ସଖେ ! ମୋ ସମ୍ବନ୍ଧରେ ସୁବିଚାର କରନ୍ତୁ । (ଏହା କହି ବିବର୍ଣ୍ଣମୁଖରେ ବସିବା)

ମାଣ୍ଡବ—(ଧ୍ୟାନାଭିନୟ କରିବା)

ସୀତା—ମୁଁ ମନ୍ଦଭାଗିନୀ, ଏ ମୋର ଦୁର୍ଲକ୍ଷ ଅଟନ୍ତି ।

ରାମ—

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ହେ ହେମାମ୍ବୁଜକୁଟଳସ୍ତନ ବିଗ୍ରୋହେ ! ତବାସେଚନ
ନୀଳେନ୍ଦୀବରଚକ୍ଷୁ ଖଞ୍ଜକର ତା-ନେତ୍ରାନ୍ତସଂବୀକ୍ଷଣ ।

କନ୍ଦର୍ପାନଳତପ୍ତ ମୋ ହୃଦୟରେ ହେଲେ ସମାବେଶିତ
ମୋ ଅଲିଙ୍ଗନ ଘୋର ଦୁର୍ଲ୍ଲଭ ନୁହେ ହେ ଦୁର୍ଲ୍ଲଭେ ନିଶ୍ଚିତ ॥

ମାଲ୍ୟବାନ—( ସ୍ୱଗତ ) ମାୟା ସୀତା ପ୍ରତି ରାମର ଅଭିନିବେଶ ବଦ୍ଧମୂଳ ହେଲା । ଅତଏବ ମଦୀୟ ସଂକଳ୍ପିତ କଥାର ସିଦ୍ଧିଲାଭ ଆଉ ଦୁଷ୍କର ନୁହେ । (ପ୍ରକାଶତଃ) ବୟସ୍ୟ ! ଆପଣଙ୍କୁ ସୀତାର ମନୋରଥ ଅବଶ୍ୟ ସଫଳ କରିବାକୁ ହେବ ।

ରାମ—ସଖେ ! ଶୁଣନ୍ତୁ ଯେ, ବିପିନରେ ଯେଉଁ ସୁନ୍ଦରୀ ମଦୀୟ ଦୃଷ୍ଟିଗୋଚର ହୋଇଅଛି, ( ସାଶ୍ଚର୍ଯ୍ୟ ) ସେହି ତରୁଣୀମଣି ପୁଣି ମତ୍‌ପ୍ରେମଲାଳସାରେ ମାନ୍ମଥ ବାଧାରେ ପରିପୀଡ଼ିତା; (ସହର୍ଷେ ଓ ସାନୁରାଗେ) ତାହାର ଅମାପ ସନ୍ତାପ ନିମିତ୍ତକ, ଅପିଚ ତାହାର ଶାନ୍ତି ନିମନ୍ତେ ( ସପୁଲକୋଦ୍ଭେଦେ ) ମଦୀୟ ସମାଶ୍ଳେଷକୁ କେବଳ ପ୍ରଧାନ ଉପାୟ ମଣିଅଛି; ତଥାପି ସେ ଅନୂଢ଼ାର ଗ୍ରହଣ ବିଷୟରେ ହୃଦୟ ଭୀତ ହୁଏ ।

ମାଲ୍ୟବାନ—(ଧ୍ୟାନାଭିନୟ କରିବା ।)

ଏକ ସଖୀ—ସଖି ! ପ୍ରିୟଜନ ଦୁର୍ଲ୍ଲଭ ନୁହନ୍ତି । ମହର୍ଷି ବିଶ୍ୱାମିତ୍ର ତ୍ୱଦୀୟ ହୃଦୟବଲ୍ଲଭଙ୍କୁ ଶୀଘ୍ର ଆଣି ପ୍ରାପ୍ତ କରାଇବେ ।

ରାମ—ଏ କଥା ପିଙ୍ଗଳ ମୁଖରୁ ମଧ୍ୟ ଶୁଣିଥିଲି ।

ପିଙ୍ଗଳ—ଅହୋ ! ମାୟାବିଳାସର ଚରିତସନ୍ଦର୍ଭ କି ବିସ୍ମୟକର !

ମାଲ୍ୟବାନ—ବୟସ୍ୟ ! ଏହାର କଥା ଶୁଣିଲେ କି ?

ରାମ—ଏହା କାଶ୍ୟପଙ୍କର ଶୁଣିବାର ଅବଶ୍ୟକ ।

କାଶ୍ୟପ—ଠିକ୍ ସୀତାର ସଖୀମାନଙ୍କ ପରି ଅନ୍ୟୋନ୍ୟ କଥା ହେଉଅଛନ୍ତି ।

ପିଙ୍ଗଳ—ଏଥିରେ ମୋର ହୃଦୟ କଥଞ୍ଚିତ୍ ବଶୀଭୂତ ହେଉ ନାହିଁ ।

ମାରୀଚ—(ଧ୍ୟାନାଭିନୟ କରିବା ।)

ଏକ ସଖୀ—ସଖି ! ତାହାହେଲେ ସୀତା ରାବଣ ଏହାର ପ୍ରାର୍ଥନା କରୁଅଛୁ ବୋଲି ହୃଦୟରେ ବଡ଼ ଦୁଃଖ ହେଉଅଛୁ ।

କାଶ୍ୟପ—ଏକଥାଟି ମଧ୍ୟ ସମ୍ପୂର୍ଣ୍ଣ ମିଥ୍ୟା, ଅଦ୍ୟାପି ରାବଣ ଜନକରାଜଙ୍କୁ ପ୍ରାର୍ଥନା କରି ନାହିଁ ।

ରାମ—ରାବଣ ଯଦିଚ ପ୍ରାର୍ଥନା କରେ, ତେବେ ଏହା ତୁଲ୍ୟ ବଳବରୋଧ ।

ପିଙ୍ଗଳ—(ସ୍ୱଗତ) ଏହା କଦାଚ ସମ୍ଭବ ହୋଇ ନ ପାରେ; ତଥାପି ବୟସ୍ୟଙ୍କୁ ଏହା ମୁଁ ଜଣାଇବାରେ ଅସମର୍ଥ, ମୋତେ ସେ ରାକ୍ଷସ ବୋଲି ବିଶ୍ୱାସ କରି ସାରିଲେଣି । (ପ୍ରକାଶତଃ) ସଖେ ! ମୋ ବିଷୟ ସମ୍ୟକ୍ ବିଚାର କରନ୍ତୁ ।

ରାମ—(ନ ଶୁଣିବାର ଅଭିନୟ କରି) ରାବଣ ଯଦିଚ ପ୍ରାର୍ଥନା କରେ—(ଇତ୍ୟାଦି ବାକ୍ୟ ପୁନଃ ପ୍ରକାଶ କରିବା ।)

ମାରୀଚ—ଏଥିରେ ଦୋଷ କଣ ? ସର୍ବଥା ସ୍ୱତନ୍ତ୍ର ଲୋକଙ୍କ

ମଧ୍ୟ କୌଣସିଠାରେ ପାରତନ୍ତ୍ର୍ୟ ସ୍ୱୀକାର କରିବାକୁ ହୋଇଥାଏ ।

ସୀତା—(ସାଶ୍ରୁନୟନେ) ହାୟ ! ରାବଣ ମଧ୍ୟ ମୋତେ ପ୍ରାର୍ଥନା କରୁଅଛି ! ପିତା ଯଦି ତାହାକୁ ମୋତେ ଦେବାପାଇଁ ସମ୍ମତ କରନ୍ତି, ତେବେ ବିଷ ଭକ୍ଷଣ କିମ୍ବା ଅଗ୍ନିରେ ପ୍ରବେଶ କରିବି ।

ରାମ—(ଆନନ୍ଦ ବନ୍ଧୁ ସସ୍ନେହେ)

ବସନ୍ତତିଲକ ବୃତ୍ତ ।

ଏହାର ଭାବ ଅଛି ମୋ ପ୍ରତି ମାତ୍ର ସକ୍ତ,
ଅନ୍ୟନ୍ତ କେଂଚଦପି ନୋହି କଦାପି ଯୁକ୍ତ ।
ହେ ମୈ ବର୍ଯ୍ୟ ! ଅତଏବ ମଦୀୟ ଚିତ୍ତ
ପ୍ରେମେ ଅଧୀନ କରିଲା ତରୁଣୀ ନିତାନ୍ତ । ୬୨ ।

(ଏହା କହି ନିରେଖି ବସିବା ।)

କାଶ୍ୟପ—( କପିଳକୁ ଦେଖି ସହର୍ଷେ ) ହେଉଛି ପିଙ୍ଗଳ ମୋଠାକୁ ଆସୁଅଛି । କହେ, ମୃଗୟାନୁଗତ ରାମଚନ୍ଦ୍ର, କେଉଁଠାରେ ଅଛନ୍ତି, ଦେଖିଅଛ ?

କପିଳ—କେବଳ ଦେଖିବାର ନୁହେ, ଆପଣଙ୍କ ଅଦୃଷ୍ଟ ମାର୍ଗ ଦେଇ ତାହାକୁ ବନାନ୍ତରରୁ ଏହି ବନକୁ ଆଣିଅଛି । ପରଂ ତୁ ଆପଣଙ୍କ କ୍ଷଣମାତ୍ର ନ ଦେଖି କୌଶିକାଦଷ୍ଟ ଲକ୍ଷ୍ମଣର ବାଣରେ ନଷ୍ଟ ହେଲେ, ଏହି ଶଙ୍କା କରି ମୁଁ ଯାହା ହେଉଥିଲି, ଅଉ କଣ କହିବି !

କାଶ୍ୟପ—( ବିସ୍ମୟପୂର୍ବକ ସ୍ୱଗତ ) ଏ ଲକ୍ଷ୍ମଣଙ୍କର କେହି ଜଣେ ଅନ୍ୟତମ ଶତ୍ରୁ, ପିଙ୍ଗଳରୂପ ଧାରଣ କରି ମୋତେ ସ୍ୱଜନ ମନେ କରୁଅଛି । ଏଥିରୁ ଅନୁମିତ ହୁଏ ଯେ, ଅନ୍ୟ ଜଣେ ରାକ୍ଷସ ମଦୀୟ ରୂପକୁ ଧାରଣ କରିଥିବ । ହେଉ ତେବେ ଜଣାଯିବ ତ । ( ପ୍ରକାଶତଃ ) ଏବେ ରାମଚନ୍ଦ୍ର କେଉଁଠି ଅଛନ୍ତି ?

କପିଳ—(ସ୍ୱଗତ) ଏହାର ମନୋରଥ ରାମଚନ୍ଦ୍ର ପ୍ରତି ସମ୍ପୂର୍ଣ୍ଣ ଆସକ୍ତ ରହିଥିବାରୁ ମୋର ଆଶ୍ୱାସ ପ୍ରକାଶ କରି ପାରୁ ନାହିଁ । (ପ୍ରକାଶତଃ) ରାମ ଏହି ରସାଳ ଶାଳମୂଳରେ ସୀତାଙ୍କୁ ଗୃହିଁ ବସିଅଛି ।

କାଶ୍ୟପ—ଏହାକୁ ତୁମେ ଯଥାର୍ଥ ସୀତା ଭାବଅଛ କି ?

କପିଳ—(ହସି) ହଁ, ସେହିପରି ବ୍ୟବହାର କରୁଅଛି; କିନ୍ତୁ ତଦୀୟ ମାୟାଜନିତ ବୋଲି ଜାଣି ପାରିଅଛି ।

ଅନୁଷ୍ଟୁପ୍ ବୃତ୍ତ ।

ବିଦ୍ୟୁଜ୍ଜିହ୍ୱେନ୍ଦ୍ରଜିତ ମୟ ଶମ୍ବର ରାକ୍ଷସ
ମାନନ୍ତି ଯେଉଁ ମାୟାକୁ ସେ ତବାଧୀନ ସର୍ବଥା । ୬୩ ।

କାଶ୍ୟପ—(ସୋଦ୍ବେଗେ ସ୍ୱଗତ) ଏହି ଦୁଷ୍ଟାତ୍ମା ମାରୀଚ ରାକ୍ଷସର ଅନୁଚର ଅଟେ । ବୋଧହୁଏ, ମାରୀଚ ମଧ୍ୟ ମଦୀୟ-ରୂପରେ କେଉଁଠି ଅବା ଲୁକ୍କାୟିତ ରହି ମାୟା ପ୍ରୟୋଗ କରୁଅଛି ।

ମାଳିନୀ ବୃତ୍ତ ।

କି କରିବି ମୁହିଁ ଏବେ ରୁଷ୍ଟ ଦୁଷ୍ଟେଷ୍ଟ ଦୈତ୍ୟ
ନିଧନ କରିବି ନିଶ୍ଚେଁ ନିର୍ଦ୍ଦୟେ ଗୂଢ଼କୃତ୍ୟ ।
ଯଦି ତ ହରିଣ ହେଲା ବ୍ୟାଘ୍ର ପାଶେ ପ୍ରବିଷ୍ଟ,
ରହିବ କିପରି ଅହା ପ୍ରାଣ ତା ନୋହି ନଷ୍ଟ । ୬୪ ।

(ଏହା ଭାବି ମୂର୍ଚ୍ଛିତ ହେବା)

କପିଳ—ଆଶ୍ୱାସିତ ହୁଅ, ଆଶ୍ୱାସିତ ହୁଅ । ଜନନୀ ତାଟକାର ଅନୁଶୋଚନାରେ କିମ୍ବା ଏହି ରାଜପୁତ୍ରର ନିରୁପମ ପରାକ୍ରମ ଚିନ୍ତନରେ ବୃଥା ଦୁଃଖିତ ହୁଅ ନାହିଁ ।

କାଶ୍ୟପ—(ମୂର୍ଚ୍ଛାରୁ ଉଠି ସାଞ୍ଜଳିବନ୍ଧେ)

ଅନୁଷ୍ଟୁପ୍ ବୃତ୍ତ ।

ମାରୀଚ ମୁଁ ନୁହେ ଜାଣ ପ୍ରଣାମ କରଇ ପ୍ରଭୋ !
କୃପା କରିଣ ମୋଠାରେ କୀର୍ତ୍ତି ସ୍ଥାପ ଅନଶ୍ୱର । ୬୫ ।

କପିଳ—କିଣ ! ଏ ଗୋଟାଏ ବ୍ରାହ୍ମଣଟୋକା ! ମୁଁ ମନ୍ଦବୁଦ୍ଧି ଏହାକୁ ମାରୀଚ ଭାବି ସମସ୍ତ କହିଦେଲି ଯେ !

(ସଶୋକୋଦ୍ବେଗେ)

ଅନୁଷ୍ଟୁପ୍ ବୃତ୍ତ ।

ମାରୀଚ ପ୍ରତି ଯେ ପାପ ଶଙ୍କା ମୋ ଯୁଦ୍ଧମାନସେ
ଜନ୍ମିଲା ପ୍ରଥମେ ତାହା ଏବେ ନିଶ୍ଚିତ ହୋଇଲା ।୬୬।

ହା ମାରୀଚ ! ନାନାବିଧ ମାୟାପାରମ୍ପର୍ଯ୍ୟୋପଦେଶିକ !
(ଏହି ଅର୍ଦ୍ଧୋକ୍ତିରେ) ବର୍ତ୍ତମାନ ଏହି ବିଳାପ ପ୍ରଳାପରେ
କି ପ୍ରୟୋଜନ ! (ସକ୍ରୋଧ ଗର୍ବେ) ଆରେ ରେ ସୁମିତ୍ରା-
ଗର୍ଭବିପ୍ଲୋଷଣ ଝଟିକି ମୃତମ୍ ! (ଏତିକମାତ୍ର କହି ବିସ୍ମୟ-
ପୂର୍ବକ) ହାୟ ! ଏହା ପ୍ରତି ମୋର କ୍ରୋଧ ଜନ୍ମୁଅଛି
କାହିଁକି ?

ବସନ୍ତତିଳକ ବୃତ୍ତ ।

ବୀରପ୍ରଧାନ ସତ ଲକ୍ଷ୍ମଣ ରାମଙ୍କଠୁଁ ।
ମୋ ଶକ୍ତି ନାହିଁ ଯୁଝିବାକୁ ତ ତାକୁ ଅଳ୍ପ ।
ଏହାକୁ ନାଶନ କଲେ ଯିବ ମୋର ଅଘ ।
ସେ ତାଟକାସୁତବନାଶନ-ବୈରଶୁଦ୍ଧି । ୬୭ ।

( ଏହା କହି କାଶ୍ୟପଙ୍କ ଗଳ ନିକ୍ଷେପ କରିବାକୁ ଆରମ୍ଭିବା )

କାଶ୍ୟପ—( ନିକ୍ଷେପଣପୂର୍ବକ ରାମାଧିଷ୍ଠିତ ରସାଳମୂଳକୁ
ଧାଇଁବା)

କବ୍ଧ—(କାଶ୍ୟପଙ୍କୁ ଅନୁଧାବନ କରିବା । )

କାଶ୍ୟପ—

ଇନ୍ଦ୍ରବଜ୍ରା ବୃତ୍ତ ।

ମାୟାବି-ମାରୀଚର ସଙ୍ଗି-ଦୈତ୍ୟ
ଦ୍ୱେଷେ ମନାସେ ମମ ନାଶକୃତ୍ୟ ।
ଆସେ ପଛେ ଧାଇଁଣ ସେ ସବେଗେ,
ହେ ରାମ ରକ୍ଷା କର ଆସି ବେଗେ । ୬୮ ।

ରାମ—କିଣ ! କାଶ୍ୟପଙ୍କ ବିଳାପ ପରି ଶୁଭୁଅଛି ସତେ ! ଭୟ

କର ନାହିଁ, ଭୟ କର ନାହିଁ । ( କବନ୍ଧକୁ ଯିବାକୁ ଉଦ୍ୟତ ହେବା )

ମାରୀଚ—ବୟସ୍ୟ ! ହେଉଛି ମୁଁ କାଶ୍ୟପ ତୁମ୍ଭ ସମୀପରେ ତ ବସିଅଛି, ଅନ୍ୟର ବଳାପ ଶୁଣି ଏପରି ଭାବନା କରୁଅଛ କାହିଁକି ?

କବନ୍ଧ—(କାଶ୍ୟପଙ୍କୁ ଅତିକ୍ରମ କରି ଧାଇଁ ଯାଇ, 'ମାଯାବି-ମାରୀଚର ସଙ୍ଗି-ଦୈତ୍ୟ' ଇତ୍ୟାଦି ପଦ୍ୟଟି ପଢ଼ି ରାମଙ୍କୁ ଆଲିଙ୍ଗନ କଲା । )

ରାମ—(ମାରୀଚକୁ ଚାହିଁ) ହେଉଛି ପିଙ୍ଗଳ ଆସିଲେ ।

ମାରୀଚ—(ସହର୍ଷେ ସ୍ୱଗତ) ଏ ନିଶ୍ଚେ କବନ୍ଧ ହେବ । କାଶ୍ୟପ ମଧ୍ୟ ଏହାର ପଛରେ ଆସୁଅଛି । (ପ୍ରକାଶତଃ) ସଖେ ! ମହାତ୍ମ ରୂପଧାରୀ ମାରୀଚକୁ ଦେଖନ୍ତୁ ।

କାଶ୍ୟପ—ସଖେ ରାମଚନ୍ଦ୍ର ! ମହାତ୍ମ ରୂପଧାରୀ ମାରୀଚ କେବଳ ତୁମ୍ଭ ପାର୍ଶ୍ୱରେ ବସିଅଛି । ମାୟାପ୍ରକାଶରେ ମାୟିକ-ସୀତାକୁ ପ୍ରଦର୍ଶାଇ ତୁମ୍ଭଙ୍କୁ ମୋହିତ କରୁଅଛି ।

କବନ୍ଧ—( ସହର୍ଷେ ସ୍ୱଗତ ) କାମ୍ଯତବଳରୁ ମାରୀଚ ପ୍ରାଣରେ ବଞ୍ଚି କାଶ୍ୟପ ରୂପରେ ଏହିଠାରେ ବସିଅଛି । (ପ୍ରକାଶତଃ) ଏ କିଏ ? ମୋର ରୂପ ଧରି ଶୁଷ୍କମୁଖରେ ବସିଅଛି ?

ମାରୀଚ—ପ୍ରଥମରୁ ଏହାକୁ ରାକ୍ଷସ ବୋଲି ବୟସ୍ୟ ଜାଣି ପାରି-ଅଛନ୍ତି ।

ପିଙ୍ଗଳ—( କାଶ୍ୟପଙ୍କ ସମୀପକୁ ଯାଇଁ ) ସଖେ କାଶ୍ୟପ ! ଭବାଦୃଶ ରୂପଧାରୀ ମାରୀଚ ରହସ୍ୟରେ ମୋତେ କପିଳ ବୋଲି ଆହ୍ୱାନ କରିଥିଲା । ଅତଏବ ଜଣାଯାଏ, ଯେ କି ରାମଚନ୍ଦ୍ରଙ୍କୁ ଆଲିଙ୍ଗନ କରିଅଛି, ସେ ନିଶ୍ଚେ ମଦୀୟ ରୂପଧାରୀ କପିଳ କେବଳ ହେବ ।

ରାମ—ଏ କଣ ! କାଶ୍ୟପଙ୍କୁ ମାରୀଚ ବୋଲି ଏ କପଟ କହୁଅଛି ! ତଥାଚ ସୀତା ଓ ତଦୀୟ ପରିଜନଙ୍କୁ ମାୟାଜନିତ ବୋଲି ଅପିଚ ପିଙ୍ଗଳଙ୍କୁ କପିଳ ବୋଲି କହୁଅଛି ! ଅହୋ ! ଏ ତ ବଡ ଆଶ୍ଚର୍ଯ୍ୟର ବିଷୟ !

ଅନୁଷ୍ଟୁପ୍ ବୃତ୍ତ ।

କାଶ୍ୟପଦ୍ୱୟସଂପ୍ରାପ୍ତ ପିଙ୍ଗଳଦ୍ୱୟ ତଦ୍ୱତ ।
ତୁମ୍ଭେ ମିତ୍ର ମନୋମୀତ ତୁମ୍ଭେ ରାକ୍ଷସ ଭାବତ । ୬୯ ।

(କପିଳ ମାରୀଚ ତୁମ୍ଭେ ପିଙ୍ଗଳ ଓ କାଶ୍ୟପଙ୍କୁ ନିର୍ଦ୍ଦେଶ କରି)

ଅନୁଷ୍ଟୁପ୍ ବୃତ୍ତ ।

ଏ ଦୁହଙ୍କ ବିନାଶାର୍ଥ ହୁଅ ସତ୍ୱର ହେ ସଖେ !

ରାମ—(ସକ୍ରୋଧେ ଧନୁରେ ବାଣ ଯୋଗ କରିବା)

କାଶ୍ୟପ—

ଅନୁଷ୍ଟୁପ୍ ବୃତ୍ତ ।

ମାରୀଚ ମାୟା ଏ ସତ୍ୟ ବିଚାର କର କାର୍ଯ୍ୟକୁ । ୭୦ ।

ରାମ—(ସ୍ୱଗତ) ଏ ସବୁ କପଟ !

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଯେ ଯୁଗ୍ମଙ୍କୁ ବୟସ୍ୟ ବୋଲି ମୁଁ ମଣେ ବିଶ୍ୱସ୍ତ ବାଣୀ ଶୁଣି,
ସେ ଯୁଗ୍ମଙ୍କୁ ବିଲୋକିଲି କ୍ଷଣି ହୃଦେ ବିଦ୍ୱେଷ ଜନ୍ମେ ପୁଣି ।
ଅହା ବାଣର ଲକ୍ଷ୍ୟ ଯେ ଦୁଇ ଜଣ କ୍ରବ୍ୟାଦ ବିଶ୍ୱାସରେ
ଏହାଁନ୍ତେ ପୁଣି ସେ ଦୁହିଙ୍କୁ ସହସା ଜନ୍ମେ ଦୟା ଚିତ୍ତରେ ।୨୧।

( ଏ ବଚନରେ ସ୍ଥିର ହୋଇ ରହିବା )

ମାରୀଚ—(ସ୍ୱଗତ) ଏ ଦୁହିଙ୍କ ପ୍ରତି ଶର ନିକ୍ଷେପିବାରେ ଏହାର
ସନ୍ଦେହ ହେଉଅଛି । ଅଚ୍ଛା, ଏହା ଏତିକରେ ଥାଉ ।
(ଏ ବଚନରେ ଧ୍ୟାନାଭିନୟ କରିବା )

ଏକ ସଖୀ—( ଯବନିକାରୁ ଟେକି ସୋଦ୍ୱେଗେ ପ୍ରବେଶି )
ହାୟ ହାୟ ! ଅମ୍ଭମାନଙ୍କର ସର୍ବନାଶ ହେଲା !

ସମସ୍ତ ପରିଜନ—(ସସମ୍ଭ୍ରମେ) ସଖି ! କହ କହ, ଅମ୍ଭମାନଙ୍କର
କଣ ଅତ୍ୟାହିତ ହେଲା ?

ସୀତା—(ସୋଦ୍ୱେଗେ ଶୟନରୁ ଅଳ୍ପ ଉଠି) କଣ ହେଲା ?
କହ କହ । ମୋ ହୃଦୟ ଉନ୍ମୂଳିତ ହୋଇ ଯାଉଅଛି ।

ପ୍ରବିଷ୍ଟା ସଖୀ—ହାୟ ! ଅମ୍ଭେମାନେ ନାଶ ହେଲୁଁ ଯେ ! କପଟ
ଆଉ ଅପ୍ରିୟ କଥା କହିବ !

ସମସ୍ତେ—କଣ ସେ ଅପ୍ରିୟ ? ଶୀଘ୍ର କହ, ଶୀଘ୍ର କହ, । ତା
ପରେ ଯାହା କରିବାର ଅବଶ୍ୟକ, ତାହା କରିବାକୁ
ହେବ ।

ପ୍ରବଷ୍ଟା—ଆଉ କଣ କହିବ ? (ଲୋତକ ବୁହାଇବା) ଜନକ ରାବଣର ପ୍ରାର୍ଥନାରେ କନ୍ୟା ଦେବାକୁ ଅସମ୍ମତ କଲେ ।

ସମସ୍ତେ—(ସୋଦ୍ବେଗେ) ରାବଣ ତାତ ଜନକଙ୍କ ପ୍ରତି ଅପ୍ରିୟ ଆଚରଣ କରିଅଛି କି ?

ପ୍ରବଷ୍ଟା—( ଉଦ୍ବେଗ ସହ ଗଦ୍ଗଦବଚନରେ ) କ୍ରୋଧବଶତଃ ତାହାଙ୍କ ମସ୍ତକ ଛେଦନ କରି ସଖୀ ସୀତାଙ୍କୁ ହରଣ କରିବା ନିମନ୍ତେ ଏଠାକୁ ଆସୁଅଛି ।

ସୀତା—ମୁଁ କି କରିବି ? ( ସସମ୍ଭ୍ରମରେ ଉଠି ପଳାୟନ କରିବା )

ସଖୀମାନେ—ମହାବିପଦ ଆସି ଉପସ୍ଥିତ ହେଲା ଯେ ! କି କରିବା ! (ସୀତାଙ୍କ ଅନୁଧାବନ କରିବା )

ରାମ—( ସସମ୍ଭ୍ରମରେ ନିକଟକୁ ଯାଇ ) ହେ ଜନକନନ୍ଦିନି ! ଭୟ କର ନାହିଁ । ରାବଣ ତୁମ୍ଭଙ୍କୁ ହରଣ କରିବାକୁ ପାରିବ ନାହିଁ ।

ବସନ୍ତତିଳକ ବୃତ୍ତ ।

ଏ ରାକ୍ଷସଦ୍ଵୟ ବିନାଶନପାଇଁ ଜାଣ
ଚାପେ ସୁସଜ୍ଜିତ ମଦୀୟ ଅମୋଘ ବାଣ ।

କଞ୍ଚୁକି—(ସଭୟେ ମାରୀଚ ପ୍ରତି ରହସ୍ୟରେ) ଏହି କ୍ଷତ୍ରିୟ-ତନୟ କେଜାଣେ କଣ ଅବା କରିବ ! ସମ୍ପ୍ରତି ଆମ୍ଭ-ମାନଙ୍କର କର୍ତ୍ତବ୍ୟ କଣ ?

ମାରୀଚ—(ରହସ୍ୟରେ) ଏହି ଶତ୍ରୁବନ୍ଧୁଦ୍ୱୟଙ୍କୁ ଉଦ୍ଦେଶ କରି
ଏ ଏପରି କହୁଅଛି ।

ରାମ—

ବସନ୍ତତିଳକ ବୃତ୍ତ ।

ସୀରଧ୍ୱଜେ ଯଦି ଅତିକ୍ରମତାକୁ କଲେ
ପୌଲସ୍ତ୍ୟ ମସ୍ତକ ମୁଁ କାଟିବି ନିର୍ଦ୍ଦିକଲେ ।୭୨ ।

କାଶ୍ୟପ—ଜନକରାଜଙ୍କଠାରେ ଏତାଦୃଶ ଅତିକ୍ରମ ଅସମ୍ଭବ
ଅଟେ ।

ଅନୁଷ୍ଟୁପ୍ ବୃତ୍ତ ।

ପ୍ରିୟ ମିତ୍ର ମନେ ଭାବ ଜନକଙ୍କୁ ଦଶାନନ
ନ ଯାଚନ୍ତି ତ କନ୍ୟାକୁ ଏ କଥା କରିବେ କପାଁ । ୭୩ ।

କପାଳ—(ମାରୀଚ ପ୍ରତି ରହସ୍ୟରେ) ଏହି ବ୍ରାହ୍ମଣତମ୍ଭ ସର୍ବଥା
ବିରୁଦ୍ଧ କଥା କହୁଅଛି । ଏହାକୁ ଶୀଘ୍ର ନିହତ କରିବା
ଉଚିତ ।

ମାରୀଚ—ସେ କଥା ତେଣେ ଥାଉ, ପ୍ରଥମେ ଏହା ଦେଖ ।

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଯାହା ବଜ୍ରଗର୍ଭପେଟିକା ଲଭି କଲି ପ୍ରଦ୍ରାବ ଐରାବତ ।
ତପ୍ତ ଛାତ୍ରମଣେ କଲେ ସୁରଟଣେ ଯେ ସାଧ୍ୱସେ ବର୍ଜିତ ।
ସେ ସ୍ୱାମିଙ୍କୁ ବଢାଇବାର ସୁକର ତ୍ରାଣ୍ୟେ ବଳାଏ ମତ ।
କେବା ରାମକୁ ଜାଣି ପାରିବ ରଣେ ଅଟମ୍ଭ ମତଲ ଦକ୍ଷିତ ।୭୪।

ପିଙ୍ଗଳ—ଏଥିରେ ଆଉ ସନ୍ଦେହ କଣ ?

(କରାଳ ମାରୀଚ ଦୁହେଁ ପିଙ୍ଗଳ ଓ କାଶ୍ୟପଙ୍କର ବଚନ ଶୁଣି ସବିସ୍ମୟେ ପରସ୍ପର ମୁଖାବଲୋକନ କରିବା)

ମାରୀଚ—(ପ୍ରକାଶତଃ)

ଅନୁଷ୍ଟୁପ୍ ବୃତ୍ତ ।

ଏ ଦୁହିଙ୍କ ବନାଶାର୍ଥେ ହୁଅ ସତ୍ୱର ହେ ସଖେ !

(ଏହା କହି ଧାନାଭିନୟ କରିବା)

କାଶ୍ୟପ—

ଅନୁଷ୍ଟୁପ୍ ବୃତ୍ତ ।

ମାରୀଚ ମାୟା ଏ ସତ୍ୟ ବର୍ତ୍ତିର କର କାର୍ଯ୍ୟକୁ ।

ସୀତା—ଏହି ପ୍ରକାଣ୍ଡ ଶିଳା ଉପରେ ଅହୋହ ଅନ୍ୟୋନ୍ୟ-ଘର୍ଷିତ ବୃକ୍ଷଶାଖାଜନିତ ଏହି ଦାବାନଳରେ ପଡ଼ି ପିତୃବିପତ୍ତିଜାତ ଶୋକସନ୍ଦୋହ ଆଉ ସେହି ମହା-ପୁରୁଷଙ୍କ ପ୍ରେମରେ ଆସକ୍ତ ମଦୀୟ ହୃଦୟର ଅନଙ୍ଗଜ୍ୱର-ସନ୍ତାପକୁ ଶାନ୍ତ କରିବ । (ଏହା କହି କାନ୍ଦିଲା)

ପିଙ୍ଗଳ ଓ କାଶ୍ୟପ—(ସ୍ୱଗତ) ଅହୋ ! ମାରୀଚର ମାୟା-ପ୍ରୟୋଗରେ ଏପରି କଥାଟାଏ ଆସି ଉପସ୍ଥିତ ହେଲା ! (ପ୍ରକାଶତଃ)

ମାରୀଚ ମାୟା ଏ ସତ୍ୟ ବର୍ତ୍ତିର କର କାର୍ଯ୍ୟକୁ ।

ରାମ—ଏଥିରେ ଆଉ ବତ୍ସରକୁ କଣ ଅଛୁ ?

ରଥୋଦ୍ଧତା ବୃତ୍ତ ।

ଜାନକୀ ମମ ସମାଗମୋତ୍ସୁକା
ବହ୍ନିରେ ତନୁ ବିସର୍ଜନେଚ୍ଛୁକା ।
ଯେଉଁ ବାକ୍ୟ କହିଲା ସଖୀଗଣରେ
ମୋର ମର୍ମକୁ ବିଦାରିଲା ଖରେ । ୭୫ ।

କପାଳ—ବୟସ୍ୟ ! ଏ ରାକ୍ଷସାଧମ ମାୟାପ୍ରୟୋଗ ବୋଲି
ସ୍ୱେଚ୍ଛାରେ କହୁଥାଉ ।

ଅନୁଷ୍ଟୁପ୍ ବୃତ୍ତ ।

ଏ ଦୁହିଙ୍କ ବିନାଶାର୍ଥ ହୁଅ ସତ୍ୱର ହେ ସଖେ !

ସଖୀଗଣ—ସଖି ଜାନକି ! ତାତ ଜନକଙ୍କ ହେତୁରୁ ଅମ୍ଭେ-
ମାନେ ସମସ୍ତେ ସମଦୁଃଖିନୀ । ତୁ ପ୍ରଥମେ କାହିଁକି
ପଳାଉଅଛୁ ? ଅମ୍ଭେମାନେ ସର୍ବଦା ତୋର ଅନୁସାରିଣୀ,
ତୋର ସାଥିରେ ଅସିବୁଁ, ତାହା ନ ହେଲେ ତୋର
ବିୟୋଗ ଦୁଃଖ ଅମ୍ଭମାନଙ୍କର ଅସହ୍ୟ ହୋଇ ଉଠିବ ।
ହାୟ ! ହାୟ ! ସୀତା ତ ଅଗ୍ନିରେ ପ୍ରବିଷ୍ଟ ହୋଇଗଲା !
ହା ସଖି ! ଜନକବତ୍ସଳେ ! ହା ଜନକକୁଳମଙ୍ଗଳ-
ଦୀପିକେ ! (ଏପରି ଅର୍ଦ୍ଧୋକ୍ତିରେ) ରୋଦନ କଲେ ଅବା
ଆଉ କଣ ହେବ ? ଏହାଦ୍ୱାରା ଦୁଃଖ ଶାନ୍ତ ନ ହୋଇ
ବରଂ ବଢ଼ିବ । ଅତଏବ ଅମ୍ଭେମାନେ ମଧ୍ୟ ସେହି

ଅନଳରେ ପ୍ରବେଶ କରି ପ୍ରିୟସଖୀର ଅନୁଗମନ କରିବା । (ଏହା କହି ସମସ୍ତେ ନିଷ୍କ୍ରାନ୍ତ )

ରାମ—(ଗୁଣଗତ ଶର ଶିଥିଳ କରି) ହାୟ ! ସର୍ବନାଶ !

ସ୍ରଗ୍ଧରା ବୃତ୍ତ ।

ହେଲା ମୋ କାମକଳ୍ପଦ୍ରୁମ ହତ ସହସା ଭୂମିଯୋଷାର ଭୂଷା ।
ହେଲା ବିଧ୍ୱସ୍ତ ଧାତା-ବିମଳ ଯଶ ତଥା ଲୋକନେତ୍ରୋତ୍ସବାଶା ।
ହେଲା ପ୍ରଧ୍ୱସ୍ତ ସେହି ତ୍ରିଭୁବନବିଜୟୋନ୍ନତ କନ୍ଦର୍ପ ମାନ ।
ସୀତା ଯେଣୁ ପ୍ରବିଷ୍ଟା ପିତୃବଧଶୁଚରେ ବହ୍ନିରେ ବର୍ତ୍ତମାନ ।୭୬।

ମାରୀଚ—(ସ୍ୱଗତ) ଏହାର ଶୋକାଗ୍ନିକି ଉଦ୍ଦୀପିତ କରିବି । (ପ୍ରକାଶତଃ) ହାୟ ! ସୀତା ସହସା ବହ୍ନିରେ ପ୍ରବିଷ୍ଟା ହୋଇଗଲା ଯେ ! ହା ଦେବଯଜନସମ୍ଭୂତେ, ହା ଜନକକୁଳନନ୍ଦିନୀ, ହା ତ୍ରିଭୁବନୈକସୌନ୍ଦର୍ଯ୍ୟଶାଳିନୀ, ହା ଶ୍ରୀରାମାସକ୍ତହୃଦୟେ, ହା ସୀତେ ! ତୁମ୍ଭର ମଧ୍ୟ ଏହି ଦଶା ଘଟିଲା ! ଦୈବର ଦୁର୍ବିଳାସ କି କହିବୁଁ ! (ଏହା କହି ମୂର୍ଚ୍ଛାଭିନୟ କରିବା )

କପିଳ—(ମାରୀଚ ପ୍ରତି) ସଖେ କାଶ୍ୟପ ! ଆଶ୍ୱାସିତ ହୁଅ ।

ରାମ—ଅହୋ ! ଏହି ଦୁଃଖ ଦେଖି କାଶ୍ୟପ କେବଳ ପ୍ରଥମେ ମୂର୍ଚ୍ଛିତ ହୋଇପଡ଼ିଲେ ! ( ସଶୋକୋଦ୍ବେଗରେ ) ବର୍ତ୍ତମାନ ମୁଁ ଗିରିଶିଖରରୁ ପଡ଼ିବି କିମ୍ବା ସମୁଦ୍ରରେ ଝାମ୍ପ ଦେବି, ତନୁକୁ ବଦଳିତ କରିବି କିମ୍ବା ବିଷଭକ୍ଷଣ କରିବି ?

କପିଳ—( ସ୍ୱଗତ ) ଆରେ ରେ କ୍ଷତ୍ରିୟପୋତ ! ତାଙ୍କୁ କଥା ସୁବାହୁକୁ ପଚାର । (ପ୍ରକାଶତଃ) ( ମାରୀଚକୁ ଚାହିଁ) ହେ କାଶ୍ୟପ ! ବର୍ତ୍ତମାନ ଆମ୍ଭ ଦୁହିଙ୍କର ଗତି କଣ ?

ମାରୀଚ—(ଅଶ୍ରୁସିକ୍ତ ହୋଇ) ବୟସ୍ୟଙ୍କର ଯେ ଗତି—

ରାମ—ଜଳେନ୍ତ ଅଗ୍ନିରେ ସୀତାର ଅନୁଗମନ କରିବ ?

ମାରୀଚ—(ସ୍ୱଗତ) ଏହାହିଁ କର । ଏଥିପାଇଁ କେବଳ ମୋର ଏହିସବୁ ଉଦ୍ୟମ । ( ପ୍ରକାଶତଃ ) ବୟସ୍ୟ ! ତାହାର ପ୍ରଗାଢ଼ ପ୍ରେମକୁ ଏ ସବୁ ଅପର୍ଯ୍ୟାପ୍ତ କେବଳ ।

ରାମ—ଅନ୍ୟଥା ଏ ଦଗ୍ଧହୃଦୟର ବାଧା କିପରି ଦୂର ହେବ ?

ପିଙ୍ଗଳ ଓ କାଶ୍ୟପ—( ପରସ୍ପର ରହସ୍ୟରେ ) ହାୟ ହାୟ ! ଏହି ରାକ୍ଷସଦ୍ୱୟଙ୍କର ମିଥ୍ୟାଚରିତପଟୁତା ଅତିବ ଆଶ୍ଚର୍ଯ୍ୟଜନକ । ଏହାର ବଳରେ ଆମ୍ଭେ ଦୁହେଁ ମଧ୍ୟ ବୟସ୍ୟ ରାମଚନ୍ଦ୍ରଙ୍କର ଅବିଶ୍ୱାସପାତ୍ର ହୋଇଗଲୁଁ ଯେ ! ( ଏହା ଭାବି ଦୁଃଖାଭିନୟ କରିବା )

ରାମ—(ଶୋକ ଓ ବିସ୍ମୟ ସହିତ)

ପୃଥ୍ୱୀ ବୃତ୍ତ ।

ପ୍ରବାଳମୟ ତଳ୍ପରେ ପ୍ରିୟସଖୀଗଣେ ସେବିତା
ବଢ଼େ ପୁଣି ସମୁଜ୍ଜ୍ୱଳା ଶଶିକଳା ପରି କ୍ଷୀଣତା ।
ମଦୀୟ ନୟନୋତ୍ସବପ୍ରକରଦାୟିନୀ ସେ ସିନା
ବଚ୍ଛର ମୁହିଁ ତା କଥା ସତତ ଦୁଃଖରେ ଉନ୍ମନା । ୭୭ ।

ଅତଏବ ଏହି ନୀଳ ପାଷାଣ ଉପରି ଆରୂଢ଼ ରହି ଯଥାମନୋରଥକୁ ପୂର୍ଣ୍ଣ କରିବ । ( ଶିଳା ପରେ ପାଦବିନ୍ୟାସ କରିବା )

ପିଙ୍ଗଳ ଓ କାଶ୍ୟପ—(ଅନ୍ୟୋନ୍ୟ ରହସ୍ୟରେ) ହାୟ ହାୟ ! ଆମ୍ଭେମାନେ ରାକ୍ଷସଦ୍ୱାରା ବଞ୍ଚିତ ହେଲୁଁ । ବର୍ତ୍ତମାନ କି କରିବୁଁ ? କେହି ଯାଇ ତାତ କୌଶିକଙ୍କୁ ଏହି ସମ୍ବାଦ ଦେବେ ? ସେ ସିନା ଏହାର ପ୍ରତିବିଧାନ କରି ପାରିବେ । (ଏହା ଭାବି ନନିର୍ମେଷଲୋଚନରେ ରହିଁ ବସିବା )

ମାରୀଚ—(ସ୍ୱଗତ) ଏତେବେଳେ ମୋର ମନୋରଥ ସଫଳ ହେଲା । ( ଏହା ଭାବି ହର୍ଷପରବଶତାକୁ ଅଭିନୟ କରିବା ) (ପ୍ରକାଶତଃ) କରାଳ !

ଅନୁଷ୍ଟୁପ୍ ବୃତ୍ତ ।

ତାଟକାବଧପାପିଷ୍ଠ ରାମ ଏହି ଶିଳା ପରେ
ଦେଖ ସସ୍ଥାପିଲା ପାଦ ଜାନକୀ ଅନୁଶୋଚନେ । ୨୮ ।

କରାଳ—( ଭ୍ରୂଭଙ୍ଗକାରପୂର୍ବକ ହୁଙ୍କାର କରି ଶିରଶ୍ଚାଳନରେ ନିବାରଣ କରିବା )

ପିଙ୍ଗଳ—(କାଶ୍ୟପଙ୍କ ହସ୍ତରେ ହସ୍ତାଷ୍ଫାଳନ କରି ହସିବା )

କାଶ୍ୟପ—ସଖେ ରାମଚନ୍ଦ୍ର ! ଭବଦୀୟ କାଶ୍ୟପଙ୍କର ବଚନ ଶୁଣିଲେ ତ ?

ରାମ—(ସଶଙ୍କେ) ଏ କଣ ଏପରି କହିଲେ ! ( ଏହା କହି ପ୍ରତିନିବୃତ୍ତ ହେବା )

ମାରୀଚ—( କପାଳକୁ ଚାହିଁ ରହସ୍ୟରେ ) ହର୍ଷପରବଶତାରୁ ମୋର ଦଗ୍ଧ ତୁଣ୍ଡରୁ ଏପରି ବାହାରି ପଡିଲା । କପାଳ ! ଏଣିକି କି ଉପାୟ କରାଯିବ ?

କପାଳ—ଏବେ ଆଉ କରିବାକୁ ଅନ୍ୟ ଉପାୟ କଣ ଅଛି ? ହରିଣ ନ୍ୟାୟ ତେଇଁ ପଳାଇବାକୁ ହେବ ।

ନେପଥ୍ୟରେଃ—

ଜୟ ଜୟ ବତ୍ସ ରାମଚନ୍ଦ୍ର ! ଜୟଯୁକ୍ତ ହୁଅ । ( ସମସ୍ତେ ସାଶ୍ଚର୍ଯ୍ୟେ ନିରେଖି ରହିବା )

କପାଳଓ ମାରୀଚ—( ପରସ୍ପର ରହସ୍ୟରେ )

ମାଲିନୀ ବୃତ୍ତ ।

ଅନଳପତିତ-ସୀତା ଦେଖି ସେ ପାଇ ଖେଦ
ଅନୁଗମନ ନିମନ୍ତେ ଅର୍ପିଲା ଏଥି ପାଦ ।
ଉପଳ ଚପଳ ହେଲା ଦିବ୍ୟଦେହା ସୁଛାୟା
ମୁନି ଯୁବତି ପଦ୍ମେ ବଳିଲେ ଛାଦ କାୟା । ୭୯ ।

( ତଦନନ୍ତର ମୁନିପତ୍ନୀ ପ୍ରବେଶ )

ମୁନିପତ୍ନୀ—

ଇନ୍ଦ୍ରବଜ୍ରା ବୃତ୍ତ ।

ଭର୍ତ୍ତାଙ୍କ ଶାପେ ବହୁକାଳ ଦୀନା
ପାଷାଣରୂପେ ଥିଲି ଭାଗ୍ୟହୀନା ।
ତ୍ୱତ୍ପାଦସଂଯୋଗରୁ ହେଲି କନ୍ୟା
ମୋ ନାମ ହେ ରାମ ଅଟେ ଅହଲ୍ୟା । ୮୦ ।

ରାମ—(ସ୍ୱଗତ) ସେହି ପୂଜ୍ୟପ୍ରବର କୌଶିକ ମୋତେ ଏହାଙ୍କ କଥା ଅନେକବାର କହିଅଛନ୍ତି । (ପ୍ରକାଶତଃ) ହେ ମାତଃ ! ମୁଁ ଦାଶରଥି ରାମ ପ୍ରଣାମ କରୁଅଛି ।

ଅହଲ୍ୟା—ବତ୍ସ ! ଚିରଜୀବୀ ହୁଅ ।

ପିଙ୍ଗଳ ଓ କାଶ୍ୟପ—(ସମୀପକୁ ଯାଇ) ହେ ମାତ ଶତାନନ୍ଦ-ଜନନି ! ଆପଣଙ୍କୁ ଆମ୍ଭେ ଦୁହେଁ ଅଭିବାଦନ କରୁଅଛୁଁ ।

ଅହଲ୍ୟା—ହେ ବତ୍ସ ! ତୁମ୍ଭେ ଦୁହେଁ ଅଭିମତ ଲାଭ କର ।

ରାମ—ଅମ୍ବ ! ଏ ଦୁହେଁ କିଏ ?

ଅହଲ୍ୟା—ବତ୍ସ ! ଏ ଦୁହେଁ ପିଙ୍ଗଳ ଓ କାଶ୍ୟପ । ଅପିଚ—

ଅନୁଷ୍ଟୁପ୍ ବୃତ୍ତ ।

ମାୟୀ କରାଳ ମାରୀଚ ଏ ଦୁହେଁ ରଘୁସତ୍ତମ !
ଯାହାଙ୍କ ମାୟାବଳରେ ତୁମ୍ଭେ ମୋହିତ ସର୍ବଥା । ୮୧ ।

(ହସ୍ତ ନିର୍ଦ୍ଦେଶପୂର୍ବକ ଦେଖାଇ ଦେବା )

କରାଳ ଓ ମାରୀଚ—(ଭୟରେ ମୃଗ ରୂପ ଧରି ପଳାୟନୋନ୍ମୁଖ ହେବା )

ଅହଲ୍ୟା—

ଅନୁଷ୍ଟୁପ୍ ବୃତ୍ତ ।

ମୃଗରୂପୀ ଦୈତ୍ୟ ଦୁହେଁ ଧାବନ୍ତି ଦେଖ ରାଘବ !
ନିରନ୍ତୁକ୍ରୋଶହୃଦୟେ ଦୁହିଙ୍କୁ ନାଶ ଶାୟକେ । ୮୨ ।

ରାମ—(ସକ୍ରୋଧେ) ଅରେ ରେ ଦୁରାତ୍ମା ରାକ୍ଷସାଧମ ଦୁହେଁ କେଉଁଆଡ଼େ ପଳାଉଅଛ, ରହ ରହ । (ଏହା କହି ପ୍ରସ୍ଥାନ କରିବା)

ପିଙ୍ଗଳ ଓ କାଶ୍ୟପ—ହେ ମାତଃ ! ପୁରାତନ ଗୁରୁ-ଗୌତମ-ଧର୍ମପତ୍ନି ! ଆପଣଙ୍କ ଅକଳଙ୍କ ଜ୍ଞାନବଳରେ ଏହି ପ୍ରପଞ୍ଚତତ୍ତ୍ୱ ସୁବିଦିତ ଅଛି ।

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତି ।

ଦୈବେ ଏ ନିଜ ରୂପ ଧାରଣ କଲ, ବ୍ରହ୍ମାକ୍ୟ ବଣ୍ଠାସରେ
ଦୈବେ ରାମ ବିନାଶନାର୍ଥ ଗମିଲେ ଏ ବେନି ରାକ୍ଷିଂଚରେ ।
ଦୈବେ ପାଇଣ ନିର୍ଗତାସୁ ଅଧୁନା ଅମ୍ଭେ ଦୁହେଁ ସୁସ୍ଥିର
ଶ୍ରେୟଃ ସାଧନ ସର୍ବଦା ବିଧି କରେ ହେ ଅମ୍ବ ! ସଂସାରର ।୮୩।

ଅହଲ୍ୟା—ବସ୍ତ ! ତୁମ୍ଭେ ଦୁହେଁ ଯଥାର୍ଥ କହୁଅଛ । କିଂଚିତ୍ ପୂର୍ବୋଭାଗକୁ ଯାଇ ଅବଲୋକନ କର—ଦେଖି ପାରିବ ଯେ—

ସ୍ରଗ୍ଧରା ବୃତ୍ତି ।

ମୌର୍ବୀବଲ୍ଲୀକି ଚକ୍ରୀକୃତ କରି ଅଧୁନା ରାମ କୋପେ କରାଳ
କ୍ଷେପନ୍ତେ ବାଣ ବେଗେ ପଡ଼ୁପଡ଼ୁ ଧରଣୀ ପୃଷ୍ଠଦେଶେ କରାଳ ।
କୌରଙ୍ଗୀ ମୂର୍ତ୍ତି ତେଜେ ସୁରନିକର ତଦା ମଜ୍ଜିଲେ ତୋଷକୂପ
ଜନ୍ମେ ତା ଦେହୁ ଶୀଘ୍ରେ ଗହନ-ଦହନସନ୍ଦଗ୍ଧ-ତାଳାଦ୍ରି ରୂପ ।

ଏବେ—

ଅନୁଷ୍ଟୁପ୍ ବୃତ୍ତ ।

ଦୃଷ୍ଟିମାର୍ଗରୁ ମାଶ୍ୱିତ ମାୟ୍ୱାନ୍ତର୍ହିତ ହୋଇଲା ।
ତେଣୁ ଗୃପେ ଶର ରଖି ପ୍ରତ୍ୟାବୃତ୍ତ ରଘୂତ୍ତମ । ୮୫ ।

(ତଦନନ୍ତର ଯଥାନିର୍ଦ୍ଦିଷ୍ଟ ଶ୍ରୀରାମଙ୍କର ପୁନଃ ପ୍ରବେଶ )

ରାମ—ହେ ମାତଃ ! ଅମ୍ଭେମାନେ ନିଯୃତବଳରୁ ଆପଣଙ୍କର ଅନୁଗୃହୀତ ହେଲୁଁ ।

ଅହଲ୍ୟା—ବତ୍ସ କୌଶଲ୍ୟାନନ୍ଦନ !

ବସନ୍ତତିଳକ ବୃତ୍ତ ।

ହେ ରାମଚନ୍ଦ୍ର ! ଶରଣାଗତତାପହର୍ତ୍ତା
ତ୍ୱତ୍ପାଦପଦ୍ମ-ପରିରମ୍ଭଣରେ ମୁଁ ପୂତା ।
ମୋ ନାଥ ଗୌତମପଦେ ପୁଣି ସେବନାର୍ଥ
ଆଦେଶିଲେ ଯିବ ମୁଁ ହେବ ତ ଜନ୍ମ ସାର୍ଥ । ୮୬ ।

ରାମ—ହେଉ, ତେବେ ଯାଆନ୍ତୁ । ମାତଃ ! ମୋ ନମସ୍କାର ଗ୍ରହଣ କରନ୍ତୁ । (ନମସ୍କାର କରିବା)

ଅହଲ୍ୟା—

ଅନୁଷ୍ଟୁପ୍ ବୃତ୍ତ ।

ହେ ରାମ ସୂର୍ଯ୍ୟବଂଶାଢ୍ୟ ତୁମ୍ଭେ ସୀତାଙ୍କୁ ପାଇବ ।
ନିଶାଚରଙ୍କୁ ବିଧ୍ୱଂସି ତ୍ରୈଲୋକ୍ୟ ଲୋକ ପାଳିବ । ୮୭ ।

(ଏହା କହି ନିଷ୍କ୍ରାନ୍ତ)

ରାମ—( ପଶ୍ଚାତ୍ତାପପୂର୍ବକ ପିଙ୍ଗଳ ଓ କାଶ୍ୟପଙ୍କୁ ଚାହିଁ ) ହେ ପ୍ରିୟ ବୟସ୍ୟ ! ତୁମ୍ଭ ଦୁହିଙ୍କ ମୁଖକୁ ଚାହିଁବାକୁ ମୁଁ ଲଜ୍ଜିତ ହୁଏ ।

ପିଙ୍ଗଳ ଓ କାଶ୍ୟପ—ଏ ସମ୍ବନ୍ଧରେ ମାରୀଚକ ମାୟାର କେବଳ ଅପରାଧ ।

ରାମ—ତାହା ଯଥାର୍ଥ ।

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଅବସ୍ଥାର କଲା ନିଗୂଢ଼ କପଟେ ସୀତାକୁ ମୋ ଅଗରେ ।
ତା ମାତା ବନପାଡିତା ମମ ଶରେ ତା ଭ୍ରବ ସେ ରାଗରେ ।
ଯାଥାତଥ୍ୟ ବିଚାର ମୂଢ଼ ହୃଦୟେ ତା କାର୍ଯ୍ୟରେ ମଜ୍ଜିଲି ।
ତୁମ୍ଭେ ମିଏ ଦୁହେଁ ତ ତୁମ୍ଭ ନିକଟେ ଏ ଦୋଷ ହା ! ଅର୍ଜିଲି ॥

ଯାହାହେଉ ଏହା କୁତ୍ରାପି ପ୍ରକାଶ କରିବେ ନାହିଁ ।

କାଶ୍ୟପ—ଆପଣଙ୍କର ଏହି ଅନୁରୋଧ ମନୁଷ୍ୟମାନ ସମ୍ଭନ୍ଧେ ଚଳି ପାରେ । କିନ୍ତୁ ଭଗବାନ୍ ତାତ କୌଶିକଙ୍କଠାରେ ଏହା ରହି ନ ପାରେ । କାରଣ ଏତାଦୃଶ ମାୟା ପ୍ରୟୋଗରେ ସେ ଆପେ ପ୍ରତିବିଧାନାର୍ଥ ଉପଦେଶ ଦେବାରେ ସୁସମର୍ଥ ଅଟନ୍ତି ।

ରାମ—ଆପଣ ସତ୍ୟ କହୁଅଛନ୍ତି ।

ନେପଥ୍ୟରେ—

ସ୍ରଗ୍ଧରା ବୃତ୍ତ ।

ଏ ମାର୍ଗେ ଶ୍ୱାପଦଙ୍କୁ କ୍ରନ୍ଦନ କରି ଗଲେ ଜାଣ ଇକ୍ଷ୍ୱାକୁସିଂହ ।
କ୍ରୁଦ୍ଧାଗ୍ରେ ମାର ପନ୍ଥା ଅଟକିଣ ରହିଲି ଭୈରବାରାବ ସିଂହ ।

ହସ୍ତୀ ଅଗେ ଗମନ୍ତେ ତଦନୁଗ କରଣୀ ଯାନ୍ତି ଭୀତା ଅନେକ ।
କେବଣେ ଏ ଅଟ୍ଟହାସ ସ୍ଥିରହୁଅ ହରଣଦ୍ୱନ୍ଦ-ଲୀଳା ବଲୋକ । ୮୯ ।

ରାମ—କଣ ଏ କୋଳାହଳ ଶୁଭୁଅଛି ? ବୋଧହୁଏ ମଦୀୟ ପରିଜନମାନେ ଅନ୍ୱେଷଣାର୍ଥ ଆସୁଅଛନ୍ତି ।

ପିଙ୍ଗଳ—ଆପଣ ଠିକ୍ ଅନୁମାନ କରୁଅଛନ୍ତି—ଏଇ ଦେଖନ୍ତୁ—

ଶାର୍ଦ୍ଦୂଲବିକ୍ରୀଡ଼ିତ ବୃତ୍ତ ।

କ୍ଷ୍ୱେଳାରବକୁ ସିଂହଗର୍ଜନ ମଣି ବ୍ୟାପେ ଦ୍ୱିପେ ଧାଇଁଲେ ।
ଫୀତ୍କାର-ଦ୍ରୁତ-ଭକ୍ଷୁକଙ୍କୁ କପିଏ ଭ୍ରୂଭଙ୍ଗରେ ଗୃହିଁଲେ ।
କ୍ରନ୍ଦାକ୍ଷୁଣ୍ଣ-ତରକ୍ଷୁପୋତ ମୁଖରୁ କ୍ଷୌଣୀ ପରେ ବର୍ଜିଲା ।
ବାଘ୍ରଗ୍ଲାନୁଗ ରୋହିତା ସୁଖଭରେ ତାହାକୁ ଆଘ୍ରାଣିଲା । ୯୦ ।

କାଶ୍ୟପ—ତ୍ୱଦୀୟ ସ୍ୱଭାବୋକ୍ତି ଯଥାର୍ଥ ଅଟେ ।

ପିଙ୍ଗଳ—ବୟସ୍ୟ ! ଆପଣ ଅହର ମୃଗୟାରେ ପ୍ରବର୍ତ୍ତି ଅଛନ୍ତି ! ଏଣେ ସମୟ ଅତିକ୍ରାନ୍ତ ହେଲଣି ।

ରାମ —(ସର୍ବତଃ ଦୃଷ୍ଟି ନିକ୍ଷେପି) ଅହୋ ! ହବସର ଯୌବନାରମ୍ଭ ଅସି ଉପସ୍ଥିତ ହେଲଣି ତ !

ସ୍ରଗ୍ଧରା ବୃତ୍ତ ।

ଛାୟା ବୃକ୍ଷାଙ୍ଘ୍ରି ସେବା ପଥିକଜନଚୟ ସନ୍ତାପନାଶାର୍ଥ ବାଞ୍ଛେ ।
ହକ୍ତ ଜାଲୋକନାର୍ଥେ ଗଜପତି ବସିଲେ ବ୍ୟୋମମଧ୍ୟସ୍ଥ ମଞ୍ଚେ ।

ତୃଷ୍ଣାର୍ତ୍ତ୍ତି କୋକଳାଙ୍କୁ ପ୍ରିୟ କଶଳ ଦଏ ସେ ନ ଗୃହ୍ନେଁ ବରକ୍ତେ ।
କ୍ଲାନ୍ତା କାନ୍ତାଙ୍କୁ ଶାନ୍ତା କରଇ ମଂଧୁପ ତା ସୂକ୍ଷ୍ମପକ୍ଷୋତ୍ଥବାତେ ॥

ଅଧ ଶୀଘ୍ର ଶିବରକୁ ବାହାରଯିବା ।

( ସମସ୍ତେ ନଷ୍କ୍ରାନ୍ତ )

ତୃତୀୟ ଅଙ୍କ ସମ୍ପୂର୍ଣ୍ଣ ।



# ଚତୁର୍ଥ ଅଙ୍କ ।



ଗନ୍ଧର୍ବ ପ୍ରବେଶ ।

ଗନ୍ଧର୍ବ—ଆତ୍ମନା —

ଅଶ୍ୱଗତି ବୃତ୍ତ ।

ତାଟକକାକୁ ସୁବାହୁ କବନ୍ଧକୁ ସୈନ୍ୟ ତୁଲେ
ରାମ ବିନାଶି ପଠାଇଅଛନ୍ତି ମହୀସ୍ଥ ପୁରେ ।
ଏହି କୃତାନ୍ତ-ଉଦନ୍ତକୁ ଇନ୍ଦ୍ର ମନେ ମଣିଲେ
ଦାନବନାଶନ-ନାଟକ ଆମୁଖ ଯନ୍ତ୍ର ଭଲେ । ୧ ।

ଅତଏବ ସେହି ସୁରନିକର-ଶିରୋରତ୍ନ ମଣ୍ଡିତ-କାଞ୍ଚନ୍ତିତ-ପଦାବ୍ଜ ମହାରାଜ ମହେନ୍ଦ୍ର ଏତାକୃ ସନ୍ତୁଷ୍ଟଚିତ୍ତରେ ମୋତେ ଆଦେଶ କରିଅଛନ୍ତି କି, "ହେ ଚିତ୍ରାଙ୍ଗଦ ! ସମ୍ପ୍ରତି କୁମ୍ଭକର୍ଣ୍ଣାଗ୍ରଜ ନିଜଜନ ବିନାଶ ଶ୍ରବଣରେ କିଣ ଅବା ଉପାୟବିଧାନ କରୁଅଛି, ତୁମ୍ଭେ ଲଙ୍କାପୁରକୁ ଯାଇ ଅଚିରେ ତାହା ବୁଝି ଆସିବ ।" (ବିସ୍ତାରପୂର୍ବକ)

ଅନୁଷ୍ଟୁପ୍ ବୃତ୍ତ ।

ରାମଙ୍କ ପ୍ରତି ଇନ୍ଦ୍ରଙ୍କ ଯାବତ ପକ୍ଷପାତିତା ।
ତଦପେକ୍ଷା ଗୁରୁ ଦ୍ୱେଷ ଜନ୍ମିଲା ଦାନବେଶ୍ୱରେ । ୨ ।

ଅଚ୍ଛା ହେଉ, ତାହାହିଁ କରିବ । ବର୍ତ୍ତମାନ ମୁଁ ମାୟିକ ରାକ୍ଷସ ବେଶ ଗ୍ରହଣରେ ଚତୁର୍ଦ୍ଦିଗରୁ ଉଦ୍ଭଟ ଦନୁଜ-ଭଟପରିରକ୍ଷିତା ରାକ୍ଷସରାଜଧାନୀରେ ନିଃଶଙ୍କରେ ପ୍ରବେଶ କରୁଅଛି । (ପୁରୋଭାଗକୁ ଚାହିଁ ) ସେହି ରାକ୍ଷସୀଟା ପୁଣି କିଏ ? ମୋ ଆଡ଼କୁ ତ ଆସୁଅଛି !

ସ୍ରଗ୍ଧରା ବୃତ୍ତ ।

ଚକ୍ଷୁଣ୍ଟେ ମାତ୍ର ତାହା କପିଳତର ଶିଖା ନାଗରୀ ପ୍ରାୟ କୁକ୍ଷି,
ଅତ୍ୟୁଚ୍ଚଧାର ଏକ ସ୍ତନ କୃଶ ଅପର ସ୍ଥୂଳ ଉଷ୍ଟ୍ରାସ୍ୟ ଅକ୍ଷି ।
ଯେଉଁଠି ହସ୍ତାଙ୍ଘ୍ରି ତେଉଁଠି ଚରଣ ଅଜଗର ପ୍ରାୟ ବାହା ଅନାସ୍ଥା,
ଆହା ! ତା ରହିଭୂଷାନ-ଚୟ ଲଭୁଛି ଦୁଃସ୍ଥାନଶୋଚ୍ୟା ଅବସ୍ଥା ॥

ରାକ୍ଷସୀର ପ୍ରବେଶ ।

ରାକ୍ଷସୀ—(ଚନ୍ଦ୍ରାଙ୍ଗଦ ପ୍ରତି) ଭଦ୍ର ! ତୁମ୍ଭେ କିଏ ? କରାଳକ ? ଅଥବା ଅନ୍ୟ କେହି ଅଟ ?

ଗନ୍ଧର୍ବ—(ସ୍ୱଗତ) ଏହା ସଙ୍ଗେ ମୋର କଥା ହେବାର ସୂତ୍ର-ପାତ ଏ ତ ଅପେ-କରୁଅଛି, ଭଲ ହେଲା । (ପ୍ରକାଶତଃ) ମୋତେ କରାଳ ବୋଲି ମନେ କର ।

ରାକ୍ଷସୀ—( ସାଶ୍ଚର୍ଯ୍ୟ ) ତୁମ୍ଭେ ନଷ୍ଟେ ପାଷାଣ ପ୍ରାୟ ଯେ ! ଆହା ! ତୁମ୍ଭ ଘରଣୀ ଗୃଧ୍ରମୁଖୀ ସମଦୁଃଖିନୀ ସାଶ୍ରୁନୟନା ରାକ୍ଷସୀମାନଙ୍କ ମଧ୍ୟରେ "ମୋ ପତି ରାମବାଣରେ ନିହତ ହେଲେ, ମୁଁ କଣ କରିବି" ଏହା ବିଳାପ କରି ବକ୍ଷ-ସ୍ତାଡ଼ନପୂର୍ବକ ଅଦ୍ୟାପି କାନ୍ଦୁଅଛି ।

ଚନ୍ଦ୍ରକ—(ସ୍ୱଗତ) ଜଣାଗଲା । ଗୃଧ୍ରମୁଖୀ କଙ୍କାଳର ଭାର୍ଯ୍ୟା, ତା ପକ୍ଷେ କାନ୍ଦିବା ଉଚିତ ଅଟେ । (ପ୍ରକାଶତଃ) ଏ ସମ୍ବାଦ ତାହାକୁ କିଏ କହିଲା ?

ରାକ୍ଷସୀ—ଆର୍ଯ୍ୟ ମାରୀଚ ମହାରାଜ ରାବଣଙ୍କୁ ଅବ ଦେଖି ନ ପାର ତାହାଙ୍କର ମନ୍ତ୍ରୀ ପ୍ରହସ୍ତ ପ୍ରଭୃତିଙ୍କୁ "ନିଜ ଜନନୀ ତାଟକା ଓ ସୁବାହୁ ଆଉ ତଦାସ୍ତ୍ର ମିତ୍ର କଙ୍କାଳ ଏମାନେ ଏକମାତ୍ର ରାମଚନ୍ଦ୍ରଦ୍ୱାରା ନିହତ ହେଲେ" ଏହା କହି ମାତୃବିନାଶଦୁଃଖରେ ତପସ୍ୟାର୍ଥେ ଗୋକର୍ଣ୍ଣ କ୍ଷେତ୍ରକୁ ବାହାରିଗଲେ । ତା ପରେ କ୍ରମଶଃ ସମସ୍ତେ ଏହି ବୃତ୍ତାନ୍ତ ଅବଗତ ହେଲେ ।

ଚନ୍ଦ୍ରକ—ଲଙ୍କାପତି ସ୍ୱସ୍ଥାନରେ ନାହାନ୍ତି କି ?

ରାକ୍ଷସୀ—ବର୍ତ୍ତମାନ ସେ ନାହାନ୍ତି । ସେ ଗୃହରେ ନ ଥିବାରୁ "ଆର୍ଯ୍ୟପୁତ୍ର କେଉଁଠାକୁ ଗଲେ ? ବିଦ୍ୟୁଜ୍ଜିହ୍ୱଙ୍କ ଗୃହକୁ ଯାଇ ବୁଝି ଆସ" ଏହା କହି ଦେବୀ ମନ୍ଦୋଦରୀ ମୋତେ ପଠାଇଅଛନ୍ତି । ମୁଁ ସେଠାକୁ ଯାଇଥିଲି । ବିଦ୍ୟୁଜ୍ଜିହ୍ୱଙ୍କୁ ଦେଖି ପାରିଲି ନାହିଁ । କିନ୍ତୁ ତାହାଙ୍କ ଭାର୍ଯ୍ୟା ମାୟାବତୀ ଗୋଟିଏ କଥା କହିଲେ ।

ଚନ୍ଦ୍ରକ—କଣ ତାହା କହ ତ ?

ରାକ୍ଷସୀ—ତାହା ଅତି ଗୋପନୀୟ, କିପରି କହିବି ? ଅଥବା ଏହିଠାରେ ଜନକ ରାଜାର ପକ୍ଷପାତୀ କେହି ନାହାନ୍ତି ? ଅନ୍ୟ ଦ୍ୱୀପରେ ସିନା ତାହାର ନିବାସ । ତେଣୁ କହି ପାରେ । ଶୁଣିବା ହେଉନ୍ତୁ । ରାବଣ ମାୟାବଳରେ

ରାମବେଶ ଗ୍ରହଣପୂର୍ବକ ବିଶ୍ୱାମିତ୍ରବେଶଧାରୀ ବହ୍ୟକ୍ତିଙ୍କ
ଓ ଲକ୍ଷ୍ମଣବେଶଧାରୀ ସାରଣଙ୍କୁ ସଙ୍ଗେ ଧରି ଜାନକୀର
ପାଣିଗ୍ରହଣାର୍ଥ ଜନକରାଜଙ୍କୁ ବଞ୍ଚନା କରିବାକୁ ଯାଇ-
ଅଛନ୍ତି ।

ଗନ୍ଧର୍ବ—ତୁମ୍ଭେ କହିବା ଯଥାର୍ଥ ହୋଇଥିବ । ଶ୍ରୀରାମଙ୍କ ପ୍ରତି
ଜନକନନ୍ଦିନୀଙ୍କର ଗୂଢ଼ତର ଅଭିଳାଷ ଜନ୍ମିଅଛି
ବୋଲି ଲୋକରେ ମଧ୍ୟ ଖ୍ୟାତ ହୋଇଅଛି ।

ରାକ୍ଷସୀ—(ସହର୍ଷେ) ଯଦି ତୁମ୍ଭେ କହିଲ, ତେବେ ମୁଁ ପ୍ରଥମେ
ଯାଇ ଗୃଧ୍ରମୁଖୀଙ୍କୁ ଏହି ଶୁଭବାର୍ତ୍ତା କହି ପାରିତୋଷିକ
ଗ୍ରହଣ କରିବି ।

ଗନ୍ଧର୍ବ—ବିନା କାରଣରେ ଏ କିଣ ସନ୍ତୋଷ ? ମୁଁ କହିଲି
ନୁହେଁ, ଅନ୍ୟ କେହି ଜଣେ ।

ରାକ୍ଷସୀ—( ସନିର୍ବେଦେ ) କିଣ ! ସତେ କହିଲି ସେପରି
ହୋଇଗଲା ?

ଗନ୍ଧର୍ବ—ଏଥିରେ କୌଣସି ସନ୍ଦେହ ନାହିଁ ।

ରାକ୍ଷସୀ—ତେବେ ମୋର ଆଶା ବିଫଳ ହୋଇଗଲା ଯେ !
ଆଛା, ତୁମ୍ଭେ ଅନ୍ୟ ଲୋକ କିଏ ?

ଗନ୍ଧର୍ବ—ବିଭୀଷଣଙ୍କର ଅନୁଚର ।

ରାକ୍ଷସୀ—ତେବେ ମୁଁ ମନ୍ଦୋଦରୀଙ୍କର ଆଜ୍ଞାପାଳନାର୍ଥ ତାହାଙ୍କ
ଛାମୁକୁ ଯାଉଅଛି ।

( ନିଷ୍କ୍ରାନ୍ତ )

ଗନ୍ଧର୍ବ—ମୁଁ ମଧ୍ୟ ଯାଇ ସ୍ମରଣୀୟ ବୃତ୍ତାନ୍ତ ପ୍ରଥମତଃ ଜନକ-ରାଜାଙ୍କୁ ଜଣାଇ ଦେଇ ପଶ୍ଚାତ୍ ମହାରାଜ ଦେବେନ୍ଦ୍ରଙ୍କ ନିବେଦନ କରିବ ।

(ନିଷ୍କ୍ରାନ୍ତ)

ଇତି ବିଷ୍କମ୍ଭ ।

---

ତଦନନ୍ତର ଜନକରାଜ ଓ ଶତାନନ୍ଦଙ୍କର ପ୍ରବେଶ ।

ଜନକ—

ବସନ୍ତ ତିଲକ ବୃତ୍ତ ।

କନ୍ୟା ନ ମାଗୁଣ ନିଶାଚରଚକ୍ରବର୍ତ୍ତୀ
ରାମେ ପ୍ରଦତ୍ତ କରିବାକୁ ତ ଚରବୃତ୍ତି ।
ନିଷ୍ଫଳ କୌଶିକ ଅବା କରିବେ କି ତୂର୍ଣ୍ଣ
ଏହା ମୁଁ ଭାବିଣ ଅହର୍ନିଶ ଦୁଃଖ-ଶୀର୍ଣ୍ଣ । ୪ ।

ଶତାନନ୍ଦ—ମହାରାଜ ! ଏତାଦୃଶ ବିଷୟରେ ଦୁଃଖିତ ହୁଅନ୍ତୁ ନା । ସେହି କୁଶିକବଂଶାବ୍ଧି-ପାରିଜାତ ମହର୍ଷି ଭଗବାନ୍ ବିଶ୍ୱାମିତ୍ରଙ୍କର ପ୍ରଭାବ ଆପଣ କି ଜାଣି ନାହାନ୍ତି ?

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ନିର୍ବିଘ୍ନେ ତପବହ୍ନିହେତିନିକରେ ସଂତପ୍ତ ସଂହ୍ୟାବିତ
ସ୍ୱୀୟ କ୍ଷାତ୍ର ସୁଧର୍ମ-ହେମ କରିଲେ ବ୍ରାହ୍ମଣ୍ୟ-ଭୂଷା ଶତ ।
ଅନ୍ୟ ସ୍ୱର୍ଗର କଳ୍ପଣା ଶୁଣି ଭୟେ ସଂପ୍ରାର୍ଥନାରେ ରତ-
ଦେବାଳୀ-କରସଂପୁଟାମ୍ବୁଜକଳିକା-ଶୀତାଂଶୁ ସେ ନିଷ୍ଠିତ । ୫ ।

ସେହି ମହାତ୍ମାଙ୍କୁ ଲୋକରେ କେହି ଅବା ଜାଣି ନାହାନ୍ତି ? ଅତଏବ ସୀତା ରାମ ଦୁହିଙ୍କର ବୈବାହିକ ସଂଘଟନ ନିଷ୍ପନ୍ନ ହେଲେ ରାବଣ କଣ ଅବା ବିପତ୍ତି ଘଟାଇବ, ଏହା ଭାବି ଆମ୍ଭେମାନେ ଶଙ୍କାକୁଳିତ ହେବା ଅନାବଶ୍ୟକ । ଯେହେତୁ—

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ବନ୍ଧିମିଏ ରଘୂତ୍ତମଙ୍କୁ କରିଲେ ଦୁର୍ଦ୍ଧର୍ଷ ବାଗ୍ଗ୍ରଣୀ
ପ୍ରେମେ ମନ୍ତ୍ରସମେତ ଜୃମ୍ଭକ ମହାଶସ୍ତ୍ରାଦି ଦାନେ ପୁଣି ।
ତ୍ରୈଲୋକ୍ୟାଭ୍ଭବ-ପ୍ରଦାନନିରତପ୍ରୋଚ୍ଚଣ୍ଡଦୋଃସ୍ତମ୍ଭ ସେ
ଦୈତ୍ୟାଧୀଶ୍ୱରନାଶନେ ସୁକୁଶଳ ଶ୍ରୀରାମ ନିଃସାଧ୍ୱସେ । ୬ ।

ତଦନନ୍ତର କୌଶିକ ଓ ଲକ୍ଷ୍ମଣଙ୍କ ବେଶଧାରୀ ବିଦ୍ୟୁଜ୍ଜିହ୍ୱ ଓ ସାରଣର ସଙ୍ଗେ ରାମବେଶଧାରୀ ରାବଣର ପ୍ରବେଶ ।

ରାବଣ—

ବସନ୍ତତିଳକ ବୃତ୍ତ ।

ମାରୀଚ ଅବର ସୁବାହୁ ସୁକେତୁ ବତ୍ସା
ନଷ୍ଟେ ତ କାର୍ଯ୍ୟ କରିବେ ପୁର ମୋର ଇଚ୍ଛା ।
ସୀତାବିବାହକୁ ମୁଁ ଯେ ଧୃତ-ରାମବେଶ
ମୋ ଚିତ୍ତ ସୁସ୍ଥିର ନୁହେଁଟି ତଥାପି ଲେଶ । ୭ ।

ବିଦ୍ୟୁଜ୍ଜିହ୍ୱ— ମହାରାଜ ! ବିନାବସରରେ ଅପଣ କାହିଁକି କାତର ହେଉଅଛନ୍ତି ?

ସ୍ରଗ୍ଧରା ବୃତ୍ତ ।

ସୀତା ତୁମ୍ଭଙ୍କୁ ମେଘଦ୍ୟୁତି କରଯୁଗଳ-ନ୍ୟସ୍ତକୋଦଣ୍ଡବାଣ
ମୁଗ୍ଧାମ୍ଭୋଜାକ୍ଷ ଦେଖି ପ୍ରମୁଦିତହୃଦୟେ ରାମ ଏ ଭାବ ଭର୍ତ୍ତା ।
ସୌପର୍ଣ୍ଣାଶ୍ମାଳି ଦୂର୍ବାଦଳ ସୁକୋମଳଦ୍ୟେ ଚନ୍ଦ୍ରହାରପ୍ରକାର-
ବାନପ୍ରଷ୍ଟପ୍ରସୂନ ସ୍ରଗକୁ ତବ ଗଳେ ଦେବ ଲୋକୈକବୀର ।୮।

ରାବଣ—ବଦ୍ଧ୍ୟଞ୍ଜଳିହୁ ! ବର୍ତ୍ତମାନ ମୁଁ ଏତେଦୂର ପ୍ରାର୍ଥନା କରୁ
ନାହିଁ ।

ବସନ୍ତତିଲକ ବୃତ୍ତ ।

ବେଣୀ ବଲ୍ଲେକଅଷ୍ଟ କାଞ୍ଚନ ଅଙ୍ଗୁରୀୟ-
ଶୋଭିଷ୍ଣୁତାମ୍ରରୁଚି ହସ୍ତ ସୁଦର୍ଶନୀୟ ।
ଇଚ୍ଛା ହୁଏ ହରଣଶାବକଲୋଚନାର
ଅଙ୍ଗୁଳିକୁବାକୁ ନଖିଳାଙ୍ଗ ସୁଦାସ୍ତ୍ରେ ପୂର । ୯ ।

ସାରଣ—

ପୃଥ୍ୱୀ ବୃତ୍ତ ।

ପ୍ରସୂନ-ବିଶିଖ-ପ୍ରିୟାଧିକମନୋହରା ଅଗରେ
ଧର ପ୍ରସବମାଳିକା ଉପଗତା ଯଦା ରାଗରେ ।
କୃତାର୍ଥ ହୁଇ ଆଖି ଆଚରଣମସ୍ତକାଲୋକନେ
କରନ୍ତୁ, କରବେ ଗୃହେ ନୟନମାଳିକା ସୂକ୍ଷଣେ । ୧୦ ।

ରାବଣ—(ଦୃଷ୍ଟି ନକ୍ଷେପି) ସମ୍ପ୍ରତି ଆମ୍ଭେମାନେ ଅସି ଜନକରାଜ
ନିବାସରେ ପ୍ରବିଷ୍ଟ ହେଲୁଁ ।

ଅନୁଷ୍ଟୁପ୍ ବୃତ୍ତ ।

ସୁବର୍ଣ୍ଣ କେତକୀପର୍ଣ୍ଣ-ସବର୍ଣ୍ଣା ଯବ ଜାନକୀ ।
ମହାଦେବ ଜଟାଜୂଟେ ଚନ୍ଦ୍ରରେଖା ପରି ଅଛି ।୧୧ ।

ପ୍ରତିହାରୀର ପ୍ରବେଶ ।

ପ୍ରତିହାରୀ—ମହାରାଜ ! ବିଜୟୀ ହୁଅନ୍ତୁ ।

ଜନକ—ଜୀମୂତକ ! କଣ କହିବାକୁ ଅଛି କହ ।

ପ୍ରତିହାରୀ—ମହାରାଜ ! ରାମ ଓ ଲକ୍ଷ୍ମଣଙ୍କୁ ସଙ୍ଗେ ଧରି ପୂଜ୍ୟପାଦ ବିଶ୍ୱାମିତ୍ର ସିଂହଦ୍ୱାରଠାରେ ଉପସ୍ଥିତ ଅଛନ୍ତି ।

ଜନକ—(ସହର୍ଷେ ବିନୟପୂର୍ବକ) ଭଗବନ୍ ଶତାନନ୍ଦ ! ଆପଣ ଯାଇ ସେହି ତ୍ରୈଲୋକ୍ୟବଳ୍ଳୋକସୃଷ୍ଟିକର୍ତ୍ତା ଭଗବାନ୍ ବିଶ୍ୱାମିତ୍ରଙ୍କୁ ତଥା ଚ ରାମ ଲକ୍ଷ୍ମଣ ଦୁହିଙ୍କୁ ଅର୍ଘ୍ୟାଦି ପ୍ରଦାନରେ ଯଥାଯୋଗ୍ୟ ପୂଜା କରି ଏଠାରେ ପ୍ରବେଶ କରାଇବା ହୁଅନ୍ତୁ ।

ଶତାନନ୍ଦ—ମହାରାଜଙ୍କର ଯେ ଆଜ୍ଞା । (ପ୍ରସ୍ଥାନ)

ଜନକ—ଏ କି ବିସ୍ମୟକର ବ୍ୟାପାର !

ଇନ୍ଦ୍ରବଜ୍ରା ବୃତ୍ତ ।

ରାମଙ୍କ ସଙ୍ଗେ କୁଶିକାତ୍ମଜ ଇନ୍ଦ୍ର
ହେବାରୁ ମୋ ଗେହ ସମାଜବନ୍ଦ୍ର ।
ପ୍ରୋଷ୍ଠୀ ସମାଗ୍ରକଲିତ-ଜାଲ-ପଦ୍ମ
ପ୍ରାପ୍ନୋତି କମ୍ପା ଚଞ୍ଚଳ ବୁଦ୍ଧିସଦ୍ମ । ୧୨ ।

ଅତଃପର ରାମ ଲକ୍ଷ୍ମଣ ଓ କୌଶିକଙ୍କର ବେଶଧାରୀ ରାବଣ ଓ ବଦ୍ଧ୍ୟକ୍ଷିହ୍ୱଙ୍କ ସହିତ ଶତାନନ୍ଦଙ୍କର ପ୍ରବେଶ ।

ଶତାନନ୍ଦ—ଏଇ ଦେଖନ୍ତୁ, ବିଶ୍ୱାମିତ୍ର ପ୍ରଭୃତି ଅବ ଉପସ୍ଥିତ ହେଲେ । (ଏହା କହି ବଦ୍ଧ୍ୟକହ୍ୱ ପ୍ରଭୃତିଙ୍କୁ ଦେଖାଇ-ଦେବା )

ଜନକ—( ଅଭ୍ୟୁତ୍ଥାନପୂର୍ବକ ) ଭଗବନ୍ ବିଶ୍ୱାମିତ୍ର ! ମୁଁ ବିଦେହାଧିପ ନମସ୍କାର କରୁଅଛି ।

ବଦ୍ଧ୍ୟକ୍ଷିହ୍ୱ—ମହାରାଜ ! ଆପଣଙ୍କର ମଙ୍ଗଳ ହେଉ ।

ସାରଣ—(ରାବଣ ପ୍ରତି ରହସ୍ୟରେ)

ଅନୁଷ୍ଟୁପ୍ ବୃତ୍ତ ।

ଆପେ ମଙ୍ଗଳ ଏହାଙ୍କ ଅଧୀନ ହେବ ଆପଣ ।
ବିବାହ କର ସୀତାକୁ ଜାମାତା ଯେଣୁ ହୋଇବେ । ୧୩ ।

ରାବଣ—(ସାନନ୍ଦେ) ହଁ, ତାହା ନୁହେ ଆଉ କଣ ?

ବଦ୍ଧ୍ୟକ୍ଷିହ୍ୱ—(ଜନକଙ୍କୁ ନମସ୍କାରକରଣାର୍ଥ ରାବଣକୁ ଭୃସଙ୍କେତେ ଜଣାଇବା )

ରାବଣ—(ସାରଣ ପ୍ରତି ରହସ୍ୟରେ)

ବସନ୍ତତିଳକ ବୃତ୍ତ ।

ମାନନ୍ତି ଯା ପ୍ରଣତତା ବିନୟାନୁରୋଧେ
ଦିଗ୍‌ପାଳଜାଳକ, ପୁଣି ପ୍ରଣୟାପରାଧେ

ମହୋଦଧିଙ୍କ ନ କରେ ପ୍ରଣିପାତ ଯେହୁ
ଏହା ପ୍ରଣାମକରଣେ ତ ବାଳକ୍କ ସେହୁ । ୧୪ ।

ସାରଣ—(ସ୍ୱଗତ) ଏହି ଦୁରହଙ୍କାର-ଗ୍ରନ୍ଥିଳ-ହୃଦୟର ସୀତା-
ପ୍ରାପ୍ତି ନିମନ୍ତେ ଏକାନ୍ତ ଅନିଶ୍ଚିତ ଅଟେ । ( ପ୍ରକାଶତଃ
ରହସ୍ୟରେ ) ମହାରାଜ ! ପ୍ରସ୍ତୁତ କାର୍ଯ୍ୟରେ ଆପଣ
ବିପରୀତ ଆଚରଣ କରିବା ବିଧେୟ ନହେ ।

ରାବଣ—ତାତ ! ମୁଁ ଦାଶରଥି ରାମ ନମସ୍କାର କରୁଅଛି ।

ସାରଣ—ତାତ ! ମୁଁ ଦାଶରଥି ଲକ୍ଷ୍ମଣ ନମସ୍କାର କରୁଅଛି ।

ଜନକ—ବତ୍ସ ! ତୁମ୍ଭେ ଦୁହେଁ ଦୀର୍ଘାୟୁ ହୁଅ ।

ଶତାନନ୍ଦ—ଭଗବନ୍ ଗାଧେୟ !

ଅନୁଷ୍ଟୁପ୍ ବୃତ୍ତ ।

ମର୍ଯ୍ୟାଦାଗ୍ରହ ଚେଷ୍ଟାରେ ଅନ୍ୟୋନ୍ୟ ତୁଲ୍ୟ ଏ ଦୁହେଁ ।
ଏହାଙ୍କ ମଧ୍ୟେ କେ ରାମ ସୁମିତ୍ରାପୁତ୍ର କେ କହ । ୧୫ ।

ବିଦ୍ୟୁଜ୍ଜିହ୍ୱ—(ସ୍ୱଗତ) କେହି ନୁହେ । (ପ୍ରକାଶତଃ)

ବସନ୍ତତିଳକ ବୃତ୍ତ ।

ପ୍ରତ୍ୟଗ୍ରନୀରଦ-ମନୋହର ଏହି ରାମ
ବାସ୍ତ୍ରାକ୍ଷି ଯେ ଅବରଜେ କର ବନ୍ଦ୍ୟମାନ ।
ସମୁଗ୍ର ଦଗ୍ଧକନକାଭଶରୀର ସେହି
ସୌମିତ୍ରି ଅଗ୍ରଜପଦେ କୃତ-ଭକ୍ତି ଯେହୁ । ୧୬ ।

ରାବଣ—( ସାରଣ ପ୍ରତି ରହସ୍ୟରେ ) କନ୍ୟାର ଆନୟନରେ
ଜନକରାଜ ଆଉ କାହାଁକୁ ବିଳମ୍ବ କରୁଅଛନ୍ତି ?

ସାରଣ—(ସ୍ୱଗତ) ଅହୋ ! ଏହି ମୂର୍ଖଜନମୂର୍ଦ୍ଧନ୍ୟର କଣ ଏ
ଉଗ୍ର ଜଡ଼ତା ! ଏ ତ ଏହିକ୍ଷଣି ଜନକଙ୍କୁ ଦେଖିଅଛି,
ଏବେହେଁବଡ଼ ଉଦ୍ବେଗ କାହିଁକି ? (ପ୍ରକାଶତଃ) ମହାରାଜ
କ୍ଷଣମାତ୍ର ସହ୍ୟ କରନ୍ତୁ ।

ଶତାନନ୍ଦ—ଭଗବନ୍ କୌଶିକ !

ରାବଣ—(ଅସହନରେ ସଉପହାସ୍ୟ) ।

ଇନ୍ଦ୍ରବଜ୍ରା ବୃତ୍ତ ।

ହାବେ ମୁଁ ସେ ତାପସ ଆସୁ ଆସୁ
ହେବାରୁ ମାଗ୍ରତ-ବଢ଼ାଉତାସୁ ।
ମାହୃାବଳେ ଏହି ତପୀସ୍ୱ-କାମ୍ୟ
ସମ୍ଭାବନା କୌଶିକ ନାମଧେୟ । ୧୭ ।

ସାରଣ—(ରହସ୍ୟତଃ) ଅତଏବ ଜାନକୀର ପାଣିଗ୍ରହଣ ମଧ
ସୁକର ହେବ ।

ଶତାନନ୍ଦ—

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

କଷ୍ଟେ କ୍ଷତ୍ରିସହସ୍ରହାସୃନବଯଃକାଳାତପାତାନ୍ତରେ
ପୁତ୍ରପ୍ରାପ୍ତି-ତପଃକ୍ରିୟାନୁରତ ଯେ ଆଜଙ୍କର କ୍ଷେମରେ ।
ଲୋକାତୀତ ଗୁଣାଢ୍ୟ ଗୃହ ତନୟେ ଶାନ୍ତେଶଯଜ୍ଞାନ୍ତରେ
ହେଲେ ଉଦ୍ଭବ ବୋଲି ମାନସ ହୁଏ ଉଦ୍ବେଳ ଆନନ୍ଦରେ ।

ବିଦ୍ୟୁଜ୍ଜିହ୍ୱ—(ସ୍ୱଗତ) ଏ ତ ଅହଲ୍ୟାର ପୁତ୍ର । ଅରେ—

ଅନୁଷ୍ଟୁପ୍ ବୃତ୍ତ ।

ମାର୍ଗେ ରାମକୁ ମାରୀଚ ସଂହାର କରିବା ଶୁଣି
ଦୁଃଖ ପାଇବୁ ତା ଜନ୍ମ ଲଭିଲପ୍ରାୟ ଶେଷକୁ । ୧୯ ।

(ପ୍ରକାଶତଃ) ଆପଣମାନଙ୍କର କେବଳ ଆନନ୍ଦ ଜନ୍ମେ
ଏହା ନୁହେ, ତାହା ସମଗ୍ର ଜଗତର ଘଟିଅଛି ।

ରାବଣ—( ରହସ୍ୟରେ ) ସାରଣ ! ଜାନକୀ ସହିତ ମୋର
ବିବାହ ହେବ, ଏପରି ସୁଧା-ସହୋଦର ବଚନ ତୁମ୍ଭେ
କହୁଅଛ; କିନ୍ତୁ ସେହି ସାନୁଗ ବିଶ୍ୱାମିତ୍ରର ପୁନରାଗମନ
ଅନ୍ତରାୟ ତାଟକାର ସାଧ ହେବ କି ନା—ଏହା ଭାବି
ମୋର ମନ ଉଦ୍ବିଗ୍ନ ହୁଏ । (ବିଚାରପୂର୍ବକ)

ସ୍ରଗ୍ଧରା ବୃତ୍ତ ।

“ବତ୍ସ ! ସ୍ୱଳ୍ପାୟୁ ମର୍ତ୍ତ୍ୟେ ଅହିତ କରୁ ବୃଥା
କହିଲେ ଶୋ ଯୁଯୁତ୍ସା
ତେଜୋବଦ୍ଦେବବୃନ୍ଦେ ସମର କର ଭଲେ
ସାବଲେପେ ଯଥେଚ୍ଛା ।”
ତେବେ ଏ ନାରଦାଙ୍କ ନ ଶୁଣି ଅଜସୁତେ
ହୋଇଥାନ୍ତେ ମୁଁ ହନ୍ତା,
କନ୍ଦନ୍ତା ରାମ କେତେ ଜନକନୃପସୁତା
ସ୍ନେହ କେତେ ହୁଅନ୍ତା । ୨୦ ।

ସାରଣ—(ରହସ୍ୟରେ) ଆପଣ ନାରଦଙ୍କ ବଚନରେ ମନୁଷ୍ୟ-
ମାନଙ୍କ ସହ ଯୁଦ୍ଧ କରିବାର ତ୍ୟାଗ କରି ଦେଇଥିବାରୁ
ଦଶରଥଙ୍କୁ ମୁକ୍ତ କରି ଦେଇଅଛନ୍ତି, ଏହା ତ ଉପଯୁକ୍ତ
ହେଲା, ତେବେ ଶ୍ରବଣ କରନ୍ତୁ ଯେ—

ସ୍ରଗ୍ଧରା ବୃତ୍ତ ।

ପୂର୍ବେ ଗାଢ଼ ତପସ୍ୟା କରି ପଶୁପତିସନ୍ତୋଷଣେ ଲୋକଇଡ଼୍ୟ
ଦିବ୍ୟାଶ୍ଚର୍ଯ୍ୟାସ୍ତ୍ରମନ୍ତ୍ରପ୍ରକର ଲଭିଣ ଦୁର୍ଦାନ୍ତ ଦୋର୍ବିକ୍ରମାଢ଼୍ୟ
ସର୍ବକ୍ଷତ୍ରାନ୍ତକାରୀ ଭୃଗୁମୁନିସୁତ ଦୁର୍ଦ୍ଧର୍ଷ ବୀରାଗ୍ର୍ୟ ହୋଇ
ଦୈତ୍ୟାରି-ବ୍ୟକ୍ତତେଜା ଅଜତନୟକୁ ସଂଧାଇଲେ ନାହିଁ କେହି।

ରାବଣ—(ଅନତିକ୍ରୋଧାତ୍ମ ସହ ରହସ୍ୟରେ) ବର୍ତ୍ତମାନ ତୁମ୍ଭେ
ସମ୍ୟକ୍ ସ୍ମରଣ କରାଇଅଛ । ମଦୀୟ ଏହି ପ୍ରିୟ ସୁହୃଦଙ୍କ-
ଦ୍ୱାରା ସପୁତ୍ରଗଣ ଦଶରଥଙ୍କୁ ନଷ୍ଟ ନିହତ କରାଇବି ।

ସାରଣ—(ରହସ୍ୟରେ) ଯଦିଚ ବିଶ୍ୱାମିତ୍ର ଓ ରାମଚନ୍ଦ୍ର ତାଙ୍କୁ
ପ୍ରକୃତ କର୍ତ୍ତୃକ ନିହତ ନ ହୁଅନ୍ତି, ତେବେ ତାହାହିଁ
କରିବାକୁ ହେବ ।

ଜନକ—ଭଗବନ୍ କୁଶିକଜଳଧିପାରିଜାତ !

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ହେଲା ଉତ୍ସବ କର୍ଣ୍ଣଯୁଗ୍ମର ପୁରା ଅଙ୍କଙ୍କ ପୁତ୍ରୋଦୟେ
ବାରମ୍ବାର ବିଲୋକିବାରୁ ଅଧୁନା ତା ପ୍ରାପ୍ତ ନେତ୍ରଦ୍ୱୟେ ।
ଶ୍ରୀରାମଙ୍କ ତୁଲେ ବିବାହ ପୁଣି ମୋ ପୁତ୍ରୀର ହେଲେ ଶୁଭେ :
ନିଷ୍ଟେ ମଜ୍ଜିବ ମୋର ମାନସ ତଥା ମୋ ବଂଶ ନିତ୍ୟୋତ୍ସବେ ।

ସଂପ୍ରତି ଆପଣ ଯଜ୍ଞଦୀକ୍ଷାରେ ପ୍ରବିଷ୍ଟ ହୁଅନ୍ତୁ । ଆମ୍ଭେମାନେ ମଧ୍ୟ ବତ୍ସା ସୀତାର ବିବାହସଂକ୍ରାନ୍ତ ମଙ୍ଗଳ ଆୟୋଜନମାନ ଆରମ୍ଭ କରିବୁଁ ।

ସାରଣ—( ରାବଣ ପ୍ରତି ରହସ୍ୟରେ ) ବିବାହ ହେଲେ ନିଃସନ୍ଦେହ ହେବ, ଏହା ଆପଣ ମଧ୍ୟ କହିଅଛନ୍ତି ।

ରାବଣ—ଏଥିରେ ସନ୍ଦେହ ନାହିଁ ।

ବିଦ୍ୟୁଜ୍ଜିହ୍ୱ—(ରହସ୍ୟତଃ) ଏପରି କଣ ଆସି ଉପସ୍ଥିତ ହେଲା ! ଅଚ୍ଛା ହେଉ ଦୋଷ କଣ ? ଯଦିଚ ବର୍ଣ୍ଣିତ ରାକ୍ଷସମାନଙ୍କ କର୍ତ୍ତୃକ ନିହତ ହୁଏ, ତେବେ ଏ ସମସ୍ତ ସୁଘଟ ହୋଇ ପାରିବ । ତାହା ନ ହେଲେ ଆମ୍ଭମାନଙ୍କୁ ଅନ୍ତର୍ଦ୍ଧାନ ହେବାକୁ ହେବ ।

ରାବଣ—ମୋର ମଧ୍ୟ ସେହି ବିଚାର ।

ଶତାନନ୍ଦ—ମହାରାଜ ! ଲକ୍ଷ୍ମଣଙ୍କୁ ଉର୍ମିଳାଙ୍କୁ ପ୍ରଦାନ କରିବା କର୍ତ୍ତବ୍ୟ ।

ବିଦ୍ୟୁଜ୍ଜିହ୍ୱ—( ରହସ୍ୟରେ ) ସାରଣ ! ତୁମ୍ଭର ଆଗମନ ମଧ୍ୟ ସଫଳ ହେବ; କିନ୍ତୁ ମଦାଗମନ ନିଷ୍ଫଳ ହେବାର ।

ସାରଣ—(ରହସ୍ୟରେ)

ରଥୋଦ୍ଧତା ବୃତ୍ତ ।

ଶିଷ୍ୟବୃନ୍ଦ ସୁତବୃନ୍ଦ ସଙ୍ଗତେ
କୈଶିକୀଗଣକୁ ଅଣି ଭକ୍ତିତେ ।

ହେବ କୌଶିକ-କଳଙ୍କ ସାମ୍ପ୍ରତେ
ତୁମ୍ଭ ଯଜ୍ଞ-ସହଧର୍ମିଣୀ ସତେ । ୨୩ ।

ବିଦ୍ୟୁଜ୍ଜିହ୍ୱ—(ରହସ୍ୟରେ) ସାରଣ ! ଜୃମ୍ଭାପତିତ୍ୱ ସ୍ଥାପନରେ ମୋ ପ୍ରତି ଅପହାସ କରୁଅଛ କାହିଁକି ?

ଜନକ—ଭଗବନ୍ ଶତାନନ୍ଦ ! କେବଳ ଏତକ ମାତ୍ର ନୁହେ, ତଥାଚ ମଦୀୟ ଅନୁଜ କୁଶଧ୍ୱଜ ମିଥିଳାରୁ କହି ପଠାଇ ଅଛନ୍ତି କି—

ଅନୁଷ୍ଟୁପ୍ ବୃତ୍ତ ।

ଭରତଙ୍କୁ ପ୍ରଦାତବ୍ୟା ମାଣ୍ଡବୀ ମଞ୍ଜୁଳଭାଷିଣୀ ।
ଶତ୍ରୁଘ୍ନଙ୍କ ପ୍ରଦାନାର୍ଥ ଶ୍ରୁତକୀର୍ତ୍ତି ସୁକୀର୍ତ୍ତିଦା (ମମାତ୍ମଜା) ।୨୪।

ରାବଣ—(ରହସ୍ୟରେ) ସାରଣ ! ମୁଁ ଅସମୀକ୍ଷ୍ୟକାରିତାବଶରୁ ଭରତ ଓ ଶତ୍ରୁଘ୍ନର ବେଶରେ ଆଉ ଦୁଇଜଣଙ୍କୁ ସଙ୍ଗେ ଆଣି ପାରିଲି ନାହିଁ; ତାହା ହେଲେ ଭଲ ହୋଇଥାନ୍ତା ।

ସାରଣ—(ରହସ୍ୟରେ) ଆଉ କଣ କହିବ ! ଉପସ୍ଥିତ ଥାଇ ମଧ୍ୟ ବିଦ୍ୟୁଜ୍ଜିହ୍ୱ କୌଶିକ ବେଶ ଗ୍ରହଣରୁ ହତାଶ ହେଲେ ।

ଶତାନନ୍ଦ—ଭଗବନ୍ ଗାଧେୟ ! ଭରତ ଓ ଶତ୍ରୁଘ୍ନଙ୍କ ସହିତ ଦଶରଥଙ୍କୁ ସଙ୍ଗେ ଆଣିଲେ ନାହିଁ କାହିଁକି ?

ସାରଣ—(ରହସ୍ୟରେ ରାବଣ ପ୍ରତି) ସପୁତ୍ରଦାର ଦଶରଥଙ୍କୁ ନିମନ୍ତ୍ରଣ କରି ଆଣିବା ନିମନ୍ତେ ବିଶ୍ୱାମିତ୍ର ଯାଇଅଛନ୍ତି

ବୋଲି ପୂର୍ବରୁ ମୁଁ କହିଅଛି; କିନ୍ତୁ ବିଦ୍ୟୁଜ୍ଜିହ୍ୱ ତଦନୁରୂପ ମନ୍ତ୍ରଣା କଲେ ନାହିଁ ।

ରାବଣ—(ରହସ୍ୟରେ) ଯେ ଯାହା ହେଉ, ବର୍ତ୍ତମାନ ସୀତା ଦର୍ଶନାର୍ଥ ପ୍ରଯତ୍ନ କର ।

ବିଦ୍ୟୁଜ୍ଜିହ୍ୱ—ସପୁତ୍ରଦାର ଦଶରଥ ମାର୍ଗରେ ବିଶ୍ରାମାର୍ଥ ବିଳମ୍ବ କରିଅଛନ୍ତି ।

ଜନକ—ଏଠାରେ କିଏ ଅଛ ରେ ?

ଦ୍ୱାରୀର ପ୍ରବେଶ ।

ଦ୍ୱାରୀ—ମହାରାଜ ଆଜ୍ଞା କରନ୍ତୁ ।

ଜନକ—ଭଗବାନ୍ ବଶିଷ୍ଠଙ୍କର ପଦବନ୍ଦନାର୍ଥ କନ୍ୟାମାନଙ୍କୁ ଅଣାଅ ।

ଦ୍ୱାରୀ—ମହାରାଜଙ୍କର ଯେ ଆଜ୍ଞା ।

(ପ୍ରସ୍ଥାନ)

ରାବଣ—(ରହସ୍ୟରେ) ସାରଣ ! ଦୈବ ମୋ ପ୍ରତି ଅନୁଗ୍ରହ କରିଅଛି । (ଉତ୍କଣ୍ଠା ସହ)

ଶିଖରିଣୀ ବୃତ୍ତ ।

ସମାନୀତା ସୀତା କ୍ଷିତିପତିସୁତା ହୋଇବ ଯଦା
ବିଲୋକି ଶ୍ରୀରାମପ୍ରଭୃତି ତନୁ ଯେ ମୋହର ତଦା ।
ପ୍ରସନ୍ନତ୍ୱେ କୃତ୍ସ୍ନଲଳନବଦନସୌନ୍ଦର୍ଯ୍ୟର କଣା
ଅପାଙ୍ଗେ ପ୍ରେମାଲୋକନ କରିବ ବସ୍ତୀର୍ଣ୍ଣ ଅଗଣା ।। ୨୭ ।

ନେପଥ୍ୟରେ—

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ବିଦ୍ୟୁଜ୍ଜିହ୍ୱ ବଳେ ଅଗାଧ ମହିମା-ଗାମ୍ଭୀର୍ଯ୍ୟ-ମାୟାନ୍ବିତ,
ହେଲା ଲକ୍ଷ୍ମଣ ସାରଣାଖ୍ୟ ଦଇତ ଶ୍ରୀରାମ ଲଙ୍କାପତି ।
ବୈଦେହୀ ଗ୍ରହଣାର୍ଥ ସେହି ଛଳରେ ସମ୍ପ୍ରାପ୍ତ ଏହିସ୍ଥଳେ,
ଏହି ପ୍ରାପ୍ୟ କହନ୍ତୁ ଯାଇଁ ଜନକେ ହେ ଦ୍ୱାରପାଳେ ତ୍ୱରେ।୨୭।

( ସମସ୍ତେ ଶ୍ରବଣାଭିନୟ କରିବା )

ରାବଣ—( ରହସ୍ୟରେ ବିଦ୍ୟୁଜ୍ଜିହ୍ୱ ପ୍ରତି ସୋଦ୍ବେଗେ ) ଆମ୍ଭମାନଙ୍କର ଏହି ବୃତ୍ତାନ୍ତ ଜନକରାଜଙ୍କୁ କିଏ କହୁ-ଅଛି ? ଏହା ତ ଅନ୍ୟ କେହି ଜାଣନ୍ତି ନାହିଁ ?

ବିଦ୍ୟୁଜ୍ଜିହ୍ୱ—( ରହସ୍ୟରେ—ଉଚ୍ଚୈରେ କମ୍ପି ) ଏ ତ ବଡ଼ ଆଶ୍ଚର୍ଯ୍ୟର କଥା ! କଣ କହିବ ? ମଦାୟ ଗୃହିଣୀ ବିନା ଅନ୍ୟ କେହି ଏ କଥା ଜାଣିବାକୁ ସମର୍ଥ ନୁହେ ।

ସାରଣ—( ସ୍ୱଗତ ) କିଏ ଏ ଦୁରାତ୍ମା ? ଆମ୍ଭମାନଙ୍କର ମନୋରଥାରମ୍ଭ ଭଗ୍ନ କରୁଅଛି । (ପ୍ରକାଶତଃ) ଭଗବନ୍ ଶତାନନ୍ଦ ! କିଏ ସେ ଉଚ୍ଚସ୍ୱରରେ ଏପରି କହୁଅଛି ? ତାହା ବିଚାର କରିବାକୁ ହେବ ।

ଶତାନନ୍ଦ—(ସ୍ୱଗତ) କଣ ! ରାମ ଲକ୍ଷ୍ମଣ ଓ ବିଶ୍ୱାମିତ୍ରଙ୍କର ବେଶ ଧାରଣ କରି ରାବଣ ସାରଣ ଓ ବିଦ୍ୟୁଜ୍ଜିହ୍ୱ ଆସିଅଛନ୍ତି ! (ପ୍ରକାଶତଃ) ଲକ୍ଷ୍ମଣ ! ବିଚାର କରାଯିବ ।

ଜନକ—(ବିଚାରପୂର୍ବକ ସ୍ୱଗତ)

ଅନୁଷ୍ଟୁପ୍ ବୃତ୍ତ ।

ଗାଧେୟ୍ଯ ଅବ ସମ୍ପ୍ରାପ୍ତ ବାଞ୍ଛା ସଫଳ କରିବେ ।
ଏ ପ୍ରାୟ୍ଯ ଭାବ ସନ୍ତୋଷେ ଥିଲ ତା ହାୟ୍ଯ ! ଅନ୍ୟଥା । ୨୭ ।

(ପ୍ରକାଶତଃ) ଏଠାରେ କିଏ ଅଛ ?

ପ୍ରତିହାରର ପ୍ରବେଶ ।

ପ୍ରତିହାରୀ—ମହାରାଜ ! ଆଦେଶ କରନ୍ତୁ ।
ଜନକ—ଏ ସମ୍ବାଦ କିଏ କହିଲେ ? ଭଲରୂପେ ବୁଝିଆସ ।
ପ୍ରତିହାରୀ—ମହାରାଜ ! ବୁଝିବାର ଆଉ ଅବଶିଷ୍ଟ କିଛି ନାହିଁ ।

ମାଲିନୀ ବୃତ୍ତ ।

ଝଟିତି ଜଳପି ଏହା କେ ଜଣେ ଦିବ୍ୟ-ମୂର୍ତ୍ତି
ଫଳକ ପତନ ବେଗେ ବ୍ୟୋମରେ ଲୀନ କାନ୍ତି ।
ପୁଣି ଅପର ସୁମିତ୍ରାପୁତ୍ର ଓ ରାମଭଦ୍ର
ଅପର କୁଶିକଜନ୍ମା ସଙ୍ଗରେ ପ୍ରାପ୍ତ ଅଛି । ୨୮ ।

ଜନକ—ଶତାନନ୍ଦ ! ଏ କିପରି କଥା ?
ଶତାନନ୍ଦ—(ଜନକ ପ୍ରତି ରହସ୍ୟରେ) ବୋଧହୁଏ ଇନ୍ଦ୍ରଦୂତ ଏହା କହିଥିବେ । ଅଚ୍ଛା ହେଉ, ଇତପୂର୍ବରୁ ଯେଉଁମାନେ ଆସିଅଛନ୍ତି, ବର୍ତ୍ତମାନ ଯେଉଁମାନେ ଆସୁଅଛନ୍ତି, ସେ ସମସ୍ତଙ୍କର ସ୍ୱରୂପାଦିର ନିର୍ଦ୍ଧାରଣ କ୍ରମଶଃ କରାଯିବ । (ପ୍ରକାଶତଃ ବିଦୂଷକ ପ୍ରତି) ଭଗବନ୍ କୌଶିକ ! ଏ କିପରି କଥା ?

ବଦ୍ଧ୍ୟକ୍ଷିହ—(ସ୍ୱଗତ) ନଷାଦକର୍ତ୍ତୃକ ଶ୍ୱେର ପର ବର୍ତ୍ତମାନ ଅମ୍ଭେମାନେ କୌଶିକଦ୍ୱାରା ନରୁଦ୍ଧ ହେଲୁଁ । (ପ୍ରକାଶତଃ) ସମ୍ପ୍ରତ ଅମ୍ଭମାନଙ୍କର ବେଶଧାରୀ ରାକ୍ଷସମାନେ ଅସନ୍ତୁ । ଅମ୍ଭେମାନେ ଅନ୍ୟତ୍ର ଯାଉଅଛୁଁ ।

ରାବଣ—(ସାରଣ ପ୍ରତ ରହସ୍ୟରେ) କଣ ! ସେହ ଋଷିସୁପୋତ ତାଟକା ପ୍ରଭୃତଙ୍କୁ ନହତ କରଅଛି ?

ସାରଣ—(ରହସ୍ୟରେ) ଏ କଥା ତ କଠହୁଅ୍ ସମ୍ଭବ ନୁହେ ।

ଇନ୍ଦ୍ରବଜ୍ରା ବୃତ୍ତ ।

ସୌନ ସୁନ୍ଦବନତା ସୁବାହୁରେ
ରାମ ଯଦ୍ୟପି ବନାଶିଲ ଶରେ ।
ସର୍ବ ରାକ୍ଷସ ବନାଶନେ ତଦା
ସେ ସମର୍ଥ ସତ ହେବ ଏକଦା । ୨୯ ।

ରାବଣ—(ବଦ୍ଧ୍ୟକ୍ଷିହ ପ୍ରତ ରହସ୍ୟରେ) ବର୍ତ୍ତମାନ ଅମ୍ଭମାନଙ୍କର କର୍ତ୍ତବ୍ୟ କଣ ?

ବଦ୍ଧ୍ୟକ୍ଷିହ—(ରାବଣ ପ୍ରତ ରହସ୍ୟରେ) ତରସ୍କରଣୀପ୍ରଭାବରେ ଛଦ୍ମେହତ ରହ ଯାବତୀୟ ଘଟନା ଦେଖିଲ ଉତ୍ତାରୁ ଯଥାବଧାନ କରବାକୁ ହେବ ।

ରାବଣ—ଏହାହଁ ଅଭଯୁକ୍ତ ବଗ୍ଣର ।

ଜନକ—(ଶତାନନ୍ଦ ପ୍ରତ ରହସ୍ୟରେ) ଏମାନେ ଉଦ୍‌ବଗ୍ନଚତ୍ତରେ ଅନ୍ୟୋନ୍ୟ କଣ ଅବା ଆଲୋଚନା କରୁ-

ଅଛନ୍ତି ? ଅତଏବ ମୁଁ ମନେ କରେଁ, ଏମାନେ ନିଶ୍ଚେ ରାକ୍ଷସ ହେବେ ।

ଶତାନନ୍ଦ—ମୋର ମଧ ସେହି ତର୍କ ହୁଏ ।

ବୃଦ୍ଧମନ୍ତ୍ରୀ—ଜନକରାଜ ! ଆପଣ ଗୁପ୍ତ ବର୍ତ୍ତ୍ୱର କହୁଅଛନ୍ତି କାହିଁକି ? ମୁଁ କହୁଅଛୁ ତ, ଅମ୍ଭେମାନେ ଅନ୍ୟ ସ୍ଥଳକୁ ବାହାରେଯିବୁଁ । ରାବଣକୁ ଯଥୋଚିତ ସମ୍ମାନନା କରିବେ, କିନ୍ତୁ କନ୍ୟାପ୍ରଦାନରେ ସମ୍ମତ କରିବେ ନାହିଁ ।

ଜନକ—ହଁ, ତାହାହିଁ କରିବାକୁ ହେବ । ( ଉତ୍ଥାନପୂର୍ବକ ପ୍ରାଞ୍ଜଳିହସ୍ତରେ ମାର୍ଗ ଦେଖାଇବା, ରାବଣାଦି ନିଷ୍କ୍ରାନ୍ତ ହୋଇ ତିରସ୍କରଣୀ ପ୍ରଭାବଦ୍ୱାରା ତିରୋହିତାକୃତିରେ ଅନତିଦୂରରେ ଉପବିଷ୍ଟ ହେବା )

ଶତାନନ୍ଦ—ମହାରାଜ ! ସମ୍ପ୍ରତି ସମାଗତ କୌଶିକ ପ୍ରଭୃତିଙ୍କୁ ଯଥୋଚିତ ଅର୍ଘ୍ୟାଦି ପ୍ରଦାନରେ ପ୍ରବେଶ କରାଇବ । (ପ୍ରସ୍ଥାନ)

ତଦନନ୍ତର ରାମ ଲକ୍ଷ୍ମଣ ସମେତ ବିଶ୍ୱାମିତ୍ରଙ୍କ ପ୍ରବେଶ ।

ବିଶ୍ୱାମିତ୍ର—(ସ୍ୱଗତ)

ସ୍ରଗ୍ଧରା ବୃତ୍ତ ।

ଅନ୍ୟୋନ୍ୟ ପ୍ରେମଯୁକ୍ତ ପ୍ରକୃତିପୁରୁଷ-ସଂଯୋଗ ସୁଶ୍ଳାଘନୀୟ
ତେଣୁ କ୍ଷୌଣୀତନୂଜା ପ୍ରତି ରଘୁତନୟ ସ୍ନେହ ଅବନ୍ଧ କାମ୍ୟ ।
ସୀତା ରାମଙ୍କୁ ଦେଖି ସ୍ୱପନ ଅବସରେ ସର୍ବଦା ବିପ୍ରଯୋଗେ
ଆଳୀ-ଶୁଶ୍ରୂଷିତା ସେ କଣଳସୃତଳପେ ଶାୟିନୀ ଦୁଃଖ ଭୋଗେ ॥

ସମ୍ପ୍ରତି ଅମ୍ଭେ ରାମ ଓ ଲକ୍ଷ୍ମଣଙ୍କୁ ମନ୍ତ୍ରସମେତ ଦିବ୍ୟାସ୍ତ୍ରଗ୍ରାମ ପ୍ରଦାନ କରିଥିବା ସୁବିହିତ ହେଲା । କାରଣ ସ୍ୱଜନବିନାଶପ୍ରକୁପିତ ତଥାଚ ସୀତାପାଣି-ଗ୍ରହଣରେ ସଂଜାତାମର୍ଷ ରାବଣ ତ୍ରିଭୁବନବିଜୟୀ ଓ ପ୍ରଚଣ୍ଡତେଜା ଥାଇ ମଧ୍ୟ ଏହାଙ୍କ ପ୍ରତି କଦାପିହେଁ ଅତି ପରାକ୍ରମ ପ୍ରକାଶ କରି ପାରିବ ନାହିଁ ।

ପୃଥ୍ୱୀ ବୃତ୍ତ ।

ନିଶାଚରସମୂହ ଦୁର୍ଦ୍ଦମନ ଘୋର ମାୟାବଳେ
ବଶୀକୃତ କରି ସର୍ବଥା ଦଶରଥଙ୍କୁ ତେଜ ଦ୍ୱରେ ।
ବିବାହକରଣାର୍ଥ ଭୂତନୁଭବାର ନିର୍ବିଘ୍ନରେ
ସମାଗତ ନିଜ ସ୍ଥଳେ ଧରିଣ ସ୍ୱାଙ୍କୁ ମୋ ସଙ୍ଗରେ । ୩୧ ।

(ପ୍ରକାଶତଃ) ବତ୍ସ ରାମଚନ୍ଦ୍ର ! ବତ୍ସ ଲକ୍ଷ୍ମଣ ! ଜନକ-ରାଜଙ୍କୁ ଦେଖିଲାକ୍ଷଣି ନମସ୍କାର କରିବ । ଯେହେତୁ—

ଇନ୍ଦ୍ରବଜ୍ରା ବୃତ୍ତ ।

ସେ ଯାଜ୍ଞ୍ୟବଲ୍କାଖ୍ୟ ଋଷିଙ୍କଠାରେ
ବେଦାନ୍ତବିଦ୍ୟା ପଢ଼ି ତତ୍ତ୍ୱସାରେ
ଉତ୍ତୀର୍ଣ୍ଣ-ଶୋକାର୍ଣ୍ଣବ ହୋଇଛନ୍ତି
ଯୋଗିବ୍ରଜେ ପୂଜ୍ୟ ତଥା ଅଟନ୍ତି । ୩୨ ।

ରାମ ଓ ଲକ୍ଷ୍ମଣ—ହଁ, ନିଷ୍ଟେ ତାହାହିଁ କରିବୁଁ ।

ଲକ୍ଷ୍ମଣ—ଭଗବନ୍ ! ଏହି ରାଜାଙ୍କର ଲାଙ୍ଗଳକର୍ଷିତ ଯଜ୍ଞଭୂମିରୁ

ସୀତାନାମ୍ନୀ କନ୍ୟା ଜନ୍ମିଅଛନ୍ତି ବୋଲି ଆଶ୍ଚର୍ଯ୍ୟକର
ବୃତ୍ତାନ୍ତ ଶୁଣା ଯାଉଅଛୁ ।

ବିଶ୍ୱାମିତ୍ର—ହଁ, ତାହା ଯଥାର୍ଥ ଅଟେ ।

ରାମ—(ସ୍ମରଣପୂର୍ବକ ସ୍ୱଗତ)

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ମାୟାକଳ୍ପିତ ଜାଣିଲେହେଁ ଅନଳେ ସୀତାର ନଷ୍ଟାତନେ '
ଭୂଃଖ କ୍ରୋଧ ବିଦୂର ମୋ ମନୁ ନୁହେ ଅଦ୍ୟାପି ଚିତ୍ତନେ ।
ମାୟାତନ୍ତ୍ରମ ସେ ବିଦେହ ନୃପରେ ଯାହା କଲି ଭବ ତା
ଜନ୍ମେ ରାବଣ ମସ୍ତକାବଳି-ସମୁଚ୍ଛେଦେ ମନୋହାରିତା ।୩୩।

ଅପିଚ—

ସ୍ରଗ୍ଧରା ବୃତ୍ତ ।

ଯଜ୍ଞାରମ୍ଭାପଦେଶ ଜନକନୃପସୁତା-ହସ୍ତସଂପ୍ରାପ୍ତି ପାଇଁ
ଶ୍ରୀ ବିଶ୍ୱାମିତ୍ର ଏବେ ସଦୟହୃଦୟରେ ବନ୍ଧୁମାନଙ୍କୁ ପାଇ
ଏ ସ୍ଥାନେ ଆଣି ମୋତେ ଉପଗତ କରିଲେ ଭବ ଏ ଯାବତାୟ
ଯା ଏ ଆଶ୍ୱାସ ତୋଷ ପ୍ରଗୁଣିତ ସତତେ ସର୍ବଥା ହୃଷ୍ଟକାୟ ।୩୪।

(ପ୍ରକାଶତଃ)

ଭଗବନ୍ ! ଏତାଦୃଶ ଅଦ୍ଭୁତ ଗୋଟିଏ ଆଶ୍ଚର୍ଯ୍ୟର କଥା
ଶୁଣାଯାଏ କି, ବନ୍ଧୁ ତପସ୍ୟାଶୀଳ ଜନକରାଜଙ୍କର
ଆୟତନରେ ଭଗବାନ୍ ମହାଦେବଙ୍କର ପ୍ରକାଣ୍ଡ କୋଦଣ୍ଡ

ନିତ୍ୟ ପୂଜାରେ ନିହିତ ଅଛୁ ଏବଂ ଲୋକେ କହନ୍ତି,
ତପାସ୍ୟ ଗୁଣାକର୍ଷଣ ଦେବଗଣରେ ଦୁର୍ଦ୍ଧର୍ଷଣ, ଆଉ ଅଳ୍ପତ
ମଧ ମନ୍ଦର ପ୍ରାପ୍ୟ ମହତ୍ତ୍ୱର ଅଟେ ।

ବିଶ୍ୱାମିତ୍ର—( ଅଳ୍ପ ହସି ) ହଁ, ତାହା ମଧ ଯଥାର୍ଥ ଅଟେ ।

(ସମସ୍ତେ ପାଦକ୍ରମଣ କରିବା)

ଶତାନନ୍ଦ— ( ଅଗ୍ରତଃ ପ୍ରବେଶି ) ମହାରାଜ ! ଏଇ ଦେଖନ୍ତୁ,
ଭଗବାନ୍ ବିଶ୍ୱାମିତ୍ର ଆଉ ଦଶରଥ ରାଜାଙ୍କର ପୁତ୍ର
ଦୁହେଁ—

ଜନକ—(ସ୍ୱଗତ) ଏମାନଙ୍କର ବେଶ ଅନୁସାରେ ପୁରୋହିତ
ମହାଶୟ ନିର୍ଦ୍ଦିଷ୍ଟ କରିଅଛନ୍ତି । (ପ୍ରକାଶତଃ) ଅଦ୍ୟ
ମୋର ବଡ଼ ସନ୍ତୋଷ ହେଲା । (ଏହା କହି ଯଥୋଚିତ
ଉପଚାରରେ ଆସନମାନଙ୍କରେ ସମସ୍ତଙ୍କୁ ବସାଇବା )

ଶତାନନ୍ଦ—(ସ୍ୱଗତ) ଏମାନେ ମଧ ରାଷସ ହୁଅନ୍ତୁ, ତଥାପି
ଏତପର କହିବ । (ପ୍ରକାଶତଃ) ଆମ୍ଭମାନଙ୍କର ଭାଗ୍ୟା-
ଭୋଗବଶରୁ ରାମ ଓ ଲକ୍ଷ୍ମଣଙ୍କୁ ସଙ୍ଗେ ଧରି ଭଗବାନ୍
ବିଶ୍ୱାମିତ୍ର ଅତ୍ର ଉପଗତ ହେଲେ ।

ଜନକ—(ସ୍ୱଗତ) ଶତାନନ୍ଦଙ୍କ ବାକ୍ୟକୁ ଅନୁସରି ମୁଁ ମଧ
କିଛି କହିବ । (ପ୍ରକାଶତଃ)

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଋଷ୍ୟଶୃଙ୍ଗ ସୁଭାଗଧେୟବଳରେ ଆମନ୍ତ୍ରଣେ ଆଗତ
ହେବେ ପଙ୍କ୍ତିରଥ ପ୍ରଜାସବନକୁ ପ୍ରାରମ୍ଭିଲେ ତାବତ ।

ଦୈବେ ସ୍ୱବଚତୁଷ୍ଟୟ ପ୍ରସବଲେ ଯେ ସଦ୍‌ଗୁଣାଳଙ୍କୃତ
ଦୈବେ ଆପଣ ଅଣିଲେ ମମ ପୁରେ ଭ୍ରାତୃଦ୍ୱୟେ ସାମ୍ପ୍ରତ । ୬୬ ।

ରାବଣ—(ବଦ୍ଧକ୍ତିକ ପ୍ରତି) ଏ କଣ ! ଏମାନଙ୍କୁ ଯଥାର୍ଥ ବୁଦ୍ଧିରେ ଏପରି କହୁଅଛ ?

ବଦ୍ଧ୍ୟକ୍ତିକ—ନାହିଁ ନାହିଁ, ଅମ୍ଭମାନଙ୍କ ପ୍ରତି କେବଳ ଜନକଙ୍କର ଯଥାର୍ଥ ବୁଦ୍ଧି ।

ବଶ୍ୱାମିତ୍ର—ହଁ, ଆପଣ ଯାହା କହିଲେ ସତ୍ୟ । ବତ୍ସ ଶତାନନ୍ଦ ! ପ୍ରିୟସୁହୃଦ ଜନକ ମହାରାଜ ! ସାବଧାନତାରେ ଶ୍ରବଣ କରନ୍ତୁ ।

ସେ ଦୁହେଁ—ହଁ, ସାବଧାନ ଅଛୁଁ ।

ରାବଣ—ଏହି ଦୁରାତ୍ମା ପୃଥକ୍‌ଜନ ବଶ୍ୱାମିତ୍ର କଣ ବା କହିବ !

ବଦ୍ଧ୍ୟକ୍ତିକ—ବୋଧହୁଏ ମାର୍ଗରୋଧକ ଅସ୍ମଦୀୟ ପରିଜନମାନଙ୍କୁ ନହତ କରି ସେମାନେ ଆସିଅଛନ୍ତି; ଏହାହିଁ କହିବ ।

ସାରଣ—ତାହା ନ ହେଲେ ଅସିବାକୁ ଅନ୍ୟଥା କପରି ସମର୍ଥ ହୁଅନ୍ତେ ?

ବଶ୍ୱାମିତ୍ର—

ସ୍ରଗ୍ଧରା ବୃତ୍ତ ।

ଆସନ୍ତେ ପୂର୍ବଦାର୍ ସହିତ ଦଶରଥ ସ୍ନେହରେ ମୋର ସଙ୍ଗେ
ସୁନ୍ଦସ୍ତ୍ରୀ ଧୂଳବର୍ଷୀ ବଟିଚ ଅଟକଳା ହେଲ୍ ସଂରୁଦ୍ଧ ମାର୍ଗେ ।

ରାବଣ—(ସାନନ୍ଦେ) ଆର୍ଯ୍ୟା ତାଟକା ଭଲ କରିଅଛନ୍ତି ।

ବଦୁ୍ୟକ୍ତିହ—ସେମାନଙ୍କ କପର ଲଙ୍ଘନ କଲେ, ତାହା ମଧ
ଶୁଣିବାକୁ ହେବ ।

ରାବଣ—(ସବସ୍ମୟେ) ମୁଁ ଅନନ୍ଦପରବଶରୁ ଏହ ମୂନପାଶ
ରାମ ଓ ଲକ୍ଷ୍ମଣଙ୍କୁ ସଙ୍ଗେ ଧର ଆସିବାର ସାପୋର
ଦେଇଅଛୁ ।

ବଶ୍ୱାମିତ୍ର—

ରାମ ସ୍ତ୍ରୀଘାତଶଙ୍କା ଲଭ ବରତ ତଦା ଗୃପବକ୍ଷିଷ୍ଟ ଗିର—

ରାବଣ— ମୂନସ୍ୱାନ ଏହ ଋଷିଯୃତ୍ତମ୍ଭଠାରେ ଯତ୍ନପୂର୍ବକ
କେତେ ମାହାତ୍ମ୍ୟ ସ୍ଥାପନ କରୁଅଛୁ !

ସାରଣ—(ପାଶଙ୍କେ) ତା ପରେ କଣ ହେଲା ଶୁଣିବୁ

ବଶ୍ୱାମିତ୍ର—

ଅପେ ବକ୍ଷପ୍ରଦେଶେ ସତ୍ତ ଦଳ ସହସା ଶୋଷିଲା ପ୍ରାଣ ତାର ।୩୬।

ଜନକ—(ଶତାନନ୍ଦ ପ୍ରତି ରହସ୍ୟରେ) ଅଯୁର ନଜ ଗୃହୀତ
ରୂପର ବଶ୍ୱାସ ଦୃଢ଼ୀକରଣାର୍ଥ ଏହ କଥାର ପ୍ରସ୍ତାବ
କରଅଛୁ ।

ଶତାନନ୍ଦ—ଅବଶିଷ୍ଟ ମଧ ଶୁଣିବା ଅବଶ୍ୟକ ।

ଜନକ—(ପ୍ରକାଶତଃ)

ଅନୁଷ୍ଟୁପ୍ ବୃତ୍ତ ।

ଏ ରାମ କୋଟେଁ କୋଟେଁ ସେ ସହସ୍ରେଭବଲାନ୍ୱିତା ।

ରାବଣ— ଜନକ ଠିକ୍ ଆକ୍ଷେପ କରଅଛନ୍ତି ।

ଶତାନନ୍ଦ—

ଦୈବାନୁକୂଳତାଯୋଗେ କାର ଦୁଷ୍କର କୋ କଥା । ୩୪ ।

ବଦ୍ଧ୍ୟକ୍ଷିପ୍ତ—ଏହି ମାତ୍ସ୍ମା ଶତାନନ୍ଦ ତାହାର ସମର୍ଥନ କରୁ-
ଅଛନ୍ତି ।

ସାରଣ—ହାୟ ! ତାଟକେ ! ତୁମ୍ଭଙ୍କୁ ସ୍ତ୍ରୀ ଜାଣି ମଧ୍ୟ ଏହି ମୂଢ଼
କପର ବିମୁକ୍ତ କଲା ନାହିଁ !

ରାବଣ—(ସାଶଙ୍କେ) ତଦନୁଚରମାନେ କଣ କଲେ ? କିଛି
ଜଣା ଗଲା ନାହିଁ ।

ଜନକ—ତା ପରେ କଣ ହେଲା ?

ବିଶ୍ୱାମିତ୍ର—ତା ପରେ ସୁବାହୁପ୍ରମୁଖ ନିଶାଚରଗଣ ରାମଚନ୍ଦ୍ରଙ୍କ
ଅତିକ୍ରମ କଲେ ।

ରାବଣ—ତାଟକାନିଧନ ସେମାନେ କପର ସହ୍ୟ କରନ୍ତେ !

ସାରଣ—ଏହି ବୀରବ୍ରତମାନୀ ରାମ ସେମାନଙ୍କୁ ମଧ୍ୟ କଣ ନାଶ
କରଅଛି ?

ଜନକ—ସେମାନେ ମଧ୍ୟ ନିହତ ହେଲେ କି ?

ବିଶ୍ୱାମିତ୍ର—ଶୁଣନ୍ତୁ, ତାହା ନୁହେ ତ ଆଉ କଣ ହୁଅନ୍ତେ ?

ବସନ୍ତତିଳକ ବୃତ୍ତ ।

ତେବେ ସୁବାହୁକୁ ତଥା ତଦନୀକିନୀକି
ବିଚ୍ଛେଦ ବିସ୍ତ୍ର ଶର ଖେଳ କଲା ଅଶଙ୍କି ।

ଯେ ପ୍ରାପ୍ତ ତବ ଲବ୍ଧ ବଞ୍ଚକ କଙ୍କ ମାଂସ
ନାରନ୍ତ ସେ ହତ କବନ୍ଧକବୃନ୍ଦଶୀର୍ଷ । ୩୮ ।

ଶତାନନ୍ଦ—( ଜନକଙ୍କ ପ୍ରତି ରହସ୍ୟରେ ) ଏପରିସ୍ଥଳରେ ଏମାନଙ୍କ ବିଷୟରେ ଆପଣ କାଦୃଶ ଭାବନା କରୁ-ଅଛନ୍ତି ?

ଜନକ—(ରହସ୍ୟରେ ଶତାନନ୍ଦଙ୍କ ପ୍ରତି) ସୀତା ବୀର୍ଯ୍ୟଶୁଲ୍କା, ଏପରି ଜଣାଇବା ଉଚିତ ବୋଧ କରୁଁ ।

ଶତାନନ୍ଦ—(ରହସ୍ୟରେ) କିପରି ପଣବନ୍ଧ କରାଯିବ ?

ଜନକ—(ରହସ୍ୟରେ) ହରଶରାସନାରୋପଣସ୍ୱରୂପ ।

ଶତାନନ୍ଦ—(ରହସ୍ୟରେ ଅବଜ୍ଞା ସହ ହାସ୍ୟ ପ୍ରକାଶ କରି)

ସ୍ରଗ୍ଧରା ବୃତ୍ତ ।

ପୂର୍ବକାଳେ ସମସ୍ତାମରହନକର ଥିଲେ ଯହ ଘବଦ୍ୟମାନ ।
ଯାହା ସାନୁପ୍ରଦେଶ ପ୍ରମଥଗଣସମାଶ୍ଳିଷ୍ଟ, ଯେ ମେରୁମାନ ।
ସେ କୈଳାସାଦ୍ରି ଯାହା ଦଶ ଦଶ କରରେ କନ୍ଦୁକ ପ୍ରାୟ ଧାର୍ଯ୍ୟ ।
ସେ ରକ୍ଷଶ୍ଚକ୍ରବର୍ତ୍ତୀ ଗିରିଶଧନୁକୁ ଉତ୍ତୋଳିବା ସ୍ୱଳ୍ପକାର୍ଯ୍ୟ । ୩୯ ।

ଜନକ—(ରହସ୍ୟରେ) ଭଗବନ୍ ଶତାନନ୍ଦ ! ଆପଣଙ୍କୁ ଏହାର ନିଶ୍ଚିତାର୍ଥ କହୁଅଛୁ, ଶ୍ରବଣ କରନ୍ତୁ ।

ଅନୁଷ୍ଟୁପ୍ ବୃତ୍ତ ।

ଦେବ ଦାନବ ଗନ୍ଧର୍ବ ଯକ୍ଷ ରାକ୍ଷସ ଚାରଣେ
ଉତ୍ତୋଳି ପାରିବେ ନାହିଁ, ଶିବ ଆଦେଶ ଏପରି । ୪୦ ।

ଶତାନନ୍ଦ—( ରହସ୍ୟରେ ) ତାହାହେଲେ ସ୍ୱୀକାର କରିବା ଉଚିତ ।

ବିଦୁ୍ୟଜ୍ଜିହ୍ୱ—ବିଶ୍ୱାମିତ୍ର କହୁଅଛନ୍ତି, ସମସ୍ତେ ନିହତ ହେଲେ, ଏହା କଣ ସତ୍ୟ ?

ସାରଣ—ସତ୍ୟ ହୋଇ ପାରେ; କାରଣ ମାୟାଧୂରୀଣ ମାରୀଚ ପ୍ରଭୃତିଙ୍କୁ ଅନ୍ୟପ୍ରକାରେ କେହି ଅତିକ୍ରମଣ କରି ପାରିବେ ନାହିଁ ।

ଲକ୍ଷ୍ମଣ—

ଅନୁଷ୍ଟୁପ୍ ବୃତ୍ତ ।

ଆର୍ଯ୍ୟଙ୍କ ବାଣେ ମାରୀଚ ଉଡିଲା ଦୂରରେ ନଭେ ।
ମଲା ବା ମୋକ୍ଷ ଲଭିଲା ତାହା ନିଶ୍ଚିତ ନୋହିଲା । ୪୧ ।

ରାବଣ—(କ୍ରୋଧରେ ନିଃଶ୍ୱାସ ମୁଞ୍ଚି)

ସ୍ରଗ୍ଧରା ବୃତ୍ତ ।

ଯାହା ଲୋକଙ୍କୁ ଭୟରେ ଦହନ ତ ନ ଦହେ,
କମ୍ପନେ ବାୟୁ ଯିତ,
ସନ୍ତପ୍ତ ଦ୍ୱାଦଶାତ୍ମା ନ କରଇ, ଜଗତେ ସେହି ଶାସ୍ତା ପ୍ରଦୀପ୍ତ ।
ସୁନ୍ଦରୀ ସେ ସୁବାହୁ ସ୍ୱରୂଷ୍ଟ ସହିତ ସଂହାରି, ମ୍ୟା ବୈରି ଇଚ୍ଛା ।
କି ପ୍ରାୟେ ପ୍ରାଣଆଶା ରଖିବ ? କରିବ ବା ମ୍ୟାକୁ ଗାଧେୟ ରକ୍ଷା ॥

(କ୍ରୋଧରେ ଉଠିବାର ଉଦ୍ୟମ)

ବିଦୁ୍ୟଜ୍ଜିହ୍ୱ—( ନିବାରଣ କରି ) ମହାରାଜ ! କ୍ଷମାଗୁଣରେ କ୍ଷଣମାତ୍ର ସହ୍ୟ କରନ୍ତୁ, ଆଗକୁ କି ହେବ ଦେଖନ୍ତୁ ।

ଜନକ—( ସ୍ୱଗତ ) ସମ୍ପ୍ରତି ମୋ ହୃଦୟ ସୁପ୍ରସନ୍ନ ହୋଇ-

ଅଛୁ । (ପ୍ରକାଶତଃ) ରାମଚନ୍ଦ୍ରଙ୍କଦ୍ୱାରା ମାରୀଚ କଣ ନିର୍ଜିତ ହେଲା ?

ବିଶ୍ୱାମିତ୍ର—ଆଉ କଣ ।

ସାରଣ—(ସ୍ୱଗତ) ହାୟ ! କେଡେ ଦୁଃଖର ବିଷୟ ଯେ !

ବସନ୍ତତିଲକ ବୃତ୍ତ ।

ଅଦ୍ୟାପି ବାହୁଗଣବିକ୍ରମ ଯାର ରାଜ
ସମ୍ପୂର୍ଣ୍ଣତା ବହୁଥିଲା ଭୁବନେ ବିରାଜ ।
ତାହା ବିଭିନ୍ନ କରିଲା ରଘୁବଂଶବୀର
ସ୍ୱର୍ଣ୍ଣକୁ ଦୀପ୍ତତର ଭାନୁକୁ ଯେପ୍ରକାର । ୪୩ ।

ରାବଣ—(ଦନ୍ତ ରଗଡ) ମୁଁ ଏ ଋଷିସ୍ମୃତମ୍ନଙ୍କୁ କଦାପି ଛାଡିବି ନାହିଁ ।

ସ୍ରଗ୍ଧରା ବୃତ୍ତ ।

ଅଦ୍ୟାପି ଶ୍ରୀଗଳାଦ୍ରି-ଗ୍ରହପଟୁ ଅଛି ମୋ ବାହୁମାଳା ବିରାଜ ।
ଦିକ୍‌ପାଳାଖର୍ବଗର୍ବାପହ-ବିଶିଖଗଣାଧାର-ତୂଣୀରରାଜ ।
କାଳାହଙ୍କାରହର୍ତ୍ତ୍ରୀ-ଶକତି ମମ କରେ ଦୈତ୍ୟଶିଳ୍ପିପ୍ରଦତ୍ତା ।
ଯୁଦ୍ଧେ କେ ମୋର ଅଗେ ରହିବ ତିନପୁରେ ?
ନାହିଁ ମୋ ଭୀତିମତ୍ତା । ୪୪ ।

ବହୁଯୁକ୍ତିହ୍ନ—ମହାରାଜ ! ଅଙ୍ଗୁଲିଷ୍ଫୋଟମାତ୍ରସୁକର ଏହି ନରତନ୍ମ ପ୍ରତି ସ୍ୱାମିଙ୍କର ଏତେବଡ଼ କ୍ରୋଧ କାହିଁକି ?

ଶତାନନ୍ଦ—ଏହି ରଘୁକୁମାର ନିରୁପମ ପରାକ୍ରମଶାଳୀ ଅଟନ୍ତି ।

ଲକ୍ଷ୍ମଣ—ଅତଏବ—

ଅନୁଷ୍ଟୁପ୍ ବୃତ୍ତ ।

ମୋ ସଙ୍ଗେ ପୂଜ୍ୟପାଦଙ୍କୁ ମହାତ୍ମା କୁଶିକାତ୍ମଜ
ଦିବ୍ୟାସ୍ତ୍ର ମନ୍ତ୍ରନିକର ସଦୟେ ଉପଦେଶିଲେ । ୪୫ ।

ବିଦ୍ୟୁଜ୍ଜିହ୍ୱ—ସ୍ୱାମିନ୍ ! ଲକ୍ଷ୍ମଣର ବଚନ ଶୁଣିବା ହେଲେ ?

ରାବଣ—ଏଥିରୁ ଆମ୍ଭମାନଙ୍କର ଭୟ କଣ ?

ସାରଣ—ପ୍ରଥମରୁ ବିଶ୍ୱାମିତ୍ର କେବଳ ଆମ୍ଭମାନଙ୍କୁ ଦ୍ରୋହ କରୁଅଛି ।

ବିଶ୍ୱାମିତ୍ର—(ସ୍ୱଗତ) ଜନକ ଓ ଶତାନନ୍ଦଙ୍କୁ ଦେଖିଲେ ଜଣାଯାଏ, ଯେପରି ଏ ଦୁହେଁ ଆମ୍ଭମାନଙ୍କ ପ୍ରତି ଅନ୍ୟଥା ଭାବନା କରୁଅଛନ୍ତି । ଇତିପୂର୍ବେ ମାୟାବୀ ରାକ୍ଷସମାନଙ୍କ ଦ୍ୱାରା ବଞ୍ଚିତ ହୋଇଅଛନ୍ତି କି ? ହେଉ ତେବେ—(ପ୍ରକାଶତଃ) ରାଜନ୍ ଜନକ ! ବତ୍ସ ଶତାନନ୍ଦ ! ତୁମ୍ଭେ ଦୁହେଁ ମତ୍‌ପ୍ରତି କଣ ଅବା ପ୍ରକାଶ କରିବାପାଇଁ ଇଚ୍ଛୁକ ଥିବାର ଜଣାଯାଏ, କଣ ତାହା କହ ।

ଜନକ—(ଶତାନନ୍ଦଙ୍କୁ ଇଙ୍ଗିତଦ୍ୱାରା ଜଣାଇଦେବା)

ଶତାନନ୍ଦ—

ବସନ୍ତତିଲକ ବୃତ୍ତ ।

ଯେ କେହି ଏ ଜନପୁରେ ଯଦି ରାଜପୁତ୍ର
ଉତ୍ତୋଳିବେ ହରଶରାସନ ତାଙ୍କୁ ଅତ୍ର

ଏ ଅନ୍ୟ-ଦୁର୍ଲଭ-ଗୁଣାବଳୀ-ଯୋଗଧନ୍ୟା
ସଂପ୍ରାପ୍ତ ହୋଇବ ଶୁଭେ ମିଥିଳେଶକନ୍ୟା । ୪୬ ।

ବଣ୍ଣମିତ୍ର—(ହାସ ପ୍ରକାଶ କରି) ଆମ୍ଭ ପ୍ରତି ମଧ ତୁମ୍ଭମାନଙ୍କର ବିଶ୍ୱାସ ହେଉ ନାହିଁ ? ଅଥବା ହେବ କିପରି ? ମାୟାବୀ କାମରୂପୀ ଦୁର୍ନିବାର୍ଯ୍ୟ ଓ ଗର୍ବିଷ୍ଠ ରାକ୍ଷସମାନେ ବହୁବିଧ ମାୟାଜାଲ ବିସ୍ତାର କରୁଥିବା ସ୍ଥଳରେ ଯେ କୌଣସି ଲୋକ ପ୍ରତି ହେଉ, କାହାର ହେଲେ ବିଶ୍ରମ୍ଭ ଜନ୍ମେ ନାହିଁ । ଅଚ୍ଛା ହେଉ, ଅନ୍ୱେଷଣାର୍ଥ ପୁରଶାସନଙ୍କର ଶରାସନ ଅଣାଯାଉ ।

ଜନକ—ଭଗବନ୍ ଶତାନନ୍ଦ ! ଆପଣ କେବଳ ହରକୋଦଣ୍ଡର ପୂଜାବିଧାନାଦ ବିଚାରି ଆନୟନ କରନ୍ତୁ ।

ଶତାନନ୍ଦ—ଅଚ୍ଛା ହେଉ । (ପ୍ରସ୍ଥାନ)

ରାବଣ—

ଅନୁଷ୍ଟୁପ୍ ବୃତ୍ତ ।

କୈଳାସଧର ମୋ ବାହାବଳରେ ଯେହୁ ଦୁର୍ଦ୍ଧର ।
ସେ ଶମ୍ଭୁଚାପ ଧରଣେ ସମର୍ଥ ହେବ ରାମ କି ? । ୪୭ ।

ବନ୍ଦୁ୍ୟକ୍ତିହ୍ର—ସେହ୍ର ଗିରିବରଧନ୍ୱାଙ୍କର କୋଦଣ୍ଡ ଆକର୍ଷଣରେ ତ୍ରିଭୁବନରେ କେହ୍ର ହେଲେ ସମର୍ଥ ନୁହନ୍ତି । ହାୟ ହାୟ ! ଏ ମୂର୍ଖପ୍ରକୃତି କିଏ ଏପରି ପ୍ରତିଜ୍ଞା କରୁଅଛି ?

ରାବଣ—(ଆକାଶରେ ଲକ୍ଷ୍ୟ ରଖି)

ସ୍ରଗ୍ଧରା ବୃତ୍ତ ।

ରାଜା ମୋ ମିତ୍ର ଭାବ ଗ୍ରହଣ ମୁଁ ନ କଲି, ଛିଦ୍ର ତୋତେ ବରାଙ୍ଗି !
ହେଲା ତୋ ପ୍ରେମ ବୋଲି ପ୍ରଥମରୁ ନରରେ ପ୍ରାର୍ଥନାରେ ବରାଗୀ !
ତନ୍ମୂର୍ତ୍ତି ହୋଇଲେହେଁ ନୁହଇ ମୁହିଁ ତଥା ଶୁଳ୍କସମ୍ଭାରବୋଢ଼ା
ଅପ୍ରାପ୍ତା ତେଣୁ ଆହା ପୁଣି ଇତରଜନେ ହେଲୁ ନଷ୍ଟେ ଅନୂଢ଼ା ॥

ସାରଣ—ମହାରାଜ ! ଏ ବାଳକା ଯଦ ଆପଣଙ୍କର କରୁଣାର ଯୋଗ୍ୟ ହେଲା, ତେବେ ସମ୍ପ୍ରତି ଏହାକୁ ଗୃହରଇ ଘେନଯାନ୍ତୁ ।

(ଶତାନନ୍ଦଙ୍କ ପ୍ରବେଶ)

ଶତାନନ୍ଦ—ମହାରାଜ ! ହେଇଟି ହରଶରାସନ ଆଣୀତ ହେଲା ।
(ଏହା କହ ବସିବା)

ବିଶ୍ୱାମିତ୍ର—ବତ୍ସ ରାମଚନ୍ଦ୍ର ! ଏହାକୁ ଦେଖ ତ ।

ରାମ—ଗୁରୁଜନମାନଙ୍କର ଯେ ଆଜ୍ଞା । (ଧନୁ ନକଟକୁ ଯିବା)

ରାବଣ—ଅହୋ ! ଅଗ୍ରିରୁ ପର କୋଦଣ୍ଡ ସମୀପକୁ ଚାଲି ଯାଉ-ଅଛୁ !

ବିଦ୍ୟୁଜ୍ଜିହ୍ୱ—କଣ ! ସତେ ଏ ଚାପକୁ ଆକର୍ଷଣ କରବ ?

ସାରଣ—କଣ ! ସତେ ଏ ରାମ ଜାନକୀର ପାଣିଗ୍ରହଣ କର ପାରବ ?

(ତଦନନ୍ତର ରକ୍ତବସ୍ତ୍ରାବଗୁଣ୍ଠିତାଙ୍ଗୀ ସୀତା ଆଉ ଅନ୍ୟ କନ୍ୟାମାନେ ପ୍ରତିହାରମାନଙ୍କଦ୍ୱାରା ଆଣୀତ ହୋଇ ଅନତଦୂରର ପୁରୋଭାଗରେ ପ୍ରବିଷ୍ଟ ହେଲେ ।)

ସୀତା—(କନ୍ୟାମାନଙ୍କୁ ଚାହିଁ ) ଭଗିନି ! ମହାଭାଗ ମହର୍ଷି ବଶିଷ୍ଠ ଆସିଅଛନ୍ତି, ଆମ୍ଭେମାନେ ତାହାଙ୍କୁ ଓଳଗି ହେବା ଚାଲ ।

ରାମ—(ସ୍ୱଗତ) ହାଇ ହାଇ କି ମଧୁର ଶବ୍ଦ ଯେ !

ପୃଥ୍ୱୀ ବୃତ୍ତ ।

ଅନନ୍ୟ-ଚନ-ସାରିକା-କଳକଳାଯ୍ୟମାନ ସ୍ୱନ
ହାସେଚନ କରେ ସୁଧାରସ ମହାର୍ଘ୍ୟ କର୍ଣ୍ଣେ ପୁନ ।
ପୁରା ମଦନ-ଭୂପ ଯେ କୁହକ-ଜାନକୀ-କାକୁଚ
ହୁଏ ସ୍ମରଣ ମୋ ନ ଶୁଣିଣ ଅଦ୍ୟ ଏ ଭାରତୀ । ୪୯ ।

ଊର୍ମିଳା—ଆର୍ଯ୍ୟା ସୀତାଙ୍କ ନ ତୁମ୍ଭେମାନେ ଶୁଣିଲ କି ?

ରାମ—(ଦେଖି ସ୍ୱଗତ) କଣ ! ସତେ ଏ ସାକ୍ଷାତ୍ ଜାନକୀ !

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଚନ୍ଦ୍ରେ ଦୃଷ୍ଟିର ସୌମ୍ୟତା ମଳୟସଂଜାତାନଳେ ଶୀତତା ।
ଶ୍ରୋତ୍ରାନନ୍ଦ ପିକସ୍ୱରେ ଉପବନେ ସନ୍ଦର୍ଶନାକାଙ୍କ୍ଷିତା ।
ରାତ୍ରେ ସତ୍ତ୍ୱର ନେମ୍ୟତା ପୁଣି ତଥା ଆହାରରେ କୃତ୍ୟତା ।
ଦୃଷ୍ଟ୍ୟା ନୋହଣ ଯେ ପୁରା ହରିଥିଲା ସେ ସମ୍ମୁଖେ ତ ସ୍ଥିତା ।୫୦।

ଅତଏବ ଏହାକୁ ଭୁଜଦ୍ୱୟରେ ଦୃଢ଼ରେ ବାନ୍ଧି ରଖିବା ଉଚିତ । ( ବଗ୍ରହ କରି )

ଅନୁଷ୍ଟୁପ୍ ବୃତ୍ତ ।

ହରଚ୍ଚାପୋତ୍ତୋଳନାଖ୍ୟ ପ୍ରତିବନ୍ଧ ମୁଁ ନାଶିଲେ ।
ବନମାଳୀ ଭୂଜେ ସୀତା ଅନ୍ୟଥା ବଡ଼ ଦୁର୍ଲଭା । ୫୧ ।

(ଏହି ସମୟରେ ଦୂରତଗତିରେ କୋଦଣ୍ଡ ଟଙ୍କାର ଶୁଣାଯିବା)

ମାଣ୍ଡବୀ—ଆର୍ଯ୍ୟେ ଜାନକି ! ଶୁଣାଯାଏ, ମହର୍ଷି ବିଶ୍ୱାମିତ୍ର ରାଜକୁମାର ଦୁହିଙ୍କୁ ସଙ୍ଗେ ଆଣିଅଛନ୍ତି ।

ସୀତା—ହଁ, ତାହା ତ ଶୁଣୁଅଛୁଁ ।

ମାଣ୍ଡବୀ—ମୁଁ ଶୁଣି ପାରିଅଛି, ସେ ଦୁହିଙ୍କ ମଧ୍ୟରୁ ଜଣେ କୌଣସି କନ୍ୟାର ହୃଦୟଚୋର ଅଟନ୍ତି ।

ସୀତା—ହୁଂ, କଣ କହୁଛୁ, ଯା ତୁନି ରହ ।
(ଏହା କହି ଲୀଳାସରୋଜରେ ତାଡ଼ନା କରିବା)

ଊର୍ମିଳା—(ହସି) ଅୟି ସୀତେ ! ତୁମ୍ଭେ ଏହି ଚେଷ୍ଟାରେ ମାଣ୍ଡବୀର କଥାକୁ ଆପଣା ଉପରକୁ ଆଣୁଅଛ କାହିଁକି ?

ସୀତା—ଅୟି ଊର୍ମିଳା ! ତୁ ଏପରି ଅସଙ୍ଗତ ପ୍ରଳାପ କର ନାହିଁ, ଦୂରକୁ ଯାଅ ।

ଶ୍ରୁତକୀର୍ତ୍ତି—ଅୟି ସୀତେ ! କି କାହିଁକି ? ଏହି କଥାରେ ତୁମ୍ଭର ଏଡ଼େ କୋପ ? ତୁମ୍ଭେ ଏକା କହିଲ ଭଲା, ଏହି କନ୍ୟାମାନଙ୍କ ମଧ୍ୟରୁ କିଏ ସ୍ୱପ୍ନରେ କୌଣସି ମଦନସୁନ୍ଦର ରାଜକୁମାରଙ୍କୁ ଦେଖି ତଦାବଧିକାଳୀନ ପରକ୍ଷୀଣ-ପ୍ରବାହ-ଗିରିନଦୀ ପରି ଦିନକୁ ଦିନ ଅତି

କ୍ଷୀଣଶରୀର ହୋଉଅଛନ୍ତି ? କାହାର ବଳାସଯୋଗ୍ୟ ଅବୟବମାନ ଅଭିନବ ଦୁଗ୍ଧ କଲଶାସାର ପରଷେକରେ ଧବଳ କନକ ସାଳଭଞ୍ଜିକା ତୁଲ୍ୟ ହୋଇଅଛି ? କିଏ ପୁଣି ଜନମନୋହର, ପରିପକ୍ୱ-ବିପୁଲଫଳ-ନିକର-ଭରଭଙ୍ଗୁର-ମାତୁଲଙ୍ଗ-ବିଟପନିଚୟରେ ଦୁଷ୍ପ୍ରବେଶାନ୍ତର, ନବଢ଼ଛାୟା ପ୍ରମୁଗ୍ଧ-ନାରକେଳବାଟିକା-ମଣ୍ଡିତ, ଅଭିରାମ ଆରାମର ମଧ୍ୟପ୍ରଦେଶସ୍ଥ ମାଧବୀ-ମଣ୍ଡପରେ ସରସ କିସଳୟ ତଳ୍ପର ଉତ୍ସଙ୍ଗରେ ଶୟନ କରି ଶିଶିଶିରି ଉଶୀରାନୁଲେପ ଓ ଶ୍ରୀଖଣ୍ଡଦ୍ରବରେ ପଙ୍କିଳ ବକ୍ଷଦେଶରେ ନୂତନ ସୁଧାକରକଳାମୃଦୁଳ ମୃଣାଳ ହାରମାନ ଲମ୍ବାଇ, ପାର୍ଶ୍ୱୋପବିଷ୍ଟ-ସଖୀନିକର କର-ଚଳିତ-ଶତଦଳଦଳ ତାଳବୃନ୍ତାଙ୍କୁରିତ-ମନ୍ଦ-ମନ୍ଦାୟମାନ ଶୀତଳ ପ୍ରମୁଗ୍ଧ ମାରୁତ ନିଷେବଣରେ ଦିନ ଯାପନ କରୁଅଛନ୍ତି ? ତଥାଚ କିଏ ପୁଣି ପ୍ରତ୍ୟୂଷ ସମୟରେ ନିଦ୍ରାରୁ ଉଠି ନିର୍ଜନସ୍ଥଳରେ ପ୍ରିୟସଖୀମାନଙ୍କୁ ଏପରି ରହସ୍ୟ କଥା କହନ୍ତି ?

ମାଣ୍ଡବୀ—ଅୟି ଶ୍ରୁତକୀର୍ତ୍ତି ! କଣ କହନ୍ତି ? କହିଲ କହିଲ ।

ସୀତା—ଶ୍ରୁତକୀର୍ତ୍ତି ଏପରି କହେ ।

ଶ୍ରୁତକୀର୍ତ୍ତି—

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଶ୍ରୀରାମାଖ୍ୟ ଯୁବା ଦିନେ ସ୍ୱପନରେ ପାଏ ଯଦା ସ୍ୱପ୍ନକୁ
ଆଗେ ଅଗ ଉଛ୍ରି ରହେ କରମରେ ଅପେ ମଦଭ୍ୟର୍ଥକୁ ।

ଭକ୍ଷେ ତୋର ମୁଁ ଦାସ ବୋଲି ନ ରଖେ ବଷୋଜ କୂର୍ପାସକୁ ।
ଭୂଭଙ୍ଗାଞ୍ଚଳ ରଞ୍ଜୁ ସେ ସରସରେ ତୁମ୍ଭେ ଛଳେ ଗଣ୍ଡକୁ । ୫୬ ।

(ଉର୍ମିଳା ମାଣ୍ଡବୀ ଦୁହେଁ ସୀତାଙ୍କ ମୁଖକୁ ଚାହିଁ ରହିବା)

ସୀତା—( ଅତି ସଲଜ୍ଜରେ ସ୍ୱଗତ ) ଏମାନେ ମୋର ସବୁ ରହସ୍ୟ କଥା ଜାଣି ପକାଇଲେ, କି ଉପାୟ କରିବି ? (ପ୍ରକାଶତଃ ଧୈର୍ଯ୍ୟ ସହ) ଏବେ ମୋର ତୁମ୍ଭମାନଙ୍କୁ ନିନ୍ଦା କରିବାର ଉଚିତ ନୁହେଁ । କିନ୍ତୁ ପରିହାସଶୀଳା ଶୀଳବତୀ ସଖୀ କେବଳ ନିନ୍ଦାର ପାଏ । ଶ୍ରୁତକୀର୍ତ୍ତି ଅଳ୍ପ ବୟସର ବାଳିକା ବୋଲି ତାର ବଞ୍ଚନା ଇଚ୍ଛାରେ ଶୀଳବତୀ ତାକୁ ସବୁବେଳେ କହୁଥାଏ ଯେ, ସୀତା ଉତ୍କଣ୍ଠିତା ସର କ୍ଷୀଣ ଓ ପାଣ୍ଡୁରଶରୀର ହୋଇ କୋମଳ ପଦ୍ମଶଯ୍ୟାରେ ଶୟନ କରି ସନ୍ତପ୍ତ ଏପରି ହୁଏ, ସେପରି ହୁଏ ବୋଲି ଅନୁଚିତ କଥାମାନ କହୁଅଛି ।

ମାଣ୍ଡବୀ—(ପୂର୍ବଭାଗକୁ ଚାହିଁ) ଏ ମା ! ଏ କଣ ! ପାତାଳ-ବିବରୋପମେୟ ଲୌହମୟ ପେଟିକାଗର୍ଭରେ ନିହିତ ନିତ୍ୟ ଧୂପୋପଚାର-ଚନ୍ଦନବିନ୍ଦୁରେ ପରିଚର୍ଚ୍ଚିତ ଚନ୍ଦ୍ର-ଶେଖରଶରାସନ, ଏଠାକୁ ଅଣାଇ ହୋଇଅଛି ! ଏହ ଦେଖ ଶରାସନର ସନ୍ନିଧାନରେ ଏ ପୁଣି କିଏ ବାଳେନ୍ଦୁ ପରି ନେତ୍ରର ଆନନ୍ଦଜନକ ହୋଇ ରହି-ଅଛନ୍ତି ? ଅହା ! ଏ କି ମନୋହର ଯେ ! ସୁବର୍ଣ୍ଣମାଳିକା-ସଲିବ, ମନୋଜ୍ଞ ଶିଖଣ୍ଡରେ ବିଭୂଷିତ, ପ୍ରଦୋଷସମ୍ଭୁ-

ବୃମ୍ବିତ କୁବଳୟର ମୃଦୁଳ ଦଳ ପ୍ରାୟ ସୁସ୍ନିଗ୍ଧ ଶ୍ୟାମଳ କଳେବର, ସୌନ୍ଦର୍ଯ୍ୟ-ସୌଭାଗ୍ୟ-ସମ୍ପତ୍ତିସମ୍ପନ୍ନ, ଶ୍ରବଣ-ପ୍ରାନ୍ତବିଶ୍ରାନ୍ତ-ଲୋହିତାରବିନ୍ଦସୁନ୍ଦରବିସ୍ତୃତନୟନଯୁଗଳ, ବାରଣପୋତଶୁଣ୍ଡୋପମେୟ ଚତୁରତରଷ୍ଟୂଳଦୋର୍ଦ୍ଦଣ୍ଡ ଯୁବକଙ୍କି ଏହି ଆଶ୍ରମଭୂମିର ଭୂଷଣ ସରି ଦିଶୁଅଛନ୍ତି ।

ସୀତା—( ଜଳକର ଦେଖି ସ୍ୱଗତ )  ଆହା ! ଏହାଙ୍କର ମନୋହର ରୂପ ସ୍ୱପ୍ନଦୃଷ୍ଟ ପ୍ରିୟଜନଙ୍କର ସଦୃଶ ହୋଇଅଛି । ମନେ କରେଁ, ମୋର ମନୋରଥ ସଫଳ ହେଲା । ମୁଁ ଏହାଙ୍କୁ ଉଦ୍ଦେଶ୍ୟ କରି ସଞ୍ଜାତମନୋରଥା ଥିବାରୁ ସେହି ଦୁଷ୍ଟାତ୍ମା କୁସୁମବିଶିଖ ତୈଲୋକ୍ୟବୀର ହୋଇ ସୁଦ୍ଧା "ଅବଳାଜନ ଲକ୍ଷ୍ୟରେ ଅକୀର୍ତ୍ତି ହେବ" ଏହା ନ ବିଚାରି ସନ୍ତତ ଶରନିକର ପ୍ରହାରରେ ବାଧା ଦେଉଅଛି; ନିଶାକର ସମୁଦ୍ରଗର୍ଭରୁ ସହବାସସୁଲଭ କାଳକୂଟକୁ କଳଙ୍କବ୍ୟାଜରେ ଗ୍ରହଣ କରି ସନ୍ତାପ ଦେଉଅଛି; ଆଉ ମଳୟମାରୁତ ମଧ ଦକ୍ଷିଣ ଦିଗ୍‌ନିବାସ ସମ୍ବନ୍ଧରେ କୃତାନ୍ତର ନିତାନ୍ତ ଦାରୁଣ ଗୁଣକୁ ପାଇ ମଦୀୟ ପ୍ରାଣାପହରଣାର୍ଥେ ଭ୍ରମଣ କରୁଅଛି ।

(ଏହା କହି ସଖୀମାନଙ୍କ ସଙ୍ଗେ ଗୃହଁ ରହିବା)

ଶତାନନ—ମହାରାଜ ! ଏହି ରଘୁକୁମାରଙ୍କୁ ଦେଖନ୍ତୁ ।

ଜନକ—ଦେଖୁଅଛି, ପଞ୍ଚଶତପରିମିତ ବୀରମାନଙ୍କ ଦ୍ୱାରା ସମାକୃଷ୍ଟ କୃତହେଙ୍କାରବ ଚକ୍ରାଷ୍ଟକ-ଶକଟର ଉପରି

ଦେଦୀପ୍ୟମାନ ଲୋହମୟୀ ଯେଷ୍ଟିକାସ୍ଥ ମହାଧନୁକୁ ରାମଚନ୍ଦ୍ର ସଂଧୈର୍ଯ୍ୟହୃଦୟରେ ସାବଷ୍ଟମ୍ଭେ ଗ୍ରହୁଁ ଅଛନ୍ତି ।

ବିଶ୍ୱାମିତ୍ର—ଏଇ ଦେଖନ୍ତୁ, ଲୀଳାକ୍ରମେ ତାକୁ ଗ୍ରହଣ କରି ଭୂପୃଷ୍ଠରେ ନହିତ କଲେ ।

ଲକ୍ଷ୍ମଣ—ଦେଖନ୍ତୁ, ପୁନରପି ତାହାର ଗୁର୍ବୀ ମୌର୍ବୀ ସନ୍ଧାନ କରୁଅଛନ୍ତି ।

ଜନକ—(ସାନନ୍ଦାଶ୍ଚର୍ଯ୍ୟରେ) ଅହୋ ! ଆକର୍ଣ୍ଣାକର୍ଷଣ କରି ସାରିଲେଣି ତ !

ଶତାନନ୍ଦ—ଆଉ କଣ କହିବ, ତେତେବଡ଼ ଧନୁକୁ ଅତି ଶୀଘ୍ର ଦ୍ୱିଖଣ୍ଡ କରିଦେଲେ ।

ଜନକ—(ସାଶ୍ଚର୍ଯ୍ୟ)

ସ୍ରଗ୍ଧରା ବୃତ୍ତ ।

ଗର୍ଜନ୍ତାମୀଳମେଘପ୍ରତିମ ଲଳିତ ଏ ବୀରସନ୍ତାନ ରାମ
ଭାଙ୍ଗନ୍ତେ ଶୈବଚାପେ ଜନିତ ଅଶନି ନିର୍ଘୋଷ ହାୟ ! ପ୍ରକାମ ।
ତ୍ରୈଲୋକ୍ୟାବାସ ଲୋକେ ଭୟରୁ ତ ଲଭିଲେ ଦୀର୍ଘମୂର୍ଚ୍ଛା ପ୍ରମାଦ
ସୁସ୍ଥାତ୍ମା ହୋଇ ଧୀରେ ବଚକିତହୃଦୟେ ଭାବିଲେ ଏ କି
ନାଦ । ୫୩ ।

ଶତାନନ୍ଦ—(ଜନକ ପ୍ରତି ରହସ୍ୟରେ)

ସୁଗନ୍ଧି ବୃତ୍ତ ।

କାଣ ଏହି ତୁମ୍ଭ ମିତ୍ର ଗାଧିପୁତ୍ର ଏକ୍ଷଣ ।
ଏହି ରାମଚନ୍ଦ୍ର, ଏହି ତାଙ୍କ ଭାଇ ଲକ୍ଷ୍ମଣ ।

ଅଗ ଏହୁ ବେଶ ପାଇ ଯେହ୍ନ ଯେହ୍ନ ଅଗତ ।
ରାବଣାଦ ଦୈତ୍ୟ ବୋଲ ଭୂମିନାଥ ଜାଣ ତ । ୫୪ ।

ଜନକ—( ରହସ୍ୟରେ ) ବର୍ତ୍ତମାନ ସଦତ ହେଲ ।

ଶତାନନ୍ଦ—(ରହସ୍ୟରେ) ମନୋରଥ-ସମୁଦ୍ରରୁ ଉତ୍ତୀର୍ଣ୍ଣ ହେଲ
ପର ମା ଧୃ୍-ସମୁଦ୍ରରୁ ମଧ୍ୟ ଅମ୍ଭେମାନେ ଉତ୍ତୀର୍ଣ୍ଣ ହେଲୁଁ ।

ବିଶ୍ୱାମିତ୍ର—ହେ ଜନକରାଜ ! ଶ୍ରବଣ କରନ୍ତୁ ।

ମନ୍ଦାକ୍ରାନ୍ତ ବୃତ୍ତ ।

ରାମାକୃଷ୍ଟ ବ୍ୟୁଥିତ ହରକୋଦଣ୍ଡ-ସଂଜାତ ଘୋର-
ଧ୍ୟାନଦ୍ୱାରା ତ୍ରିଭୁବନଜନେ ସାଧ୍ୱସ-ଗ୍ରସ୍ତ-ବେର ।
ବାହୁଦ୍ୱନ୍ଦେ ସ୍ଥିର ଶିବ କଲେ ସ୍ୱୀୟ ସବ୍ୟାଙ୍ଗ ଭୀତ,
ଅଦ୍ୟ ବ୍ରହ୍ମା ବଦନ ମୁଦଲେ ଫ୍ରେଯୃପୀ ରକ୍ଷଣାର୍ଥ । ୫୬ ।

ଜନକ—ଏହା ଯଥାର୍ଥ ।

ବଧୂୟକ୍ଷିହ—ଏହ କ୍ଷବିସ୍ଫୂର୍ଜ୍ଜକ ଅତ ବଳବାନ୍ ଅଟେ ।
ପୂର୍ବ ଶମନଭବନରେ ଅତ୍ୟଦ୍ଭୁତ ଯୁଦ୍ଧରେ ସକଳ
ରାକ୍ଷସାଧୀଶ୍ୱର ରାବଣ ସକ୍ରୋଧେ ଯୁଗପତ୍ ଦଶମୁଖରେ
ପ୍ରଚଣ୍ଡ ଅଟ୍ଟହାସ ପ୍ରକାଶ କରଥିବାରୁ ଯେପର ଦଗ୍‌ଦନ୍ତ-
ସମୂହର ଅତ୍ୟୁଦ୍ଭୁତ କର୍ଣ୍ଣଜ୍ୱର ଉତ୍ପନ୍ନ ହୋଇଥିଲା,
ସମ୍ପ୍ରତ ଏହ କକୁସ୍ଥପୋତଦଳତ ମାହେଶ୍ୱର ଚାପର
ପ୍ରଚଣ୍ଡ ଧ୍ୱନରେ ମଧ୍ୟ ସେପର ହୋଇଅଛି ।

ସାରଣ—ବଧୂୟକ୍ଷିହ ! କଣ କହୁଅଛନ୍ତ ? ଭଗବାନ୍ ଶିବଙ୍କର

ଗୃପ ଭଗ୍ନ ହେବାରୁ ମହାରାଜଙ୍କର ମନୋରଥର ମୂଳୋଚ୍ଛେଦ ହୋଇଅଛି ।

ରାବଣ—(ବୃଦ୍ଧ୍ୟଷ୍ଟିକ ପ୍ରତି ସକ୍ରୋଧେ ହସି) ରାମ ଚନ୍ଦ୍ରଶେଖର-ଶରାସନକୁ ଦ୍ୱିଖଣ୍ଡ କରି ବୈଦେହୀଙ୍କ ବିବାହ ହେବ; ଏଥିରେ ଜନକ ପ୍ରଦାନକର୍ତ୍ତା ଅଉ ବଶିଷ୍ଠାମିତ୍ର ଅନୁମନ୍ତା ହୋଇଅଛନ୍ତି, ସ୍ୱୟଂ ଲଙ୍କେଶ ପୁଣି ଜାନକୀପ୍ରାପ୍ତି ଆଶାରେ ରାମବେଶ ଧାରଣପୂର୍ବକ ଆସି ନିରାଶ-ହୃଦୟରେ ସ୍ୱଗୃହକୁ ଫେରଯିବେ, ଏହା ଆପଣ କପରି ମଣୁଅଛନ୍ତି ?

ବୃଦ୍ଧ୍ୟଷ୍ଟିକ—(ସ୍ୱଗତ) ରାଜା ସକୋପ ହେଲେଣି, ଏହାଙ୍କ ଅନୁସର କହିବା ଉଚିତ । ( ପ୍ରକାଶତଃ ) ମହାରାଜ ! ଏହି ସମୟରେ ଯାହା କର୍ତ୍ତବ୍ୟ, ଅଭିଜ୍ଞ ମହାରାଜ ମହୋଦୟଙ୍କୁ ମୁଁ କଣ କହିବ ?

ରାବଣ—ତେବେ ଶ୍ରବଣ କର ।

ମାଲିନୀ ବୃତ୍ତ ।

ରଘୁଶିଶୁ ଅପକାରୀ ଧ୍ୱଂସି ମୋ ସୈନ୍ୟରାଶି,
ପ୍ରଥମ କରି ମୁଁ ବେଗେ ସାନୁଗେ ତାକୁ ନାଶି
ନିହତ କରିବି ଶେଷେ କୈତବାବାଲ୍ମିକିଙ୍କ
ଜନକକୁ କରିଲା ମୋ ବଞ୍ଚନା ଯେ ଅପାର ।୫୭।

ସାରଣ—ମହାରାଜ ! ଯଦିଚ ଏପରି ଇଚ୍ଛା—

ସ୍ରଗ୍ଧରା ବୃତ୍ତ ।

ହେ ପ୍ରଭୋ ନଦେଶ ହେଉ ରାମଗର୍ବ ନାଶିବ,
ମୁଦ୍ଗରେ ବିଦାରି ତାର ବକ୍ଷମାଂସ ଖାଇବ,
ସୀରକେତୁ-କଣ୍ଠଦେଶ ଖଡ୍ଗରେ ମୁଁ ହାଣିବ,
ଅଦ୍ୟ ତୁଷ୍ଟଚିତ୍ତ ହୋଇ ନିର୍ଗତାସ୍ର ଶୋଷିବା । ୫୬ ।

ବିଦ୍ୟୁଜ୍ଜିହ୍ୱ—(ସ୍ୱଗତ) ଏହି ରାମଚନ୍ଦ୍ର ବିଶ୍ୱାମିତ୍ରଙ୍କ ଉପଦେଶରେ ସମସ୍ତ ସମନ୍ତ୍ର ଅସ୍ତ୍ରମାନ ଗ୍ରହଣ କରି ଅତି ଗମ୍ଭୀର ପରାକ୍ରମଶାଳୀ ହୋଇଅଛି, ରଣାଙ୍ଗଣରେ ଏହାର ସମ୍ମୁଖରେ ମହାରାଜ ମଧ୍ୟ ତିଷ୍ଠିବାକୁ ସମର୍ଥ ନୁହନ୍ତି, ସାରଣ ଅବା କେତେକର ଲୋକ ? (ପ୍ରକାଶତଃ) ଧିକ୍ ମୂର୍ଖ! କାହିଁକି ଏପରି ପ୍ରଳାପ କରୁଅଛୁ ? ମହାରାଜ ! ଅଳ୍ପ ଶ୍ରବଣାର୍ଥ ପ୍ରସନ୍ନ ହୁଅନ୍ତୁ ।

ରାବଣ—ମୁଁ ସର୍ବଥା ମନ୍ତ୍ରିଙ୍କର ବିଧେୟ ଅଛି ।

ବିଦ୍ୟୁଜ୍ଜିହ୍ୱ—

ଅନୁଷ୍ଟୁପ୍ ବୃତ୍ତ ।

ସହସା କରିଲେ କାର୍ଯ୍ୟ ହୁଏ ନିଷ୍ଫଳ ହେ ପ୍ରଭୋ !
ବିଚାରି କରିଲେ ନିଶ୍ଚେ ବହୁ ମଙ୍ଗଳ ସମ୍ଭବେ । ୫୮ ।

ଅତଏବ ସମ୍ପ୍ରତି—

ଅନୁଷ୍ଟୁପ୍ ବୃତ୍ତ ।

ଯେପ୍ରାୟେ ରାମ ମରିବ ସୀତା ଯେପ୍ରାୟେ ମିଳିବ ।
ମାଲ୍ୟବନ୍ତାଦି ମନ୍ତ୍ରିଙ୍କୁ ପଚାରି କରିବା ତଥା । ୫୯ ।

ରାବଣ—ଯଦି ଏପରି କରିବାକୁ ହେବ, ତେବେ ପୁନରପି ବିମାନରେ ଲଙ୍କାନଗରୀକୁ ପ୍ରତିପ୍ରସ୍ଥାନ କରିବା ଅବଶ୍ୟକ । "ସୀତା ବଳାତ୍କାରେ ଗୃହୀତବ୍ୟା" ଏହା ତ ସ୍ଥିର ହେଲଣି । ବର୍ତ୍ତମାନ ଆଉ ତାହାର ଦର୍ଶନରୁ କି ପ୍ରୟୋଜନ ?

( ଏହା କହି ରାକ୍ଷସଦ୍ୱୟଙ୍କ ସହ ନିଷ୍କ୍ରାନ୍ତ ହେବା )

ଜନକ—(ହର୍ଷ ଓ ବିନୟ ସହିତ)

ଅନୁଷ୍ଟୁପ୍ ବୃତ୍ତ ।

ମହାମନା ସୁସିଦ୍ଧ୍ୟର୍ଥ ମହୋଦ୍ୟମବିଧାୟକ
ଗାଧିବଂଶାବ୍ଧିପୂର୍ଣ୍ଣେନ୍ଦୁ କୌଶିକଙ୍କୁ ସଦା ନମେ । ୬୦ ।

ଶତାନନ୍ଦ—ଭଗବନ୍ କୁଶିକନନ୍ଦନ !

ଅନୁଷ୍ଟୁପ୍ ବୃତ୍ତ ।

ସୀତା ସଂପ୍ରାପ୍ତ ରାମଙ୍କୁ ସୌମିତ୍ରେୟଙ୍କୁ ଉର୍ମିଳା
ଏ ଦୁହିଙ୍କ କନିଷ୍ଠଙ୍କୁ ମାଣ୍ଡବୀ ଶ୍ରୁତକୀର୍ତ୍ତିକା । ୬୧ ।

ବିଶ୍ୱାମିତ୍ର—ହଁ, ତାହାହିଁ ହେଉ ।

ସୀତା—( ସ୍ୱଗତ ) କପରି ! ମତ୍ତବାରଣକିଶୋରକର୍ତ୍ତୃକ ଇକ୍ଷୁଦଣ୍ଡ ଦ୍ୱିଖଣ୍ଡ ହେଲା ପରି ମହାମ୍ଭ ମନୋରଥବଲ୍ଲଭଙ୍କ-ଦ୍ୱାରା ଚଣ୍ଡିକେଶକୋଦଣ୍ଡ ଭଗ୍ନ ହୋଇ ପଡ଼ିଲା ! (ପ୍ରକାଶତଃ) ଉର୍ମିଳେ ! କଣ ଏ ?

ଊର୍ମିଳା—ହାୟ ହାୟ ! ରଘୁକୁମାରକର୍ତ୍ତୃକ ଭଗ୍ନ ହରକୋଦଣ୍ଡର ପ୍ରଲୟାବହ ଶବ୍ଦ ଶ୍ରବଣରେ ଭୟାକୁଳ ହୋଇ ଅମ୍ଭେମାନେ ଅନ୍ୟୋନ୍ୟ ଭୁଜବନ୍ଧନାବୃତ-ଗାତ୍ରା ଓ ନିମୀଲିତନେତ୍ରା ହୋଇ ଏହି ସନ୍ତୋଷଦାୟକ କ୍ଷଣକୁ କିପରି ଅତିବାହିତ କରିଦେଲୁଁ !

ମାଣ୍ଡବୀ—ଭଗିନି ! ଏବେ ବିଶ୍ୱାମିତ୍ରଙ୍କ ଚରଣରେ ପ୍ରଣାମ କରି ଅନ୍ତଃପୁରକୁ ବାହାରିଯିବା ।

ଶ୍ରୁତକୀର୍ତ୍ତି—ହେଉ, ସେହିପରି କରିବା ।

ଜନକ—( ଆନନ୍ଦ ସ୍ନେହ ଓ ବହୁମାନ ସହିତ ) ବତ୍ସ ! ରାମଭଦ୍ର ! ଆସ ଆସ ।

ସ୍ରଗ୍ଧରା ବୃତ୍ତ ।

ତୁମ୍ଭେ ବାହୁପ୍ରତାପୀ ଦିନକରକୁଳରେ ସର୍ବଥା ଦୀପ୍ୟମାନ
ଲାବଣ୍ୟାଧାର ଏହି ପ୍ରତରୁଣ ବୟସେ ଜାଣ ଗାମ୍ଭୀର୍ଯ୍ୟମାନ ।
ଆହା ମୋର ପ୍ରତିଜ୍ଞା-ଜଳନିଧିକଳନେ କର୍ଣ୍ଣଧାର ପ୍ରକାର
ଭାବେ ସନ୍ତୁଷ୍ଟଚିତ୍ତେ ଅଛି ମମ ତନୟା-ପୂର୍ବସତ୍ପୁଣ୍ୟ-ସାର ।୬୨।

ରାମ—(ନମ୍ର ମୁଖରେ ବିଶ୍ୱାମିତ୍ରଙ୍କ ପାର୍ଶ୍ୱରେ ବସିବା)

ପ୍ରତିହାରୀ—ମହାରାଜ ! ଏଠାରେ କନ୍ୟାମାନେ ଉପସ୍ଥିତ ଅଛନ୍ତି ।

ସୀତା—( ସ୍ୱଗତ ) ଏହି ଦେଖ, ହରକୋଦଣ୍ଡଖଣ୍ଡନକାରୀ ଏହିଠାରେ ବସିଅଛନ୍ତି, ତାହାଙ୍କୁ ଦେଖି ଭୟରେ ମୋ

ପାଣି ପାଦ ଚଳୁ ନାହିଁ । ( ମାଣ୍ଡବୀଙ୍କ ପାର୍ଶ୍ୱରେ ଅଢ଼ୁଆଳରେ ରହିବା )

ରାମ—(ସ୍ୱଗତ)

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

କାନ୍ତାଲୋକନକୌତୁକେ ବଳସିବା ଇଚ୍ଛା ହୁଏ ମାତର,
ସଙ୍କୋଚେ ତ ଗୁରୁଙ୍କ ସନ୍ନିକଟରେ ଅନମ୍ରତା ପତ୍ୱର ।
ବାଳା ପାଦର ନୂପୁରଧ୍ୱନିସମାକର୍ଣ୍ଣପ୍ରକର୍ଷୋତ୍ସବ
ମୋ କର୍ଣ୍ଣଦ୍ୱୟକୁ ପ୍ରମୋଦିତ କରେ ଏ ପୂର୍ଣ୍ଣ୍ୟ ସନ୍ଦ୍ଧିଭବ ।୭୭।

ଊର୍ମିଳା—(ସ୍ୱଗତ) ସେହି ଶିବଶରାସନଭଞ୍ଜନଙ୍କର ପାର୍ଶ୍ୱରେ ବସିଥିବା କନକାଭ ସୁକୁମାରାଙ୍ଗ ରାଜକୁମାର ଲକ୍ଷ୍ମଣ ବସିଅଛନ୍ତି, ଏହାଙ୍କୁ ଦେଖିଲାକ୍ଷଣି ମୋର ହୃଦୟ ମନ୍ମଥର ବିଳାସକୁରଙ୍ଗପ୍ରାପ୍ତ ହୋଇଗଲା କାହିଁକି ? ଏ କି ଆଶ୍ଚର୍ଯ୍ୟର କଥା ! ( ଏହା ଭାବି ଜନକଙ୍କ ନିକଟକୁ ବାହାରିଯିବା )

ଲକ୍ଷ୍ମଣ—(ସ୍ୱଗତ) ନିଶ୍ଚେ ଏହାର—

ଅନୁଷ୍ଟୁପ୍ ବୃତ୍ତ ।

କଟାକ୍ଷରଶ୍ମିରେ ମୋର ଚିତ୍ତ ଆକୃଷ୍ଟ ହୋଇଲା ।
ନିବର୍ତ୍ତିଲା ନାହିଁ ଅଦ୍ୟ କିଂକର୍ତ୍ତବ୍ୟବିମୂଢ଼ ମୁଁ ।୭୮।

(ଅନ୍ୟ ଦିଗକୁ ମୁଖ କରି ବସିବା)

ଜନକ—(କନ୍ୟାମାନଙ୍କୁ ଚାହିଁ) ଏହି ଭଗବାନ୍ ମହର୍ଷି ବିଶ୍ୱାମିତ୍ରଙ୍କୁ ପ୍ରଣାମ କର ।

କନ୍ୟାଗଣ—ଆର୍ଯ୍ୟ ତାତପାଦ ! ଆପଣଙ୍କୁ ଆମ୍ଭେମାନେ ପ୍ରଣାମ କରୁଅଛୁଁ ।

ବିଶ୍ୱାମିତ୍ର—ତୁମ୍ଭମାନଙ୍କର ମନୋରଥ ସଫଳ ହେଉ ।

କନ୍ୟାଗଣ—(ଅଳ୍ପ ପଛକୁ ଘୁଞ୍ଚିଯାଇ ଠିଆ ହେବା)

ବିଶ୍ୱାମିତ୍ର—ରାଜନ୍ ! ବର୍ତ୍ତମାନ ଆମ୍ଭେ ଯଜ୍ଞ ଆରମ୍ଭ କରିବୁଁ, ତୁମ୍ଭେ ମଧ୍ୟ ଯଥୋଚିତ ନିର୍ବାହ କର ।

ଜନକ—ପ୍ରତିହାରିନ୍ ! ଆମ୍ଭର ଏହି ଆଦେଶ ଅଧିକାରିମାନଙ୍କୁ ଜଣାଇଦିଅ ।

ସ୍ରଗ୍ଧରା ବୃତ୍ତ ।

ଦ୍ୱାରେ ଦ୍ୱାରେ ସମସ୍ତେ ପ୍ରସବଭର-ସମାରମ୍ଭରମ୍ଭାକୁ ସନ୍ଥ;
ଭିତ୍ତିପଂକ୍ତିକି ଏବେ ଦଧିମିଳିତସୁଧାଲେପନେ ଶୁକ୍ଳ ରଖ ।
ବାନ୍ଧନ୍ତୁ ସ୍ତ୍ରୀ ବିତାନପ୍ରକର ଚଉଦିଗେ ପୁଷ୍ପମାଳା ସମୂହ,
ଲେଖାନ୍ତୁ ଧିପ୍ର ଚିତ୍ର ପ୍ରତିକୁଡ଼ ଉପରେ ହେବ ସୀତା ବିବାହ ।

ପ୍ରତିହାରୀ—ମହାରାଜଙ୍କର ଯେ ଆଜ୍ଞା । (ନିଷ୍କ୍ରାନ୍ତ)

ନେପଥ୍ୟରେ—

ଇନ୍ଦ୍ରବଜ୍ରା ବୃତ୍ତ ।

ସାକେତୁ ସାକେତ ଅଧୀଶ ଆସି
ପୁଣ୍ୟାଶ୍ରମେ ଅଦ୍ୟ ଗଲେ ପ୍ରବେଶି ।
ହେଲା ସମାଚ୍ଛାଦିତ ଏ ପ୍ରଦେଶ,
ଆସନ୍ତ ଉଷ୍ଟ୍ରାଶ୍ୱ କରୀ ଅଶେଷ । ୭୦ ।

ଜନକ—ଭଗବନ୍ ବିଶ୍ୱାମିତ୍ର ! ଦେବବ୍ରତ ଦଶରଥ ମହାରାଜାଙ୍କ ଶୁଭାଗମନ ଜଣାଉଅଛନ୍ତି । ଅତଏବ ପୁରୋହିତ ଶତାନନ୍ଦ, ରାମ ଓ ଲକ୍ଷ୍ମଣ ତଥା ଚ ସୀତା ପ୍ରଭୃତିଙ୍କୁ ସଙ୍ଗେ ନେଇ ଅମ୍ଭେ ଦୁହେଁ ଚରମିତ୍ର ମହାରାଜ ଦଶରଥଙ୍କୁ ସମ୍ଭାବନାପୂର୍ବକ ଅଭ୍ୟୁପଗମ କରିବା ସମୁଚିତ ।

ବିଶ୍ୱାମିତ୍ର—ହଁ, ତାହାହିଁ କରିବାକୁ ହେବ ।

ଜନକ—ଦେବବ୍ରତ ! କୋଶଳାଧିପତିଙ୍କର ଅନ୍ତଃପୁର ସ୍ତ୍ରୀଜନଙ୍କ ସମ୍ଭାଜନାର୍ଥ ଆମ୍ଭ ଅନ୍ତଃପୁର ସ୍ତ୍ରୀମାନଙ୍କୁ ମଧ୍ୟ ପ୍ରସ୍ତୁତ କରାଅ ।

ସମସ୍ତେ ନିଷ୍କ୍ରାନ୍ତ ।

ଚତୁର୍ଥାଙ୍କ ସମାପ୍ତ ।



# ପଞ୍ଚମ ଅଙ୍କ ।



ବଗ୍ଧ ପ୍ରବେଶ ।

ବଗ୍ଧ—

ପୃଥ୍ୱୀ ବୃତ୍ତ ।

ଜନସ୍ଥାନ-ବାସୀ ଋଷିଜନଙ୍କ ରକ୍ଷାର୍ଥ ନିପୁଣ
ପ୍ରତିଜ୍ଞା ଦୈତେୟ କଥନ ବିଷୟେ ରାମ ଅଧୁନା
କରନ୍ତେ ତା ଜାଣି ପ୍ରକୁପିତ ସଖା ମୋ ଖର ବଳୀ
କହେ ମୋତେ ତୁମ୍ଭେ ରଘୁଶିଶୁକୁ ବେଗେ କର ବଳ । ୧ ।

(ସଗର୍ବେ ଅଳ୍ପ ହସି)

ଅନୁଷ୍ଟୁପ୍ ବୃତ୍ତ ।

ବଳୀ ଅଟେ ଦୈତ୍ୟରାଜ ତଦପେକ୍ଷା ଖର୍ଗୁର ।
ତଦପେକ୍ଷା ତ ଲବଣ ତଦପେକ୍ଷା ବଳିଷ୍ଠ ମୁଁ । ୨ ।

ଅତଏବ ମୋ ସମାନ କିଏ ଅଛି ? ପରଂତୁ ରାବଣ ନୈକଷେୟ ବୋଲି ଅମ୍ଭମାନଙ୍କର ସମ୍ମତିକ୍ରମେ ଲଙ୍କା-ରାଜ୍ୟରେ ଅଭିଷିକ୍ତ ହୋଇଅଛନ୍ତି ।
(ଗର୍ବପୂର୍ବକ) ହାୟ ହାୟ !

ଅନୁଷ୍ଟୁପ୍ ବୃତ୍ତ ।

କ କୁହାଯାଇ ପାରେ ତା ହିମବତ୍ ଧୈର୍ଯ୍ୟ-ଧୈର୍ଯ୍ୟତା ।
ଯାର ପ୍ରତିଜ୍ଞା ଦୁର୍ଦମ୍ୟା ରକ୍ଷୋମାତ୍ର ବିନାଶନେ । ୩ ।

ଅତଏବ ସମ୍ପ୍ରତି ଖରାସୁରର ଆଦେଶ ବିନା ମଧ୍ୟ ଏ ମୋର ଅନୁଶାସନୀୟ । ବର୍ତ୍ତମାନ ମୁଁ ଗୃହୀତପରପୃଷ୍ଟ-ରୂପରେ ଏହାଙ୍କୁ ଦେଖୁଅଛି । ହେଇଟି ଯେ ରାଘବ ରାମ ଏହି ପର୍ବତର ତଟପ୍ରାନ୍ତବର୍ତ୍ତୀ ମନୋଜ୍ଞ କୁଟ୍ମଳିତକର-ପତ୍ରପୂରିତ ସୁଶୋଭିତ କେଶରବୃକ୍ଷମାନଙ୍କର ଛାୟାରେ ପରିଶୀତଳ ବିଜନମନୋହର ସମତଳ ବିପୁଳ ଉପଳର ଉପରେ ବସି ସୀତା ସହିତ ଆଳାପ କରୁଅଛନ୍ତି । ଲକ୍ଷ୍ମଣ ମଧ୍ୟ ଶ୍ରୀଖଣ୍ଡତରୁବାଟିକା ନିକଟବର୍ତ୍ତୀ ପର୍ଣ୍ଣଶାଳାର ଦ୍ୱାର-ଦେଶରେ ଉପବେଶନ କରି ତୂଣୀର ଶର ଓ ଶରାସନକୁ ସୁସଜ୍ଜ ରଖି କୋଷସ୍ଥ କରବାଳର ଅର୍ଦ୍ଧାକର୍ଷଣପୂର୍ବକ ଆକାଶକୁ ନିରୀକ୍ଷଣ କରୁଅଛନ୍ତି । ଅହୋ ! ଏହାର ଗାମ୍ଭୀର୍ଯ୍ୟ ଓ ଧୀରୋଦ୍ଧତୋପବେଶନ କୀଦୃଶ ଭୟପ୍ରଦ ଯେ ! ! (ସଦୁଃଖେ)

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଏ ସୌମିତ୍ରି ନିତାନ୍ତ ଅଦ୍ଭୁତ ମହାସତ୍ତ୍ୱାଢ୍ୟ ଯେହେତୁ ପୁଣି,
ଏ ମୋ ସାଧ୍ୟ ନୁହେଁ ତ ରାମକୁ ମୁଁ କିପ୍ରକାରେ ଅବା ନାଶିବି ।
ତେଣୁ କ୍ଷିପ୍ର ତଦୀୟ ରୂପ ଧରି ତା କାନ୍ତାକୁ ଚୋରାଇବି,
ସନ୍ତୁଷ୍ଟେ ଅତି ବିପ୍ରକୃଷ୍ଟ ବନରେ ସ୍ୱେଚ୍ଛାମତେ କ୍ରୀଡିବି । ୪ ।

ଅନୁଷ୍ଟୁପ୍ ବୃତ୍ତ ।

ପ୍ରାଣ ତେଜିବ ଏ ରାମ କାନ୍ତାବିରହେ ଲକ୍ଷ୍ମଣ
ଗତାୟୁ ହେବ ତଦ୍ଦୁଃଖେ ସିଦ୍ଧ ହେବ ଖରେପ୍ସିତ । ୫ ।

ସେଥିପାଇଁ ଏହି ଅନତିଦୂରସ୍ଥ କୋବଦାର ବନରେ ଏକାକିନୀ ସୀତାର ବହିର୍ଗମନ ନିରୀକ୍ଷଣ କରୁଥିବ । ଏଠାରେ ଜଟାୟୁ ମଧ୍ୟ ଦିଶୁ ନାହିଁ । ବୋଧହୁଏ, ତଦାୟ ଅଗ୍ରଜ ସମ୍ପାତିର ଦର୍ଶନାର୍ଥ ଯାଇଅଛି । ( ପୂର୍ବୋଦ୍ଭାଗକୁ ଚାହିଁ ) ଏ କପଟ ! ଲଙ୍କାଦ୍ୱୀପରୁ ସୂର୍ପଣଖା ଅସି ଏଠାରେ କାହିଁକି ଉପଗତ ହେଲା ? ଅଚ୍ଛା ହେଉ, ମହାରାଜ ରାବଣଙ୍କର କୁଶଳ ସମାଚାର ପଚାରିବ । ( ସମୀପକୁ ଯିବା )

ସୂର୍ପଣଖାର ପ୍ରବେଶ ।

ସୂର୍ପଣଖା—"ପଞ୍ଚବଟୀରେ କୁଟୀର ନିର୍ମାଣପୂର୍ବକ କୃତନିବାସ ରଘୁରାଜତନୟର କଳତ୍ର ସୀତାକୁ ମୋ ନିମନ୍ତେ ଅପହରଣ କରି ଆଣିବାକୁ ହେବ" ଏହା କହି ମଦୀୟ ଜ୍ୟେଷ୍ଠ ଭ୍ରାତା ରାବଣ ମୋତେ ପଠାଇଅଛି । ବର୍ତ୍ତମାନ ମୁଁ ଗୃଧ୍ରାଭିନତ୍ତ୍ୟହରୂପରେ ଦେଖୁଅଛି । ହୋଇଛି ସେହି ସୁନ୍ଦରୀ ରମଣୀମଣି ପତିର ପାର୍ଶ୍ୱରେ ବସିଅଛି । ମୁଁ ପୁଣି କପଟ ତାହାକୁ ଅପହରି ପାରିବି, ଏହାହିଁ ମୁଁ ଭାବନା କରୁଅଛି । ଅଥବା ସେ କଥା ତେଣେ ଥାଉ ।

ପ୍ରଥମେ—

ଅନୁଷ୍ଟୁପ୍ ବୃତ୍ତ

ନୀଳୋତ୍ପଳଦଳଶ୍ୟାମ କାମସୁନ୍ଦର ରାମକୁ
ଦେଖିଲାକ୍ଷଣି ମୋ ଚିତ୍ତ ହରିଲା ପୁଷ୍ପସାୟକ ।୨।

ଅତଏବ ଏହିକ୍ଷଣି ରାମକୁ ଏକାକୀ ବହିର୍ଗତ ଦେଖି ସୀତାରୂପରେ ତାହାକୁ ଭୁଲାଇ ଦୂରଦେଶକୁ ଘେନି ଯିବ । ପରେ ହେମକୂଟ ପ୍ରଦେଶରେ ଇଚ୍ଛାନୁମତେ ତାହା ସଙ୍ଗେ ବିହାର କରିବ ।

(ସମ୍ମୁଖକୁ ଚାଲିଯିବା)

ବିରାଧ—ଅୟି ସୂର୍ପଣଖେ ! ତୁମ୍ଭର ସବୁ କୁଶଳ ତ ?

ସୂର୍ପଣଖା—ଅହୋ ବିରାଧ ! ଆର୍ଯ୍ୟ ତୁମ୍ଭର ସବୁ କୁଶଳ କି ?

ବିରାଧ—ମହାରାଜ ଲଙ୍କାଧିପତିଙ୍କର ସମସ୍ତ କୁଶଳ କି ?

ସୂର୍ପଣଖା—ଯଦି ନିର୍ବିଘ୍ନର ହେବେ ତେବେ କୁଶଳୀ ହେବେ ।

ବିରାଧ—(ସ୍ୱଗତ) ଆଉ ପୁଣି କଣ ବିଘ୍ନର ? (ପ୍ରକାଶତଃ) ରାକ୍ଷସମାନଙ୍କ ବିନାଶନାର୍ଥ ଦାଶରଥିକୃତ ପ୍ରତିଜ୍ଞା ମହାରାଜ ଶୁଣିଅଛନ୍ତି କି ?

ସୂର୍ପଣଖା—ହିଁ ଶୁଣିଅଛନ୍ତି, ସେଥିପାଇଁ ଯାହା କରିବାକୁ ହେବ, ମନ୍ତ୍ରିମାନଙ୍କ ସହିତ ତାହା ମନ୍ତ୍ରଣା ମଧ୍ୟ କରିଅଛନ୍ତି । ଆଉ ଅକମ୍ପନ ଚରଦ୍ୱାରା ଖରଙ୍କୁ ଅନ୍ୟର ଅବଜ୍ଞାତ କଣ ଅବା ସନ୍ଦେଶ ଦେଇ ପଠାଇଅଛନ୍ତି ।

ବିରାଧ—(ସ୍ୱଗତ) ଅତଏବ ଖରଙ୍କର ମୋତେ ସମର୍ଯ୍ୟାଦ ଅହ୍ୱାନରେ ସମ୍ମାନିତ କରି ପଠାଇଅଛନ୍ତି । (ପ୍ରକାଶତଃ) କଣ ! ଏହି ରାଜପୁତ୍ର ତୁହେଁ ରାକ୍ଷସମାନଙ୍କର ଦଣ୍ଡ-ବଧାନାର୍ଥ କେବଳ ଜନସ୍ଥାନକୁ ଆସିଅଛନ୍ତି କି ?

ସୂର୍ପଣଖା—ଆର୍ଯ୍ୟ ଶୁଣନ୍ତୁ, ମହାରାଜ ଅପେ ଅନର୍ଥ ସମ୍ପାଦନ କରିଅଛନ୍ତି ।

ବିରାଧ—(ସାଦରେ) ସାବଧାନ ଶୁଣୁଅଛୁ, ସମସ୍ତ କହ ।

ସୂର୍ପଣଖା—ଜନକ ନାମକ ଏକ ରାଜର୍ଷି ଅଛନ୍ତି ।

ବିରାଧ— ମୁଁ ଜାଣେ, ସେ ଶିବଭକ୍ତ ଥିବାରୁ ଧର୍ମତଃ ମହାରାଜଙ୍କର ମିତ୍ର ଅଟନ୍ତି ।

ସୂର୍ପଣଖା—ତାହାଙ୍କ କନ୍ୟା ସୀତା ରାମ ପ୍ରତି ଏକାନ୍ତ ଅନୁରାଗିଣୀ ଥିବାର ଜାଣି ଶୁଣି ମହାରାଜ ତାହାକୁ ବିବାହ କରିବା ନିମନ୍ତେ ମାୟିକ ରାମବେଶରେ ସେହିଠାକୁ ଯାଇଥିଲେ ।

ବିରାଧ—(ସ୍ୱଗତ) ମୋ ପରି ତାହାଙ୍କର ମନ ମଧ୍ୟ ଏହା ପ୍ରତି ଅନୁରକ୍ତ ହେଲା । (ପ୍ରକାଶତଃ) ତା ପରେ ହେଲା କଣ ?

ସୂର୍ପଣଖା—ତଦନନ୍ତର ଜନକରାଜା ସୀତାବିବାହ ସମ୍ବନ୍ଧରେ ହରଶରାସନାରୋପଣ ପଣ କଲେ ।

ବିରାଧ—ରାକ୍ଷସତ୍ୱରୁ ମହାରାଜଙ୍କ ପକ୍ଷେ ତାହା ତ ଦୁଷ୍କର ଅଟେ ।

ସୂର୍ପଣଖା—ଅତଏବ ସେ ରାଜପୁତ୍ର ସୀତାର ପାଣିଗ୍ରହଣ କଲା ।

ବିରାଧ—ତା ଉତ୍ତାରୁ—

ସୂର୍ପଣଖା—ତା ପରେ ଅନଳ୍ପପ୍ରସର ଅମର୍ଷ, କ୍ରୋଧ, ଲଜ୍ଜା ଓ ଅନୁରାଗବଶରୁ ଅବଶ ଭଳି ରାବଣ ଲଙ୍କାପୁରକୁ ଆସି ମାଲ୍ୟବନ୍ତ ପ୍ରଭୃତି ମନ୍ତ୍ରିମାନଙ୍କ ସହିତ ମନ୍ତ୍ରଣା କରି କଣ ଅବା ସ୍ଥିର କଲେ ।

ବିରାଧ—ତା ଉତ୍ତାରୁ କଣ ହେଲା ?

ଶୂର୍ପଣଖା—ତଦନ୍ତର ମାହେଶ୍ୱର ପରଶୁରାମଙ୍କୁ ଶିବଧନୁଧ୍ୱଂସନ ନିବେଦନରେ ସକ୍ରୋଧ କରି ରାମବିନାଶାର୍ଥ ପ୍ରେରଣ କଲେ ।

ବିରାଧ—ସେ ତ ସମଗ୍ରରାଜନ୍ୟବିନାଶନ-ପ୍ରତିଜ୍ଞାସମୁଦ୍ରପାରଙ୍ଗମ ପାରଶ୍ୱଧିକ-ଲଲାମ ଅଟନ୍ତି । ଅଚ୍ଛା, ତା ଉତ୍ତାରୁ ହେଲା କଣ ?

ଶୂର୍ପଣଖା—ତା ପରେ ରାଘବପ୍ରବୀର ସକ୍ରୋଧେ ବିଷ୍ଣୁଶରାସନ ସହିତ ତଦୀୟ ଶକ୍ତିକ ସ୍ୱାତ୍ମୀକରଣପୂର୍ବକ ପୁଣ୍ୟ-ଲୋକ ପ୍ରତି ଗତିନିରୋଧ କଲାରୁ ଭାର୍ଗବ ହତଗର୍ବ ହେଲେ ।

ବିରାଧ—( ଆଶ୍ଚର୍ଯ୍ୟ ଓ ଦୁଃଖ ସହିତ)

ଇନ୍ଦ୍ରବଜ୍ରା ବୃତ୍ତ ।

ଯାହାବଳେ ରାବଣ ଦର୍ପହନ୍ତା,
ସେ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ଭୂନିୟନ୍ତା ।
ତାହାଙ୍କୁ ଜେତା ଯାଦ ସଂହାରନ୍ତି,
ଏହା କରେ ଏ ଜଗତି ପରାସ୍ତ । ୭ ।

ତା ପରେ କଣ କଲେ ?

ଶୂର୍ପଣଖା—ତା ପରେ ମହାରାଜଙ୍କ କର୍ତ୍ତୃକ ପ୍ରେଷିତ ଆର୍ଯ୍ୟ ବଟୁ୍ୟକ୍ତିଙ୍କ ପ୍ରଭୃତି ମନ୍ତ୍ରଣା କୈକେୟୀ ଆଜ୍ଞା ଦଶରଥର ଶରୀରରେ ଅବଷ୍ଟ ରହିଲେ ।

ବିରାଧ—ତା ପରେ ?

ସୂର୍ପଣଖା—ଅନନ୍ତର ପୂର୍ବଦତ୍ତ ବରଦ୍ୱୟ ଅନୁସାରେ ରାମର ବନବାସ ଆଉ ଭରତର ରାଜ୍ୟାଭିଷେକ ରାଜାଙ୍କୁ ପ୍ରାର୍ଥନା କରିବାପାଇଁ ମନ୍ଥରା ନିର୍ବନ୍ଧ କଲାରୁ କୈକେୟୀ ସ୍ୱୀକାର ପୂର୍ବକ କ୍ରୋଧାଗାରରେ ପ୍ରବେଶ କଲା ।

ବିରାଧ—ଆଉ କହିବି କଣ ? ତା ପରେ ସବୁ ଜଣାଗଲା । ସେ ରାଜା ବୃଦ୍ଧ ଥାଇ ସୁଦ୍ଧା ଯୁବତୀକାମୁକ ହୋଇ ତାହାର ପ୍ରାର୍ଥନାନୁସାରେ ଜ୍ୟେଷ୍ଠପୁତ୍ରକୁ ବନକୁ ପଠାଇଅଛି ।

ସୂର୍ପଣଖା—ରାମକୁ ଅରଣ୍ୟଗମନୋଦ୍ୟତ ଦେଖି ଲକ୍ଷ୍ମଣ ଆଉ ସୀତା ତାହାର ଅନୁଗମନ କଲେ । ପଛେ ରାକ୍ଷସାବେଶ-ବିମୁକ୍ତ ଦଶରଥ ପୁତ୍ରର ଅରଣ୍ୟପ୍ରସ୍ଥାନ ଜାଣି ଗତ-ଜୀବିତ ହେଲା ।

ବିରାଧ—ତେବେ ମହାରାଜ ରାବଣଙ୍କ କର୍ତ୍ତୃକ ଦଶରଥ ନିହତ କରାଗଲା । ଅଚ୍ଛା, ତା ଉତ୍ତାରୁ ପୁଣି କଣ ହେଲା ?

ସୂର୍ପଣଖା—କନିଷ୍ଠର ରାଜ୍ୟାଭିଷେକ ଅନୁଚିତ ଭାବି ଭରତ ବନକୁ ଆସି ରାମଙ୍କୁ ପ୍ରତ୍ୟାବର୍ତ୍ତନାର୍ଥ ପ୍ରାର୍ଥନା କରିବାରୁ ରାମ ପ୍ରତିନିଧିସ୍ୱରୂପ ସଂସ୍ଥାପନାର୍ଥ ନିଜର ପାଦୁକାଯୁଗଳ ଦେଇ ଭରତକୁ ଫେର ଅଯୋଧ୍ୟାକୁ ପଠାଇଦେଲା ।

ବିରାଧ—ସମସ୍ତ ବୃତ୍ତାନ୍ତ ଅବଗତ ହେଲି । ଏଥିରେ ମହା-ରାଜଙ୍କର ଅନର୍ଥ କଣ ଅଛି ? ମହାରାଜ ରାମଙ୍କୁ ଅରଣ୍ୟକୁ ଅଣାଇ ତପସ୍ୟ ପ୍ରଭୁଶକ୍ତି ଦୂର କରାଇ-ଅଛନ୍ତି । ପ୍ରଭୁଶକ୍ତି ଅଭାବରୁ ମନ୍ତ୍ରଣା ଓ ଉତ୍ସାହ ସୁଦ୍ଧା

ତାହାର ନାହିଁ । ଅତଏବ ମହାରାଜ ଭଲ କରିଅଛନ୍ତି ।
ତୁମ୍ଭେ ପୁଣି ଏଠାକୁ କାହିଁକି ଆସିଅଛ ?

ସୂର୍ପଣଖା—ସୀତାର ଅପହରଣ ନିମନ୍ତେ ଲଙ୍କାନାଥ ପଠାଇ-
ଅଛନ୍ତି ।

ବିରାଧ—(ସ୍ୱଗତ)ସେ ତ ବିରାଧର ସ୍ୱୀକୃତ ହେବ। (ପ୍ରକାଶତଃ)
ତୁମ୍ଭର ଏହା ସାଧ୍ୟ ନୁହେ ।

ସୂର୍ପଣଖା—(ସ୍ୱଗତ) ଜାନକୀ ବେଶରେ ରାମକୁ ପାଇବା-
ପାଇଁ ତ ମୋର ଏହି ଉଦ୍ୟମ । ଅଚ୍ଛା ହେଉ, ଏହାକୁ
ଏପରି କହିଦେବି । ( ପ୍ରକାଶତଃ ) ତାହା ହେଲେ
ଲଙ୍କାପୁରକୁ ବାହାରିଯିବି ।

ବିରାଧ—(ସ୍ୱଗତ) ମୋର ପ୍ରସ୍ତୁତ କାର୍ଯ୍ୟର ଅନ୍ତରାୟ ଦୂର
ହେଲା । (ପ୍ରକାଶତଃ) ହଁ, ତାହାହିଁ କର ।

ସୂର୍ପଣଖା—ତୁମେ ପୁଣି କି ହେତୁରୁ ଏହି ଆଶ୍ରମ ନିକଟକୁ
ଆସିଅଛ ?

ବିରାଧ—ଖରଦୂଷଣ ରାମଙ୍କୁ ନିହତ କର ବୋଲି ମୋତେ
ପଠାଇଅଛନ୍ତି ।

ସୂର୍ପଣଖା—(ସ୍ୱଗତ) ହାୟ ! ମୋର ପ୍ରିୟବଲ୍ଲଭକୁ ନାଶିବାପାଇଁ
ଆସିଅଛୁ ? ଯାଅ ଯାଅ ! (ପ୍ରକାଶତଃ) ତୁମ୍ଭର ମଧ୍ୟ ଏ
କାର୍ଯ୍ୟ ସାଧ୍ୟ ନୁହେ ।

ବିରାଧ—(ସ୍ୱଗତ) ଏଥିରେ ମୋର କି ପ୍ରୟୋଜନ ? ମୁଁ
କେବଳ ସୀତାକୁ ଧରି ପଳାଇବାର ଇଚ୍ଛା କରେଁ ।

ଅଚ୍ଛା, ହେଉ଼ ଏହାକୁ ଏପରି କହିଦେବ । (ପ୍ରକାଶତଃ) ଅତଏବ ମୁଁ ଯାହା ଯାହା ଦେଖିଅଛି, ସେ ସବୁ ନିବେଦନ କରିବାପାଇଁ ଖରଦୂଷଣଙ୍କ ସମୀପକୁ ପ୍ରସ୍ଥାନ କରିବ ।

ସୂର୍ପଣଖା—(ସ୍ୱଗତ) ଦୈବବଳରୁ ମୋର ପ୍ରସ୍ତୁତ କାର୍ଯ୍ୟରୁ ପାପ ନିବୃତ୍ତି ହେଲା । ( ପ୍ରକାଶତଃ ) ଶୀଘ୍ର ଯାଅ, ଇଚ୍ଛାନୁମତ କାର୍ଯ୍ୟ କର ।

(ଦୁହେଁ ନିଷ୍କ୍ରାନ୍ତ)

ଇତି ବିଷ୍କୁମ୍ଭ ।



ତଦନନ୍ତର ଯଥାନିର୍ଦ୍ଦିଷ୍ଟ ରାମ ଓ ସୀତାଙ୍କର ପ୍ରବେଶ ।

ରାମ—ଅୟି ପ୍ରେୟସି ଜାନକି !

ସୁଗନ୍ଧି ବୃତ୍ତି ।

ଅନ୍ତସାର ଶମ୍ଭୁଚାପ-ଦମ୍ଭ ଲୋପ ପାଇଲା ।
ମୋ ହୃଦୁ ସ୍ମରାର୍ତ୍ତି ଦୂର ତୋର ହେତୁ ହୋଇଲା ।
ପର୍ଶୁହସ୍ତ ଶୌର୍ଯ୍ୟ ଗର୍ବ ଲୁପ୍ତ କୋପ ଆଦର ।
ଅଦ୍ୟ ଅଳ୍ପ ଉଦ୍ୟମେ ତୁ ମୋର ହେଲୁ ସୁନ୍ଦରି । ୮ ।

ସୀତା—(ଅଳ୍ପମାତ୍ର ହାସ ପ୍ରକାଶପୂର୍ବକ ତୁନି ରହିବା)

ରାମ—

ମନ୍ଦାକ୍ରାନ୍ତା ବୃତ୍ତ ।

ପୀଡ଼ା ଦେଉଛି ପିକକଳକଳାରାବରେ କର୍ଣ୍ଣ ମୋର ।
ମନ୍ଦେ ମନ୍ଦେ ବହନ୍ତ ବନ୍ଧୁ ସନ୍ତୋଷ ଦେ ଏକବାର ।
ଶୁକ୍ଳାମ୍ଭୋଜାନୁଗତ ସୁଷମା ଆନନେ ତୋ ପ୍ରକାଶ ।
କାନ୍ତେ ! ନାହିଁ ଭ୍ରମରମଧୁରାଳାପ-ସମ୍ମୋଦ ଲେଶ । ୯ ।

ସୀତା—ଆର୍ଯ୍ୟପୁତ୍ରଙ୍କର ଅନ୍ୟଜନଦୁଷ୍କର ହରକୋଦଣ୍ଡଖଣ୍ଡନ ଆଉ ପଶୁରାମଗର୍ବଧ୍ୱଂସନ ସୁନ୍ଦର ହେବାର ସ୍ମରଣ କରି ସମ୍ପ୍ରତି କ୍ଷଣକାଳ ପର୍ଯ୍ୟନ୍ତ ଆଶ୍ଚର୍ଯ୍ୟ-ସ୍ତମ୍ଭିତ-ହୃଦୟା ହୋଇ ଗଲି, କ୍ଷମା କରନ୍ତୁ ।

ରାମ—ପ୍ରେୟସି ! ଏଥିପାଇଁ କ୍ଷମା ପ୍ରାର୍ଥନା କରୁଅଛ ? ହୃଦୟ-ବଲ୍ଲଭେ ! ଏ ତ ରୋଷର କିଛି କାରଣ ନୁହେ, କିନ୍ତୁ ଦୃଷ୍ଟେ ଶ୍ରବଣ କର—

ସ୍ରଗ୍ଧରା ବୃତ୍ତ ।

ହସ୍ତେ ସଂପ୍ରାପ୍ତ ରାଜ୍ୟ ତ୍ୟଜି ଗୁରୁ ବଚନେ କାନନେ ମୁଁ ପ୍ରବିଷ୍ଟ ।
ସତ୍ପ୍ରାଜ୍ଞ ପିତା ସଂସ୍ମରଣ କରି ସଦା ଦିବ୍ୟଲୋକେ ନିବିଷ୍ଟ ।
ହେଲା ହିଂସ୍ରବ୍ୟାଘ୍ର ଜନ୍ତୁପ୍ରକରବସତି ଆରଣ୍ୟ ଦେଶେ ନିବାସ ।
କାନ୍ତେ ! ଏ ସର୍ବଦୁଃଖ ପ୍ରଶମ କରଇ ତୋ ସାହଚର୍ଯ୍ୟ-ପ୍ରହର୍ଷ ।

ସୀତା—ପ୍ରିୟ ନାଥଙ୍କର ସାନ୍ନିଧିରୁ ମୋର ଅରଣ୍ୟରେ ମଧ୍ୟ ନଗର ଅପେକ୍ଷା ଅଧିକ ସୁଖ ହୋଇ ହେଉଅଛି—

ରାମ—ତାହା ଅସମ୍ଭବ ନୁହେ, ହେଉ ଦେଖ—

ସ୍ରଗ୍ଧରା ବୃତ୍ତ ।

ନାଟ୍ୟ-ସଙ୍ଗୀତ ତୁଲ୍ୟ ଭ୍ରମରନିକର ଝଙ୍କାର ଗୀତ ପ୍ରଚୁର ।
ବାଦ୍ୟ ପ୍ରାୟ ବାଜେ ବନଚର ବର-ସନ୍ଦୋହ-କର୍ଣ୍ଣୋତ୍ଥ ତାଳ ।
ହେ କାନ୍ତେ ! ହଂସତୂଳପ୍ରତିମ କି ନ ଅଟେ ଏ ପ୍ରବାଳାଲିତଲ୍ପ ।
ଏଥେଁ ସୁସ୍ୱାଦୁ ପକ୍ୱ ପ୍ରଚୁର ଫଳ ମିଳେ ଏହି ସେ ସୌଖ୍ୟକଳ୍ପ ॥

ସୀତା—ଆର୍ଯ୍ୟପୁତ୍ର ! ଏହି ବିବିଧ ବିଟପ ମୃଗବିହଙ୍ଗଗଣା-
 କୀର୍ଣ୍ଣ କାନନ ଦେଖିବାକୁ ହୃଦୟର ପ୍ରୀତିଜନକ
 ହୋଇଅଛି ।

ରାମ—ପ୍ରିୟେ ! ତାହା ଯଥାର୍ଥ—

ସ୍ରଗ୍ଧରା ବୃତ୍ତ ।

ବର୍ହୀ ବିସ୍ତାରି ଅହୀ ବିରହିଗଣ ସମାସୀନ ନୀପେ ପ୍ରତୋଷ ।
ବିସ୍ତାରେ ନେତ୍ରଶୋଭା ହରିଣ ଚରିଣ ଏ ଶାଦ୍ୱଳେ ନବ୍ୟ ଘାସ ।
ହସ୍ତୀ ଉତ୍ତୁଙ୍ଗ କୁମ୍ଭେ ଘରଶଇ କୁତୁକେ ଶଲ୍ଲକୀ ଚାରୁ ଶାଖା ।
କାନ୍ତେ ! କାହା ହୃଦନ୍ତେ ହରଷ ନ ବଢ଼ରେ ବନ୍ୟଲକ୍ଷ୍ମୀର
 ଦେଖା । ୧୨ ।

ଅପିଚ ।

ସ୍ରଗ୍ଧରା ବୃତ୍ତ ।

ଧମ୍ମିଲ୍ଲ-ଶ୍ରୀକ ଚୋର ଗ୍ରହଣ କି ନ କରେ ବର୍ହଭାରେ ମୟୂର ?
ଅକ୍ଷେ କେ ଏ କୁରଙ୍ଗ ଗ୍ରହଣ କି ନ କରେ ନେତ୍ରସୌଭାଗ୍ୟସାର ?
ବକ୍ଷୋଜ-ଶ୍ରୀକ ମତ୍ତଦ୍ୱିରଦ କି ନ ଧରେ ? ମସ୍ତକେ ଚାରୁ ନେତା !
ଭାବେ ସାଦୃଶ୍ୟଯୋଗୁଁ ଗ୍ରହଣ କଲ୍ଲ ତୁ ଏ ବନ୍ୟଲକ୍ଷ୍ମୀ ପବିତ୍ରା ।୧୩।

ସୀତା—( ସାନୁରାଗେ ସ୍ୱଗତ ) ଆର୍ଯ୍ୟପୁତ୍ର ମଦୀୟ ଶୋଭା ବର୍ଣ୍ଣନାରେ ପ୍ରବୃତ୍ତ ହେଲେଣି । ଏହାଙ୍କ ମନକୁ ଅନ୍ୟ-ଅଡ଼େ ବୁଲାଇବ । (ପ୍ରକାଶତଃ) ଆର୍ଯ୍ୟପୁତ୍ର ! ଏଇ ଦେଖନ୍ତୁ, ଏ ବଗରେ ଅଭିନବ ମଞ୍ଜୁଳ ମୃଣାଳନିଚୟ ପରି ନିର୍ମଳ ଓ ମୃଦୁଳ ଦଂଷ୍ଟ୍ରା-ମୁକୁଳନିକରରେ ଦନ୍ତୁର ଓ ବିସ୍ତୀର୍ଣ୍ଣ-ମୁଖ, ତଥାଚ ରାକେନ୍ଦୁଚନ୍ଦ୍ରିକାସହୋଦର-ଶରୀର ମୃଗମାନେ ଖେଳୁଅଛନ୍ତି । ଏମାନଙ୍କର ନାମ କଣ ? ଏହିଅଡ଼ରେ ପୁଣି ଦେଖନ୍ତୁ, ଏହି ମୃଗମାନେ ସୁଧାକର ସମୁଦୟ ଉତ୍ସବରେ ବିଚଳିତ ଦୁଗ୍ଧାବ୍ଧିର କଲ୍ଲୋଳନିଚୟ ବିଦଳନରୁ ଜନିତ ଲଳିତ ଫେଣ୍ଡୀର-ପୁଞ୍ଜ ପ୍ରାୟ ବିଶଦ ପୁଚ୍ଛମାନଙ୍କୁ ପରିଚାଳିତ କରି ଇତସ୍ତତଃ ପାରିପ୍ଳବ ଦୃଷ୍ଟି ନିକ୍ଷେପପୂର୍ବକ ଭ୍ରମଣ କରୁ-ଅଛନ୍ତି, ଏମାନଙ୍କର ନାମ ପୁଣି କଣ ?

ରାମ—ଅୟି ବିଦେହକୁଳନନ୍ଦନି ! ଏ ବଗରେ ସିଂହଶାବକ-ମାନେ କ୍ରୀଡ଼ା କରୁଅଛନ୍ତି; ସେମାନଙ୍କୁ ଦେଖି ଭୀତ ଚମରୀ ମୃଗମାନେ ଏହିଅଡ଼େ ବୁଲୁଅଛନ୍ତି । ଅୟି ସୀତେ ! ଦେଖ ଦେଖ—

ସ୍ରଗ୍ଧରା ବୃତ୍ତ ।

ଖେଳନ୍ତା ସିଂହପୋତେ ଭୟ କରି ଚମରୀ ଧାବିତା ଶୈଳଗର୍ତ୍ତେ
ବାହାର ବ୍ୟାଘ୍ର ବାହାରକୁ ଧରଇ, ରୁରୁକ୍ରୋଡ଼ଯୁକ୍ତ ପ୍ରବର୍ତ୍ତେ ।
ମାକ୍ଷୀକାଦାନକାଳେ ଉଡ଼ି ଉଡ଼ି ସରଘା ଦଂଶିବାରେ ମୃଗାକ୍ଷି !
କ୍ଷଣେ ରିବନ୍ତି କାନ୍ତେ ! ନୟନ ସଫଳ ଅଲୋକ ଅରଣ୍ୟଲକ୍ଷ୍ମୀ ।

ସୀତା—ସ୍ୱତେ ତ, ଏହି ଛନଶ ବୃକ୍ଷମାନଙ୍କରୁ ଲମ୍ବିତ ଦ୍ରୋଣପରିମିତ ମଧୁରେ ପରିପୂରିତ ମଧୁକୋଷନିଚୟକୁ ମଧୁମକ୍ଷିକାପୀଡିତ-ମର୍କଟମାନେ ଯାଇବାକୁ ପାରୁ ନାହାନ୍ତି ତ ।

ରାମ—ହଁ, ସେହିପରି ତ ହୋଇଅଛି ।

ସୀତା—ଯେ କି ଅର୍ଥପର, ତାହାର ସ୍ୱଭାବ ଏହି ଯେ, ଅନ୍ୟସଞ୍ଚିତ ପଦାର୍ଥ ଆପେ ଅନୁଭବ କରିଯାଏ । ଯେପରି କି ମଧୁମକ୍ଷିକାସଞ୍ଚିତ ମଧୁକୁ ସୁଚତୁର ଲୋକ ଅନୁଭବ କରୁଅଛି ।

ରାମ—(ସ୍ୱଗତ) ଓ ! ମୁଁ ଅର୍ଥପର ହୁଏ ନାହିଁ ବୋଲି ମୋ ପ୍ରତି ଏହାର ଏ ଭାବନା । ( ପ୍ରକାଶତଃ ) ଏକର ସଞ୍ଚିତ ପଦାର୍ଥକୁ ଅନ୍ୟ ଜଣେ ଭାଗ୍ୟବଶରୁ ବିନା ଅନୁଭବ କରିପାରେ । ଯେପରି କି—

ମାଳିନୀ ବୃତ୍ତ ।

ସୁଲଳିତ ଅଧରୌଷ୍ଠେ ତୋର ପୀୟୂଷ-ସାର
ମଧୁ ନହିଛି ନଗୃଢ଼େ ପୁଷ୍ପଧନ୍ୱା ପ୍ରଚାର ।
ଜନକନୃପତକନ୍ୟେ ! ପ୍ରେମଦେ ! ପ୍ରାଣକାନ୍ତେ !
ନ ପିଇବି କି ମୁଁ ଏବେ ପାଇ ଫଳୁଷ୍ଟ-ଚନ୍ଦ୍ରେ । ୧୫ ।

ସୀତା—( ସ୍ୱଗତ ) ଆର୍ଯ୍ୟପୁତ୍ରଙ୍କର ବଚନଚାତୁରୀ ସୀମାକୁ ଅତିକ୍ରମ କଲାଣି । (ସଲଜ୍ଜେ ମୁଖ ପୋତିବା)

ରାମ—(ସ୍ୱଗତ) ମୋର ପରିହାସ ବଚନରେ ପ୍ରିୟା ଲଜ୍ଜିତା ହୋଇ ମଧ୍ୟ ରମଣୀୟା ଦିଶୁଅଛି ।

ବସନ୍ତତିଳକ ବୃତ୍ତ ।

ଜନ୍ମାଇ ଗଣ୍ଡଯୁଗଳେ ପୁଲକାଙ୍କୁର ଶ୍ରୀ ।
ନେତ୍ରାନ୍ତରେ ପ୍ରଣୟସୂଚକ-ବିଭ୍ରମଶ୍ରୀ ।
ଲଜ୍ଜେ ତ ଆନନ ବିନମ୍ର କଲୁ କି ରଙ୍ଗେ ।
ମୁଗ୍ଧତ୍ୱରୁ ପ୍ରିୟବଚ୍ଛ ମମ ଧୈର୍ଯ୍ୟ ସଙ୍ଗେ । ୧୬ ।

ଅତଏବ ଅନ୍ୟ ଦୃଶ୍ୟ ଦେଖାଇବା ଭଲ । (ପ୍ରକାଶତଃ)
ପ୍ରିୟେ ସୀତେ ! ଏଣେ ଦୃଷ୍ଟିପାତ କର ।

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଗଣ୍ଡୂଷାସବସେକ ପାଇ ବକୁଳ ପ୍ରେମାନ୍ୱିତେ ! ତାବକ ।
ଧମ୍ମିଲ୍ଲଗ୍ରହଣାର୍ହ-ପୁଷ୍ପନିଚୟେ ହେଲା ସମୁଦ୍‌ଭାବକ ।
ତାହା ଗନ୍ଧବିମୁଗ୍ଧ ବଂଭରଗଣେ ସମୋଦରେ ଚୌଦିଶେ
ଶ୍ରେଣୀ ହୋଇ ଭଜନ୍ତି ସାମ୍ୟକୁ ଟି ତୋ ବେଣୀର ଏଣୀଦୃଶେ !

ସୀତା—( ସ୍ୱଗତ ) ସ୍ୱପ୍ନସମୟର ସଙ୍କଳ୍ପଦଶାରେ ଆର୍ଯ୍ୟପୁତ୍ର ଯେପରି ଗୃହୁଁ ବଚନାଦରେ ମୋତେ ଅନୁସରିଥିଲେ, ବର୍ତ୍ତମାନ ପ୍ରତ୍ୟକ୍ଷରେ ତାହାହିଁ ଅନୁବର୍ତ୍ତନ କରୁଅଛନ୍ତି । ଆହା କେଡ଼େ ଆଶ୍ଚର୍ଯ୍ୟକର ଯେ ! (ପ୍ରକାଶତଃ) ଆର୍ଯ୍ୟପୁତ୍ର ! ଦେଖୁ ନାହାନ୍ତି କି ? ପ୍ରତ୍ୟଗ୍ରମେଦୁର-ମୁଦିରଶ୍ୟାମଳ କୋମଳଦ୍ୟୁତି ନବଦ୍ରୁତର ଓ ସୁରୁଚିର ଗୁଚ୍ଛମାନଙ୍କରେ ଏହି ଅତସୀ ବୃକ୍ଷଟି ନିଜେ ଅଳଂକୃତ ହୋଇ ଏହି ପ୍ରଦେଶକୁ ମଧ୍ୟ କିପରି ଅଳଂକୃତ କରୁଅଛି ।

ରାମ—(ସ୍ୱଗତ) ଏହାର ଏହି ଉକ୍ତି ପ୍ରତ୍ୟୁକ୍ତିରେ ମୁଁ ଭଲରୂପେ
ବଞ୍ଚିତ ହୋଇଅଛି । (ପ୍ରକାଶତଃ) ଅୟି କାନନା-
ଲୋକକୁତୂହଳିନି ସୀତେ !

ଶମ୍ଭୁନଟନ ବୃତ୍ତ ।

ପ୍ରଫୁଲ୍ଲିତ ସରୋଜନିକରାନ୍ୱିତ-ଧରାଧରବନାର୍ଗତ-
ନଦୀର ଅଭିତେ !
ବିରାଜିତ ଶିତାଶିତ ସୁଲୋହିତ ହରପ୍ରଭ ସୁଧାରୁଚିର
ଭୂପତିସୁତେ !
ବିହାର କରି ହଂସଗଣ ତୀର ସଲିଳେ କରଇ କୂଜିତକୁ
କେଳିକଳହେ ।
ତ୍ୱଦୀୟ ମଣିକାଞ୍ଚିର କଳଧ୍ୱନି ପରି ଶ୍ରବଣରମ୍ୟତର-
ତାକୁ ତ ବହେ । ୧୮ ।

ସୀତା—(ସବୈଲକ୍ଷ୍ୟ ସ୍ୱଗତ) ପ୍ରଥମ ବନପ୍ରସ୍ଥାନ ସମୟରେ ଅନୁପ୍ରସ୍ଥାନ କରିବାପାଇଁ ମୁଁ ବାରମ୍ବାର ସବିନୟ ପ୍ରାର୍ଥନା କଲେ ସୁଦ୍ଧା ଆର୍ଯ୍ୟପୁତ୍ର ନିଷେଧ କରିବାରୁ ଯେତେବେଳେ ସରୋଷ ଭ୍ରୂଭଙ୍ଗୀରେ ମୁଁ ଅନ୍ତଃପୁରକୁ ପ୍ରତ୍ୟାବୃତ୍ତ ହେଉଥିଲି, ସେତେବେଳେ ମଦୀୟ ମେଖଳା ଅତିବ ମୁଖର ଧ୍ୱନି କରିଥିଲା । ଆର୍ଯ୍ୟପୁତ୍ର ବର୍ତ୍ତମାନ ତାହା ସ୍ମରଣ କରାଇ ଦେଉଅଛନ୍ତି । ଅଚ୍ଛା ହେଉ ଏପରି କହିବ । ( ପ୍ରକାଶତଃ ) ନାଥ ! ମୁଁ ଆପଣଙ୍କର ଅଭୟ ଭୁଜଦ୍ୱୟକୁ ଆଶ୍ରୟ କରି ଏହି ଅପୂର୍ବ-

ଦୁଷ୍ଟ ଗହନ କାନନରେ ନିର୍ଭୟ ହୃଦୟରେ କେଉଁ ଆଶ୍ଚର୍ଯ୍ୟକର କଥା ଅବଲୋକନ କରିବାକୁ ସମର୍ଥ ନ ହେବ ? ଆପଣ ତ ଏହି ଜନସ୍ଥାନନିବାସୀ ଋଷିମାନଙ୍କ ମଧ୍ୟ ରାକ୍ଷସମାନଙ୍କଠାରୁ ଅଭୟ ପ୍ରଦାନ କରିଅଛନ୍ତି ।

ରାମ—(ଦୂରତଃ ଦୃଷ୍ଟି ନିକ୍ଷେପି)

ଅନୁଷ୍ଟୁପ୍ ବୃତ୍ତ ।

ବ୍ୟାଘ୍ରଚର୍ମାଚ୍ଛାଦିତାଙ୍ଗ ଶୂଳୋଲ୍ଲୀର୍ଣ୍ଣେଭମସ୍ତକ
ଏ ଦୈତ୍ୟାଧମ କେ ଯାଏ କୋବଦାର ବନାନ୍ତରେ ।୧୯।

ବୋଧହୁଏ ଏହାକୁ ଲକ୍ଷ୍ମଣ ଦେଖି ନାହିଁ ।

ତଦନନ୍ତର ଲକ୍ଷ୍ମଣଙ୍କ ପ୍ରବେଶ ।

ଲକ୍ଷଣ—ଏହି ରାକ୍ଷସ କିଏ ? କୋବଦାର ବନରେ ପ୍ରବେଶ କରିଅଛି । ଅଚ୍ଛା ହେଉ, ଏହାକୁ ନିହତ କରିବି । (ଏ ବଚନରେ ଆୟୁଧଗ୍ରହଣାଭିନୟ କରିବା)

ସୀତା—(ଅନ୍ୟ ଦିଗକୁ ଚାହିଁ) ଆର୍ଯ୍ୟପୁତ୍ର ! ଏ ତ କୋବଦାର ବନ ନୁହେ, ଏଇଟି କର୍ଣ୍ଣିକାର ବନ । ତଥାଚ ଏ ରାକ୍ଷସ ନୁହେ । ଦେଖନ୍ତୁ, ଦଂଷ୍ଟ୍ରାକରାଳବକ୍ତ୍ରା ଅଲାବୁଫଳ-ଦୀର୍ଘସ୍ତନା ଦୁର୍ବହୋନ୍ନତଜଠର ଓ ଉତ୍ତୁଙ୍ଗନାଭି କୌଣସି ବକାରରୂପିଣୀ ରାକ୍ଷସୀ ଗୋଡ଼ାଏ ଯାଉଅଛି ।

ରାମ—ପ୍ରିୟେ ! କେଉଁଆଡ଼େ ଦେଖୁଅଛ ? ଏହି ଦିଗକୁ ଦୃଷ୍ଟିପାତ କର ।

ସୀତା—(ଗୃହିଁ) ଓ ! ରାକ୍ଷସ ନହେ, ଅପଣ କେବଳ ଦଣ୍ଡ-
ଅଛନ୍ତି !

ରାମ—(ସ୍ୱଗତ) ଏ କଣ ! ମୋତେ ରାକ୍ଷସରୂପରେ ନିର୍ଦ୍ଦେଶ
କରି ଉପହାସ କରୁଅଛ ! (ଗୃହିଁ ପ୍ରକାଶତଃ) ଅହୋ !
କି ଆଶ୍ଚର୍ଯ୍ୟ ଯେ ! ଦେଖୁ ଦେଖୁ ରାକ୍ଷସୀଟା ମୋର
ରୂପକୁ ଧାରଣ କଲା !

ସୀତା—(ଗୃହିଁ) (ସାଶ୍ଚର୍ଯ୍ୟେ) ଆର୍ଯ୍ୟପୁତ୍ର ! ଦେଖନ୍ତୁ, କଣ୍ଟକାର
ବନରେ ପ୍ରବିଷ୍ଟା ରାକ୍ଷସୀ ମଧ୍ୟ ମୋର ରୂପକୁ ଗ୍ରହଣ
କରିଅଛି ।

ରାମ—( ସାଶ୍ଚର୍ଯ୍ୟେ ) ଏ ଦୁହିଙ୍କର ଏପରି ରୂପ ଧାରଣରେ
ପ୍ରୟୋଜନ କଣ ?

ସୀତା—ନାଥ ! ପର୍ବତ ଉପରୁ ଓହ୍ଲାଇ ଦେଖିବା ।

ରାମ — ନା, ଓହ୍ଲାଇବାର ପ୍ରୟୋଜନ ନାହିଁ, ଏହିଠାରୁ
ଦେଖିଲେ ତ ଗୃହ କୋଶ ଦୂରସ୍ଥ ପଦାର୍ଥ ମଧ୍ୟ ସୁସ୍ପଷ୍ଟ
ଦିଶୁଅଛି ।

ଲକ୍ଷ୍ମଣ—( ପୁନରପି ଗୃହିଁ ) ( ସାଶ୍ଚର୍ଯ୍ୟେ ) ହାୟ ! ଏହାର
ନାଶନାର୍ଥ ଅସ୍ତୁଧହସ୍ତରେ ଏଠାକୁ ଆସିବାର ବିଫଳ
ହେଲା ଯେ ! ରାକ୍ଷସଟା କେଉଁଠି ଲୁକ୍କାୟିତ ରହିଗଲା ।
ହେଉଛି ଆର୍ଯ୍ୟ ମଧ୍ୟ ରାକ୍ଷସ ବିନାଶ ପ୍ରତିଜ୍ଞାବଶରୁ ଏହାର
ନିଧନାର୍ଥ ଉଦ୍ୟତ ହେଲା ପରି ଦିଶୁଅଛନ୍ତି ।

ସୁଗନ୍ଧ ବୃତ୍ତ ।

ହେମପଙ୍କ-ଗୃରୁଗୃପ ହେମଯୁଙ୍ଗ-ସାୟକେ
ଶୋଭି ବାମ ଦକ୍ଷ ହସ୍ତ ଆର୍ଯ୍ୟ କାଂଚଦୁସ୍ଥକେ ।

ରୌଦ୍ରେ ପ୍ରଦତ୍ତ-ପଦ୍ମକୋକଯୁଗ୍ମ ସାନ୍ଦ୍ର
ବକ୍ରମନ୍ତ୍ର ଗୂଢ଼ ଦୈତ୍ୟ ଖୋଜଇଲୁ ପରାସ୍ତ ତ । ୨୦ ।

(ସ୍ୱଗତପୂର୍ବକ) ଆର୍ଯ୍ୟା ଜାନକୀ ପୁଣି କେଉଁଠାରେ ଅଛନ୍ତି ? ଆର୍ଯ୍ୟ ଆର୍ଯ୍ୟାଙ୍କ ସହିତ ଏହି ପର୍ବତର ଅଧିତ୍ୟକାରେ ଆରୋହଣ କରିଥିଲେ; ଆର୍ଯ୍ୟ ଏକାକୀ ଓହ୍ଲାଇ ଆସୁଅଛନ୍ତି କାହିଁକି ? (ଉପରକୁ ଚାହିଁ ସାଶ୍ଚର୍ଯ୍ୟ)

ମାଳିନୀ ବୃତ୍ତ ।

ବକୁଳ ବିଟପିମୂଳେ ଭୂଧରାଧିତ୍ୟକାର
ଅପହସିତ-ତଡିଦ୍ଦାମାଙ୍ଗ କାନ୍ତି-ପ୍ରପୂର ।
ଜନକନୃପତିକନ୍ୟା ସଙ୍ଗତେ ଆର୍ଯ୍ୟବର୍ଯ୍ୟ
ସକୁତୁକ ପରିଭାଷେ ହୃଷ୍ଟ ଅକ୍ଷୀଣଧୈର୍ଯ୍ୟ ।୨୧।

ଅତଏବ ଏ ଅବଶ୍ୟ ଆର୍ଯ୍ୟଙ୍କ ରୂପଧାରୀ ମାୟାବୀ କୌଣସି ରାକ୍ଷସ ହୋଇଥିବ । ଅଚ୍ଛା ହେଉ, ଏହି ପ୍ରତାନମାଳାବଳୟାନ୍ତରିତ-ଅରଣ୍ୟମାର୍ଗରେ ତିରୋହିତ ରହି ତାହାକୁ ଅନୁଗମନ କରି ଦେଖିବି । (ଚାଲିବା)

(ତଦନନ୍ତର ରାମବେଶଧାରୀ ଖରାଧର ପ୍ରବେଶ)

ଖରାଧ—(ଚାହିଁ) ହେଉଛି କର୍ଣ୍ଣିକାର ବନରୁ ନିକଟସ୍ଥ ଚମ୍ପକ-ବାଟିକାକୁ ସୀତା ଆସୁଅଛି । (ସମୀପକୁ ଯିବା)

(ସୀତାରୂପଧାରିଣୀ ସୂର୍ପଣଖାର ପ୍ରବେଶ)

ସୂର୍ପଣଖା—ମୁଁ ଏହିଠାରେ ଚମ୍ପକବନରୁ ଚମ୍ପାଫୁଲଗୁଡ଼ାଏ ତୋଳୁଥିବି, ସମୟରେ ରାମ ମଧ୍ୟ ଏଠାକୁ ଆସିବ ।

(ଏହା ଭାବି ଚମ୍ପାଫୁଲ ତୋଳିବାର ଅଭିନୟ କରିବା)

ବିରାଧ—(ଦେଖି ସ୍ୱଗତ) ଏ ତ ନଷ୍ଟେ ସେହି ଅଲୌକିକ ଲାବଣ୍ୟମୟୀ ସୀତା । ( ପାର୍ଶ୍ୱର୍ଯ୍ୟେ ) ଆହା ! ଏ ନଷ୍ଟେ ବିଧାତାର ଅପୂର୍ବ ସୃଷ୍ଟି ଅଟେ । ଅଥବା— ଊର୍ଦ୍ଧ୍ୱସ୍ଥ ନୀଳନୀରଦପଟଳୀର ଅଧୋଭାଗରେ ଚନ୍ଦ୍ରମଣ୍ଡଳ ଦେଦୀପ୍ୟମାନ ରହିଅଛି । ନିରବକାଶ ଆକାଶର ଉପରି ଲଳିତପଲ୍ଲବ ଓ ତଦୁପରି ଉତ୍ତୁଙ୍ଗ ଶୈଳଦ୍ୱୟ ତଥାଚ ତଦୀୟ ମୂଳନିତଳେ ବ୍ୟତ୍ୟାସ ରମ୍ଭାଦ୍ୱୟ ପ୍ରୋଥିତ ରହି ହୃଦୟକୁ ଅତି ଚମତ୍କୃତ କରୁଅଛି । ମୁଁ ମନେ କରେଁ, ଏହା ସୁଚତୁର ପ୍ରଦ୍ୟୁମ୍ନଧନ୍ୱାର ଅନ୍ୟାଦୃଶ ସର୍ଗ ଚାତୁରୀ ଅଟେ । ଅବ ରାମ କିମ୍ବା ଲକ୍ଷ୍ମଣର ଆଗମନ ପୂର୍ବରୁ ଯେ କୌଣସି ଉପାୟରେ ଏହାକୁ ଧରି ବାହାର ନିବା ଭଲ ।

ସୂର୍ପଣଖା—(ଦେଖି) ମୋର ହୃଦୟଚୋର ଏହିଆଡ଼କୁ ଚାହିଁ ରହିଅଛି ତ । ଆହା କି କମନୀୟତା ଯେ !

ପୃଥ୍ୱୀ ବୃତ୍ତ ।

ସହସ୍ର ଯୁବକଙ୍କ ସୃଷ୍ଟିକି ବିରଞ୍ଚି ଅଗେ କଲା,
ପରେ କରିର କୌଶଳେ ସୁଭଗ ରୂପ ଏ ହୋଇଲା ।
ସମଗ୍ର ଜନଲୋଚନାର୍ଜିତ ପୁରାଣ ପୁଣ୍ୟାବଳୀ
ବଳିକଇ ସୁବଗ୍ରହ-ଗ୍ରହଣରେ କିବା ଏଭଳି । ୨୨ ।

ଉପାୟବଳରେ ଶୀଘ୍ର ଏହାକୁ ଧରି ଏଠାରୁ ବାହାରି-
ଯିବ । ( ପୁଷ୍ପ ତୋଳିବା)

ବିରାଧ—(ସମୀପକୁ ଯାଇ ) ଅୟି ! ମିଥିଳାଧିପନନ୍ଦନି !

ବସନ୍ତତିଳକ ବୃତ୍ତଂ ।

ଏ ଚମ୍ପକ ପ୍ରସବରେ ସ୍ଫୁଟଚମ୍ପକାଙ୍ଗି !
ଏବେ ତୁ ହୋଇଅଛୁ ଯଦ୍ୟପି ବା ସୁଅଙ୍ଗୀ ।
ତୋ ଛମୁରେ ଅଛୁ ଅଧୀନ ବିହାର ଦାସ
କାନ୍ତେ ! ନ ଯୋଗିନ୍ଦିଅ ତେଜ ତୁହି ପ୍ରୟାସ । ୬୩ ।

ସୂର୍ପଣଖା—( ସହର୍ଷେ ସ୍ୱଗତ ) ଏ ମୋତେ ପ୍ରକୃତ ଜାନକୀ
ବୋଲି ଭାବିଅଛି । ହାୟ ହାୟ ! ଏହାର କି ମୃଦୁ ମଧୁର
ଗମ୍ଭୀର ସ୍ୱର ଯେ !

କଳହଂସ ମୃଣାଳ କନ୍ଦ ଖାଇ ରବରେ ମୃଦୁ ଧୀରନାଦ ଯେହ୍ନେ ।
ଶ୍ରବଣେ ମମ ସିଞ୍ଚିଲା ସୁଧାକୁ କହି ଏ ମୃଦୁମୁଗ୍ଧ ବାକ୍ୟ ତେହ୍ନେ ॥

ଭଲ, ହେଲା ଏହାକୁ ନିଃଶଙ୍କରେ ଅପହରି ନେବାପାଇଁ
ଏପରି କହିବ । ( ପ୍ରକାଶତଃ ) ଆର୍ଯ୍ୟପୁତ୍ର ! ଏହିଠାରୁ
ଅନତିଦୂରରେ କନ୍ଦର୍ପପ୍ରତାପଉଦ୍ଦୀପକ ବକୁଳଚମ୍ପକ
ପୁଷ୍ପମାନ ଦେଖାଯାଏ । ଆସ ଆଉ ଅଳ୍ପ ଆଗକୁ ଯାଇ
ଫୁଲ ତୋଳିବା । (ଏହା କହି ଦୂରତଃ ଚାଲିଯିବା)

ବିରାଧ—(ସ୍ୱଗତ)

ମନ୍ଦାକ୍ରାନ୍ତା ବୃତ୍ତ ।

ତନ୍ୱୀ ଶ୍ୟାମା ସହଜମଧୁରପ୍ରେମରେ ଆର୍ଯ୍ୟପୁତ୍ର—
ନାମେ ଡାକେ ଅନୁସର ସୁଧା ଢାଳିଲା କର୍ଣ୍ଣପାତ୍ର ।
ଆହା ତାହା ଶ୍ରବଣ କରି ମୋ ଚିତ୍ତ କୌରଙ୍ଗ-ପୋତ
ହେଲା ଅଦ୍ୟ ସ୍ମର-ଶବର-ନିକ୍ଷିପ୍ତ-ଜାଲେ ନିପାତ । ୨୫ ।

ଅଚ୍ଛା ହେଉ, ଏହିଠାରୁ ଅନ୍ୟ ପ୍ରଦେଶକୁ ଗଲେ ନିଃଶଙ୍କଭାବରେ ଅପହରଣ କରିବାରେ ସମର୍ଥ ହେବ । (ପ୍ରକାଶତଃ) କଲ୍ୟାଣି ! ତୋର ଯେପରି ଅଭିରୁଚି ସେପରି କର । (ପଛେ ପଛେ ଯିବା)

ଲକ୍ଷ୍ମଣ—ଏହି ଚମ୍ପକାରଣ୍ୟ ମଧ୍ୟରେ ଆର୍ଯ୍ୟା ସୀତାଦେବୀଙ୍କର ବଚନ କିପରି ଶୁଭୁଅଛି ? ଅଚ୍ଛା ତେବେ ଦେଖିବି । (କେତେକ ପାଦ ଚାଲିଯାଇ) ଏ କଣ !

ସୁଗନ୍ଧ ବୃତ୍ତ ।

ଚମ୍ପକପ୍ରସୂନମାନ ତୋଳିବାକୁ ସମ୍ପ୍ରତି
ଜାନକୀ ଧରି ପ୍ରମୁଗ୍ଧ ପଦ୍ମପର୍ଣ୍ଣ-ଦୌପଦୀ ।
ହୋଇ କାନନାଶ୍ରିତ-ପ୍ରକମ୍ପିତାଂଶୁକାଞ୍ଚଳା
ଏହିଆଡ଼େ ଯାଉଛନ୍ତି ହୋଇ ହର୍ଷ-ଚଞ୍ଚଳା । ୨୬ ।

(ବିଚାରପୂର୍ବକ) ନା, ଏ ଜାନକୀ ନୁହନ୍ତି । ଏ ନିଶ୍ଚେ କୌଣସି ରାକ୍ଷସୀ ହେବ । (ଚାହିଁ ରହିବା)

ସୀତା—ଆର୍ଯ୍ୟପୁତ୍ର ! ଦେଖ ଦେଖ, ଦେବର ଲକ୍ଷ୍ମଣ ମଧ୍ୟ

ଅଂସଦେଶରେ ତୂଣୀର ବାନ୍ଧି ଏକ ହସ୍ତରେ ଧନୁର୍ବାଣ ଧାରଣପୂର୍ବକ ଅନ୍ୟ ହସ୍ତରେ କରବାଳଖେଳା କରି ରାକ୍ଷସକୁ ଆପଣ ବୋଲି ମନେ କରି ଅନୁସରଣ କରୁଅଛନ୍ତି ।

ରାମ — ଅୟି କଲ୍ୟାଣି ! ଲକ୍ଷ୍ମଣ ଅଲକ୍ଷିତଭାବରେ ତାହା ପଛରେ ଯାଉଅଛି । ଏଣୁ ବୋଧହୁଏ, ଏହାକୁ ରାକ୍ଷସ ବୋଲି ସେ ଜାଣି ପାରିଅଛି ।

ରାବଣ—(ସ୍ୱଗତ) ସାକ୍ଷାତ୍ ସୀତା କେବଳ ମୋର ପୁରୋବର୍ତ୍ତିନୀ ହୋଇ ବିହାର କରୁଅଛି ।

ମନ୍ଦାକ୍ରାନ୍ତା ବୃତ୍ତ ।

ଏ ବାମାକ୍ଷୀ ନଳିନଚରଣ-ନ୍ୟସ୍ତ ମଞ୍ଜୀରନାଦେ
ଆହା ତାହା ବିପୁଳଜଘନାବଦ୍ଧ କାଞ୍ଚୀ ନିନାଦେ ।
ଏବେ ନିଷ୍ଟେ ଜନିତ କରି ମୋ ଚିତ୍ତରେ ପ୍ରେମପୂର
ଗାଢ଼େ ମୋତେ ପରବଶ କଲା ନାହିଁ ଧୈର୍ଯ୍ୟ ପ୍ରସାର ।୨୭।

(ପ୍ରକାଶତଃ) ଅୟି ସୁନ୍ଦରି ! ଏହି ଗହନ ଅରଣ୍ୟ ମଧ୍ୟରେ ଆହୁରି କେତେଦୂର ଯିବାକୁ ହେବ ?

ଶୂର୍ପଣଖା—( ସ୍ୱଗତ ) ଯେଉଁ ନିଭୃତସ୍ଥଳରେ ତୋତେ ଧରି ଉପହୃତନାର୍ଥ ମୁଁ ସମର୍ଥା ହେବି, ତାବତ୍ପର୍ଯ୍ୟନ୍ତ— (ପ୍ରକାଶତଃ) ଆର୍ଯ୍ୟପୁତ୍ର ! ସେହି ପ୍ରଦେଶଟି ହେଉଛି ଆଗରେ ଅଛି । କ୍ଷଣମାତ୍ର ସହନ କର ।

ରାମ—କଣ ! ରାକ୍ଷସୀଟା ରାକ୍ଷସକୁ ଅତି ଦୂରକୁ ନେଇ ଯାଉ-
ଅଛି କାହିଁକି ?

ସୀତା—ଲକ୍ଷ୍ମଣ ମଧ୍ୟ ପଛେ ପଛେ ଯାଉଅଛନ୍ତି ତ ।

ବିରାଧ—(ସ୍ୱଗତ) ଏହି ରମଣୀମଣି—

ଦ୍ରୁତବିଲମ୍ବିତ ବୃତ୍ତ ।

ପିକବଧୂ ପରି ଭାଷଇ ସାରସା ପରି ଗମେ ହରିଣୀ ପରି ଚାହିଁଇ !
ଚଳଇ ଶୀତଳ-ଭାନୁକଳା ପରି ବକୁଳଦାମ ପରି ପରି ରାଜଇ ।
ମୁଁ ପୁଣି କପରି ଏହାକୁ ଧରିନେବି ? ରାମର ବସତିଠାରୁ
ଦୂରକୁ ବାହାର ଅସିଲିଣି ତ । (ପ୍ରକାଶତଃ)

ବସନ୍ତତିଳକ ବୃତ୍ତ ।

ମୋ ପାଶରେ ରହୁଣ ସମ୍ପ୍ରତି ରେ ସୁଆଗୀ
ଏ ଚମ୍ପକ ପ୍ରସବ ତୋଳ ତୁ ଚମ୍ପକାଙ୍ଗି !
କାନ୍ତାରରେ ଗମୁଛୁ ଦୂରକୁ କାହିପାଇଁ
କ୍ରବ୍ୟାଦବୃନ୍ଦ ବୁଲିବା ସ୍ଥଳ ଜାଣୁ ନାହିଁ ? ୨୯ ।

ଲକ୍ଷ୍ମଣ—ଅହୋ ! ଏହି ରାକ୍ଷସ ଏହାକୁ ସୀତା ଭାବି ଆର୍ଯ୍ୟଙ୍କ
ବେଶରେ ଧରିବାକୁ ମନ ବଳାଇଅଛି ।

ସୂର୍ପଣଖା—( ସ୍ୱଗତ ) ମୁଁ ପୁଣି କଏ ? ସେହି ରାକ୍ଷସୀ ତ ।
(ପ୍ରକାଶତଃ) ନାଥ ! ତୁମ୍ଭେ ରାକ୍ଷସନାଶନ ପ୍ରତିଜ୍ଞା କରି-
ଅଛ । ତୁମ୍ଭ ନିକଟବର୍ତ୍ତିନୀ ଥିବାରୁ ମୋର ଅଉ ଭୟ
ନାହିଁ ।

ଲକ୍ଷ୍ମଣ— ଆର୍ଯ୍ୟା ସୀତାଦେବୀ ଆର୍ଯ୍ୟଙ୍କୁ ଯେପରି ଅନୁସରଣ କରନ୍ତି, ଏହି ରାକ୍ଷସୀ ରାକ୍ଷସ ସହିତ ସେପରି ସୁସଙ୍ଗତ ଆଳାପ କରୁଅଛି । ପରନ୍ତୁ ଏହାର ଏହି ରୂପଗ୍ରହଣରୁ ପ୍ରୟୋଜନ କଣ ? ଅଥବା ମନୋହର ଆର୍ଯ୍ୟଙ୍କ ପ୍ରତି ଅନୁରାଗିଣୀ ହୋଇ ବଞ୍ଚନାରେ ତାହାଙ୍କ ସହିତ ବିହାର କରିବାକୁ ଇଚ୍ଛା କରିଥିବ ।

ବିରାଧ—( ସ୍ୱଗତ ) ମୁଁ ଏପରି ପ୍ରତିଜ୍ଞା କରି ନାହିଁ । କିନ୍ତୁ ଅୟି ମୂଢେ !

ଅନୁଷ୍ଟୁପ୍ ବୃତ୍ତ ।

ସେ ରାମ ପ୍ରାଣ ସହିତେ ତୋତେ ଧରି ଯିବ ତ୍ୱରେ ।
ଯାହାଦ୍ୱାରା ପ୍ରତିଜ୍ଞାତ ସର୍ବ ରାକ୍ଷସ ନାଶନ । ୩୦ ।
(ପ୍ରକାଶତଃ)

ଅନୁଷ୍ଟୁପ୍ ବୃତ୍ତ ।

କି ନ୍ୟୂନତା ହେବ ତବ ସ୍ତ୍ରୀସୁତେ ! କହ ମୈଥିଳ !
ନ ନାଶିବ କି ଦୁଷ୍ଟାତ୍ମା ସସୈନ୍ୟ ଖର ରାକ୍ଷସ । ୩୧ ।

ଲକ୍ଷ୍ମଣ—ଅହୋ ! ରାକ୍ଷସ ମଧ୍ୟ ଆର୍ଯ୍ୟଙ୍କ ସଦୃଶ ଆଳାପ କରୁଅଛି !

ସୂର୍ପଣଖା—(ସୋଦ୍ବେଗେ ସ୍ୱଗତ) ମୋର ଭାଇ ଖରକୁ ଏ ସେପରି କରିଦେବ ପରା ? ଏହା ଭାବି ହୃଦୟ ଥରୁଅଛି । (ପ୍ରକାଶତଃ) ଖରାସୁର ରାବଣ ଅପେକ୍ଷା ଅତି ବଳବାନ୍ ।

ତାକୁ ନଷ୍ଟେ ନହତ କରିବାପାଇଁ କାପର ନିଃଶଙ୍କରେ ପ୍ରତିଜ୍ଞା କରିଅଛ ?

ଲକ୍ଷ୍ମଣ—ଯଥାର୍ଥ ବୁଝିବିରେ ଆର୍ଯ୍ୟଙ୍କର ଅଭିପ୍ରାୟ ପଗ୍ଭରୁଅଛ, ଏ ନଷ୍ଟେ ରାକ୍ଷସୀ କେବଳ ।

ସୀତା—ଏ ଦୁହେଁ ପରସ୍ପର ଆଳାପ କରୁଥିଲା ପରି ଦିଶୁ-ଅଛନ୍ତି ।

ରାମ—ହଁ, ତାହାହିଁ କରୁଅଛନ୍ତି ।

ବିରାଧ—(ସ୍ୱଗତ) ରାମ ପ୍ରତି ମୋର ଯାହା ପ୍ରଶ୍ନର କଥା ଥିଲା, ତାହାହିଁ ମୋତେ ଏ ପଗ୍ଭରୁଅଛି । ହେଉ,ତେବେ ଏପରି କହିବ । (ପ୍ରକାଶତଃ) ପ୍ରିୟେ ! ଯେ କ ପର୍ଶ୍ୱ ରାମଙ୍କୁ କଣି-ଅଛି, ତାହାର ପରାକ୍ରମ ଜାଣି ନାହୁଁ ?

ଲକ୍ଷ୍ମଣ—ଏହି ପ୍ରତିବଚନଟି ସଙ୍ଗତ ହୋଇଅଛି ।

ସୂର୍ପଣଖା—(ସ୍ୱଗତ) ଅତଏବ ମୁଁ ମନେ କରୁଅଛି, ତୋ ସଙ୍ଗେ ମୋତେ କ୍ରୀଡ଼ାନୁରତା ଦେଖି କେହି ଆତ୍ମୀୟ ଲୋକ ଦଣ୍ଡପ୍ରଦାନରେ ସମର୍ଥ ହୋଇ ପାରିବେ ନାହିଁ । (ପ୍ରକାଶତଃ) ତୁମ୍ଭେ ଉପଯୁକ୍ତ ଉତ୍ତର ଦେଇଅଛ । (ଏହା କହି ଫୁଲ ତୋଳିବାର ଅଭିନୟ କରିବା)

ବିରାଧ—(ସ୍ୱଗତ) ଏହି ରମଣୀମଣି—

ବସନ୍ତତିଲକ ବୃତ୍ତ ।

ଉତ୍ତାନ ବକ୍ଷ କରି ଊର୍ଦ୍ଧ୍ୱକୁ ହସ୍ତ ଥାପି
ଉନ୍ନମ୍ର ପୀନ କୁଚ ମଧ୍ୟ ଅଜସ୍ର କଳି ।

ବଣ୍ଡଂସଗୀବ ରହ ଭୂମିଯୁତାଗ୍ରପାବେ
ହେଲ ଉଭା ମମ ମନେ ପୂଣି କ ପ୍ରସାଦେ । ୩୨ ।
(ପ୍ରକାଶତଃ) ପ୍ରେୟସି ! ଅତ ପରଶ୍ରାନ୍ତା ହେଲଣି,
କୁସୁମାବଲୂନ ସାହସରୁ ନବର୍ତ୍ତି ରହ । (ସାଭିଳାଷେ)

ଅଥବା—

ଶାର୍ଦ୍ଦୂଲବକ୍ରୀଡ଼ିତ ବୃତ୍ତ ।

ଏ ପୁଷ୍ପାପଚୟକ୍ରିୟା ପୁନରପି କ୍ଷାମାଙ୍ଗି ! ସମ୍ପାଦ ରେ ।
ତଦ୍ଦ୍ୱାରା ତବ ଚନ୍ଦ୍ରବକ୍ତ୍ରର ଭଲେ ଶୋଭା ବଶେଷ ସ୍ଫୁରେ ।
ବାଲ୍ଲୀକାଙ୍କିତ ଗଣ୍ଡରେ ବଲଖିତା କସ୍ତୂରିକା-ପତ୍ରିକା
ଅମ୍ବୁପୋଦ୍ଭବ-ବାରବନ୍ଦୁନିଚୟେ ଲୁପ୍ତା ତ ଭୂପୂର୍ବିକା ! ।୩୩।

ସୂର୍ପଣଖା—(ପଲକ୍ଷେ ଅଳ୍ପ ହସି ସ୍ୱଗତ) ରାମଚନ୍ଦ୍ରର ଏହି ବଚନଗୁଡ଼ିକ କ୍ରୀଡ଼ାର୍ଥ ମୋତେ ଅଦେଶ ଦେଉଅଛି । (ପ୍ରକାଶତଃ) ହେ ମାନଦ ! ସତ୍ୟ ମୁଁ ପରିଶ୍ରାନ୍ତା ହେଲଣି, ତଥାପି ପୁଷ୍ପ ତୋଳିବାପାଇଁ ଅତ୍ୟନ୍ତ ଅଭିଳାଷ ଜନ୍ମୁଅଛି ।

ଲକ୍ଷ୍ମଣ—

ଅନୁଷ୍ଟୁପ୍ ବୃତ୍ତ ।

ସୀତା ହରଣ ଏ ଦୈତ୍ୟ ରାକ୍ଷସୀକୁ କହେ ଯଥା ।
ଅର୍ଯ୍ୟ ଭାବଣ ସେ ଯାକୁ ସ୍ୱାମିଷ୍ଟକୁ କହେ ତଥା । ୩୪ ।

ଦଶରଥ—ଯଦ୍ୟପି ଏପରି, ତେବେ ମୁଁ ପୁଷ୍ପଗୁଡ଼ିଏ ତୋଳିଦେବି ।
( ଏହା କହି ଫୁଲ ତୋଳିବାର ଅଭିନୟ କରିବା )
ଅୟି ମିଥିଳାଧିପନନ୍ଦନ !

ସ୍ରଗ୍ଧରା ବୃତ୍ତ ।

ଥିପେ ଥକର୍ଷି ଶାଖା ସୁମୁଖି ! ସୁଯତନେ ତୋଳିଲି ପ୍ରେମ ଅଶେ
ଏ ଚମ୍ପା ପାନୁକମ୍ପା ! ଗ୍ରହଣ କର କି ନା ସ୍ନେହରେ କେଶପାଶେ ।
ପ୍ରସ୍ଥାନ ବ୍ୟସ୍ତତାରେ ପ୍ରଶିଥିଳ କର ନା ପ୍ରାର୍ଥନା ମୋର ମାନ ।
କାନ୍ତେ ! ଶମ୍ପାର ଚମ୍ପା ଖସି ନ ପଡ଼ୁ ତଳେ
ହୋଇ ବର୍ଣ୍ଣସମାନ । ୬୬ ।

ସୂର୍ପଣଖା—(ସନ୍ତୋଷାନୁରାଗେ ସ୍ୱଗତ) ଏହି ମୋର ହୃଦୟ-ବଲ୍ଲଭ ମୋତେ ଯଥାର୍ଥ ସୀତା ଭାବି ଯଥାଭିଳଷିତ-ବ୍ୟାପାରକୁ ପ୍ରତିଷେଧ କରୁଥିଲା ପରି ପ୍ରାର୍ଥନା କରୁଅଛି । କିପରି ପୁଣି ଏହାକୁ ଧରି କ୍ରୀଡ଼ା କରିବି ? (ପ୍ରକାଶତଃ) ଆର୍ଯ୍ୟପୁତ୍ର ! ଏହି ସମ୍ମୁଖ ଚମ୍ପକବୃକ୍ଷର ଅଗ୍ରଶାଖାରେ ଯେଉଁ ମୃଦୁମଞ୍ଜୁଳ କୁସୁମଗୁଡ଼ିକ ଲମ୍ବି ରହିଅଛି, ସେଥିରେ ମୋର ପରମଧିକ ଅଭିଳାଷ ବଳଅଛି । ଆପଣ ମୋର ପୃଷ୍ଠଭାଗରେ ଆରୋହଣ କରି ତୋଳି ଆଣନ୍ତୁ ।

ଲକ୍ଷ୍ମଣ—(ହାସପ୍ରକାଶପୂର୍ବକ) ରାକ୍ଷସୀ ଏହାକୁ ଆର୍ଯ୍ୟ ଭାବି ଧରିନେବାକୁ ଇଚ୍ଛା କରୁଅଛି ।

ଦଶରଥ—(ସ୍ୱଗତ) ତେବେ ବର୍ତ୍ତମାନ ମୋତେ ଅବକାଶ ମିଳିଲା । (ପ୍ରକାଶତଃ)

ଅନୁଷ୍ଟୁପ୍ ବୃତ୍ତ ।

ଅବେ୍ରାହ ମୋ ପୃଷ୍ଠଭାଗେ ବର୍ବେ୍ରହେ ସୁରାଗିଣି !
ସେଚ୍ଛାନୁସାରେ ଏ ଚମ୍ପାପୁଷ୍ପମାନଙ୍କୁ ତୋଳ ତୁ ।୩୬।

( ଏହାକହି ଶରୀର ନୂଆଁଇବା )

ଲକ୍ଷ୍ମଣ—ଏହି ରାକ୍ଷସ ବୃଦ୍ଧ ରାକ୍ଷସୀକୁ ଆର୍ଯ୍ୟା ଭାବି ଧରି ନେବାକୁ ଇଚ୍ଛା କରୁଅଛି । ଅହୋ ! ଏ ତ ବଡ଼ କୌତୁକ-ସମ୍ବଧାନ । ଅଚ୍ଛା, ତଦୁପରି କି ହେବ ଦେଖାଯାଉ । ( ଏହି ବର୍ତ୍ତରରେ ଚାଲିବା )

ସୂର୍ପଣଖା—( ସ୍ୱଗତ ) ଅଚ୍ଛା ଏପରି ହେଉ, ଆପତ୍ତି କଣ ? ଏହାର ପୃଷ୍ଠଦେଶରେ ରହି ନିଜ ପାଦଦ୍ୱୟରେ ଏହାକୁ ଅବେଷ୍ଟିତ ରଖି ଗଗନ ମାର୍ଗରେ ଧରି ଯିବି । ( ଏ ବର୍ତ୍ତରରେ ଆରୋହଣ କରିବା )

ସୀତା—ଆର୍ଯ୍ୟପୁତ୍ର ! ଏ ପୁଣି କିଏ ଉଭୟ ପାର୍ଶ୍ୱରେ ସୁଦୂର-ଲମ୍ବିତ ବିସ୍ତୀର୍ଣ୍ଣ ଘନସମୂହର ସଂଯୋଗରେ ବିରାଜିତ ପର୍ବତ ପରି ବ୍ୟୋମମାର୍ଗରେ ଆସୁଅଛି ?

ରାମ—( ଚାହିଁ ) ସୀତେ ! ଜ୍ୟେଷ୍ଠଭ୍ରାତା ସମ୍ପାତିଙ୍କୁ ଅଭିବାଦନ କରି ତାତ ଜଟାୟୁ ଆସୁଅଛନ୍ତି ।

ସୀତା—ଆର୍ଯ୍ୟପୁତ୍ର ! ଏ ଦଗକୁ ଦୃଷ୍ଟି ପକାଅ । ରାକ୍ଷସୀଟା ରାକ୍ଷସର ଗରମରେ ଚଢ଼ିଅଛି ।

ରାମ—( ସାଶ୍ଚର୍ଯ୍ୟ ) ଅହୋ ! ଏ ପୁଣି କିପରି ! ଅୟି ସୀତେ ! ଦେଖ ଦେଖ ।

ସ୍ରଗ୍ଧରା ବୃତ୍ତ ।

ମଦ୍ରୂପଗ୍ରାହଦୈତେ୍ୟ ହୃଦପଘନବତୀ ରାକ୍ଷସୀ ପୃଷ୍ଠଧାର୍ଯ୍ୟା
ହେଲା ଆକାଶମାର୍ଗେ ଗମଇ ତ ଅଧୁନା ଏକ ଆଶ୍ଚର୍ଯ୍ୟ ଚର୍ଯ୍ୟା ।
ପକ୍ଷକ୍ଷେପୋତ୍ଥ ବାତେ ଜଳଦପଟଳ ବକ୍ଷୋଭ ସଂକୁପ୍ୟମାନ
ତାତସ୍ନେହୀ ଜଟାୟୁ ଶ୍ରୁତିକ ଅଟଣ୍ଡ ତା ଆଗରେ ବଦ୍ୟମାନ ।୩୭

ସୀତା—( ହାସ ପ୍ରକାଶପୂର୍ବକ ) ଓ ! ଏ ତ ବଡ଼ ଆଶ୍ଚର୍ଯ୍ୟ !
ଏହା ପରେ ପୁଣି କଣ ହେବ ଜଣାଯାଉ ନାହିଁ ।

ଲକ୍ଷ୍ମଣ—ସୀତାରୂପଧାରିଣୀ ରାକ୍ଷସୀକୁ ଧରି ଆର୍ଯ୍ୟଙ୍କ ରୂପଧାରୀ ରାକ୍ଷସ ଆକାଶରେ ଉଠିଅଛି । ( ଉପରକୁ ଚାହିଁ) ତାତ ଜଟାୟୁ ପୁଣି କପରି ଏଠାରେ ଉପସ୍ଥିତ ହେଲେ ? ଅପିତ ତାହାକୁ କହୁଅଛନ୍ତି କି —

ଅନଷ୍ଟୁପ୍‌ବୃତ୍ତ ।

"ରାମଙ୍କ ରୂପେ ବୈଦେହୀ ମାୟାରେ ହରି ଯାଉଛୁ ।
କିଏ ତୁ ? ରହ ମୋ ଆଗେ ସରିଲା ତୋର ଜୀବତ ।୩୮। "

ଏହି ରାକ୍ଷସ ରାକ୍ଷସୀଙ୍କ ଯଥାର୍ଥ ସୀତା ବୋଲି ମନେ-କରଅଛି ।

ସୀତା—ଆର୍ଯ୍ୟ ଜଟାୟୁଙ୍କୁ ଦେଖି ଏ ଦୁହେଁ ଭୟରେ ଶୀଘ୍ର ଆକାଶରୁ ଧରଣୀତଳରେ ପତିତ ହେଲେ ।

ରାମ—ବତ୍ସ ଲକ୍ଷ୍ମଣ ମଧ ଖଡ୍ଗହସ୍ତରେ ଏ ଦୁହିଙ୍କ ସମ୍ମୁଖବର୍ତ୍ତୀ ହେଉଅଛି ।

ସୂର୍ପଣଖା— ( ସଦୁଃଖେ ସ୍ୱଗତ )

ନଶ୍ଚେ ଅନ୍ୟ କେହି ରାମରୂପରେ ମୋତେ ଭୁଲାଇଅଛି ।
ତାହା ନ ହେଲେ ସାମାନ୍ୟ ମନୁଷ୍ୟର ଅବା କପର
ଇଦୃଶ ଉତ୍ପତନ ବେଗ ହୁଅନ୍ତା ? ( ପ୍ରକାଶତଃ )
ତୁ କିଏ ? ମୋତେ ଧରି ଉପରକୁ ଉଠିଅଛୁ ।

ବିରାଧ—( ସ୍ୱଗତ ) ହାୟ ! ଜାନକୀ ଅପହରଣରେ ଏହି
ଦୁରାତ୍ମା ବୃଦ୍ଧ ଗୃଧ୍ର ସବଗ୍ରହ ଅନ୍ତରାୟସ୍ୱରୂପ ଆସି
ଉପସ୍ଥିତ ହେଲା ଯେ ! ଅଥବା ଏ ସୀତା ନୁହେ ?
ତାହାହେଲେ ଏହାକୁ ଉପରକୁ ନେବା ଇଚ୍ଛାରେ ଧରି,
ପରଂତୁ ତପାସ୍ୟ ଚରଣଯୁଗଳବେଷ୍ଟିତଗଳ ହୋଇ
କପରି ସହସା ଆକାଶମାର୍ଗକୁ ନୀତ ହେଲି ? (ପ୍ରକାଶତଃ)
ତୁ ପୁଣି କିଏ ? ମୋତେ ଚରଣଦ୍ୱୟରେ ଛନ୍ଦ ଧରି
ଗଗନରେ ଉଠିଅଛୁ ।

ଲକ୍ଷ୍ମଣ—(ସମୀପକୁ ଯାଇ ) ତୁମ୍ଭେ ଦୁହେଁ ରାକ୍ଷସ ଓ ରାକ୍ଷସୀ,
ପରସ୍ପର ବଞ୍ଚିତ ହୋଇଅଛ ।

ସୂର୍ପଣଖା—(ସ୍ମରଣପୂର୍ବକ) ତୁମେ କଣ ବିରାଧ କି ?

ବିରାଧ—(ବିସ୍ମୟପୂର୍ବକ) ତୁମେ କଣ ସୂର୍ପଣଖା କି ?

ଲକ୍ଷ୍ମଣ—ଦୁରାତ୍ମନ୍ ପରଦାରଚୋର ବିରାଧ ପାପିଷ୍ଠ ! ଏକ୍ଷଣି
ନହତ ହେବୁ । (ବିରାଧକୁ ଆକର୍ଷି ଧରିବା)

ବିରାଧ—( ସବେଗେ ଛାଡ଼ ଛାଡ଼ ବୋଲି ହସ୍ତକୁ ଛୁଞ୍ଚାଡ଼ି
ନଜ ରୂପରେ ଶୂଳ ଧରି ଭ୍ରମାଇବା)

ଶୂର୍ପଣଖା—( ନିଜ ରୂପରେ ପ୍ରବେଶି ସୋଦ୍ବେଗେ) ଅହୋ କି ପ୍ରମାଦ ! ହାୟ୍ ହାୟ୍ ! ବିରାଧ ଏକଅଡ଼ୁ ଲକ୍ଷ୍ମଣଦ୍ୱାରା ଅନ୍ୟଅଡ଼ୁ ଜଟାୟୁଦ୍ୱାରା ଅଭିଯୁକ୍ତ ହେଲା ଯେ । (ଏହା କହି ରୋଦନ )

ଜଟାୟୁ ପ୍ରବେଶ ।

ଜଟାୟୁ—(ସ୍ୱଗତ) ଯେ କି ସୀତାଙ୍କ ରୂପ ଗ୍ରହଣ କରିଥିଲା, ବୋଧ ହୁଏ ସେ ଶୂର୍ପଣଖା । (ପ୍ରକାଶତଃ) ବତ୍ସ ଲକ୍ଷ୍ମଣ ! ଏହି ମୁନିକଣ୍ଟକ ବିରାଧକୁ ଛଡ଼ ନାହିଁ ।

ସୀତା—କପଟ ଏହି ରାକ୍ଷସୀଟା ପୁନରପି ନିଜ ରୂପ ଧରିଅଛି ! ଏହି ରାକ୍ଷସ ମଧ୍ୟ ସ୍ୱକୀୟ ରୂପ ଗ୍ରହଣ ମାତ୍ରକେ ବତ୍ସ ଲକ୍ଷ୍ମଣ ଓ ତାତ ଜଟାୟୁଙ୍କଦ୍ୱାରା ଆକ୍ରାନ୍ତ ହେଲା ।

ରାମ—ଦେବି ! ନିଯ୍ତବଳରୁ ଅମ୍ଭମାନଙ୍କର ମଙ୍ଗଳ ଘଟିଅଛି ।

ସ୍ରଗ୍ଧରା ବୃତ୍ତ ।

ତତ୍ତ୍ୱସ୍ତନ୍ୟସ୍ତ ଶୂଳ ଦ୍ୱିଶକଳ କରି ସନ୍ଧାନ୍ତ ବାଣ ପ୍ରହାରେ
ଅତ୍ୟନ୍ତ କ୍ରୂର ବାହା-ତରୁଯୁଗଳକୁ ବଚ୍ଛେଦଲା ଖଡ୍ଗଧାରେ ।
ଗର୍ତ୍ତେ ସୌମିତ୍ରି ଅଦ୍ୟ ଦ୍ୱିରଦନ ପରି ସହାଦ୍ର ନିକ୍ଷେପି ବେଗେ
ସୀତେ ! ଅଚ୍ଛାଦନାର୍ଥେ ଧରି ନଅଇ ଶିଳା ବୃକ୍ଷ ଲୋଷ୍ଟ୍ରାଦି
ତୋଷେ । ୭୯ ।

ସୀତା—ଏହା ମୋର ବଡ଼ ସନ୍ତୋଷର କଥା ।

ଶୂର୍ପଣଖା—ହା ବିରାଧ ! ହାୟ୍ ! ଖରାସୁରର ପ୍ରିୟ ସୁହୃଦ !

ଖରର ଅଦେଶରେ ରଘୁକୁମାରହନନାର୍ଥ ଆସି ମୃଗଦ୍ୱାରା ଶାର୍ଦ୍ଦୂଳ ପରି ଲକ୍ଷ୍ମଣ ହାତରେ ନିହତ ହେଲ । ହାୟ ହାୟ ! ମୁଁ ପୁଣି ରାବଣଦ୍ୱାରା ଅଦଷ୍ଟା ହୋଇ ସୀତାକୁ ଅପହରଣ କରିବାକୁ ପାରିଲି ନାହିଁ । ପରନ୍ତୁ ରାମ ପ୍ରତି ପ୍ରେମାଭିଳାଷ ବଢ଼ାଇ ସୀତାର ରୂପ ଧରି ସୁଦ୍ଧା ତାହାକୁ ଶୈର୍ଯ୍ୟକ୍ରୀଡ଼ାର୍ଥ ହେମକୂଟଶିଖରକୁ ନେଇ ପାରିଲି ନାହିଁ । ପ୍ରତ୍ୟୁତ ତୋର ମରଣ ଦେଖି ଶୋକଧାରରେ ଆଦ୍ର୍ଶରୀରା ହୋଇ ରୋଦନକୁ କେବଳ ଶରଣ କଲି । (ଏହା କହି କାନ୍ଦିବା)

ଜଟାୟୁ—ବତ୍ସ ଲକ୍ଷ୍ମଣ ! ଅସୁରୀର କଥା ଶୁଣିଲ ତ ? ବତ୍ସ ରାମଚନ୍ଦ୍ରଙ୍କୁ ଅତିକ୍ରମଣ କରିବାପାଇଁ ଦୁଷ୍ଟାତ୍ମା ରାବଣ ରାକ୍ଷସ ଆସି ନିହତ ହେଲା ।

ଲକ୍ଷ୍ମଣ—ଏହି ରାକ୍ଷସୀ ମଧ୍ୟ ରାବଣର ଅଦେଶାନୁସାରେ ଆର୍ଯ୍ୟା ସୀତାଙ୍କର ଅପହରଣାର୍ଥ ଆସିଅଛି । ଅତଏବ ଏହାକୁ ବିରୂପିଣୀ କରିବା ସମୁଚିତ । (ଏହା କହି ଖଡ୍ଗ ଧରିବା)

ରାମ—ପ୍ରିୟେ ଜାନକି ! ଦେଖ ଦେଖ—

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ସୌମିତ୍ରି-ପ୍ରତିତାସି-କର୍ତ୍ତିତନସା ହେବାରୁ ଏ ରାକ୍ଷସୀ
ଉଚ୍ଚେ ରୋଦଣ ରାବ ଦେଇ ଗମିଲା ଆକାଶରେ ପ୍ରେୟସି !
ତଦ୍ଦେହସ୍ରୁତସାନ୍ଦ୍ରରକ୍ତପୃଷତାସନ୍ଦୋହ ଭୂପାତିତ
ମେଘଭ୍ରାନ୍ତିରୁ ଇନ୍ଦ୍ରଗୋପ ପଡ଼ିଲା ପ୍ରାୟେ ଦିଶେ ଶୋଭିତ । ୪୦।

ପ୍ରିୟେ ! ବର୍ତ୍ତମାନ ଆର୍ଯ୍ୟ ଜଟାୟୁଙ୍କର ଅଭିବାଦନ ଆଉ ବିଜୟୀ ବତ୍ସ ଲକ୍ଷ୍ମଣର ସମ୍ଭାବନା କରଣାର୍ଥ ଅସ ଅଧିତ୍ୟକାରୁ ଅବତରଣ କରିଯିବା ।

ସୀତା—ଆର୍ଯ୍ୟପୁତ୍ରଙ୍କର ଯେପରି ଅଭିରୁଚି ।

(ଦୁହେଁ ଅଧିତ୍ୟକାରୁ ଓହ୍ଲାଇବା)

ଲକ୍ଷ୍ମଣ—ତାତ ଗୃଧ୍ରାଧିପ ! ଦେଖନ୍ତୁ ଆର୍ଯ୍ୟା ସୀତାଙ୍କ ସହିତ ଆର୍ଯ୍ୟ ଚିତ୍ରଶୈଳରୁ ଓହ୍ଲାଉଅଛନ୍ତି । ଆମ୍ଭେ ଦୁହେଁ ମଧ୍ୟ ଉଟଜଦ୍ୱାରଦେଶକୁ ଯିବା ଚାଲନ୍ତୁ ।

ଜଟାୟୁ—ବତ୍ସ ! ତୁମ୍ଭର ଯେ ଅଭିରୁଚି । (ଦୁହେଁ ଚାଲିବା)

ରାମ—ଅୟି ପ୍ରେୟସି !

ବସନ୍ତତିଳକ ବୃତ୍ତ ।

ହାବାବ ମାନ ଧର ମୋ କର କାନ୍ତିସିନ୍ଧୁ !
ଏ ବନ୍ଧୁର ସ୍ଥଳ ଅଟେ ମମ ଜୀବବନ୍ଧୁ !
ଏ ପ୍ରସ୍ତରାଳି ଉପରେ ଖସି ଯାଅ ନା ରେ ।
ଧୀରେ ତୁ ପାଦ ଦିଅ କଣ୍ଟକରେ ଅନା ରେ । ୪୧ ।

ସୀତା—ଆର୍ଯ୍ୟପୁତ୍ର ! ତାତ ଜଟାୟୁ ଆଉ ବତ୍ସ ଲକ୍ଷ୍ମଣ ପର୍ଣ୍ଣଶାଳାର ଦ୍ୱାରକୁ ଆସୁଅଛନ୍ତି ।

ରାମ—ଅନ୍ୟ ଦିଗରେ ଦୃଷ୍ଟି ଦିଅ ନାହିଁ ।

ସ୍ରଗ୍ଧରା ବୃତ୍ତ ।

ଏ ପନ୍ଥା ବକ୍ର ଯେହେତୁ କରଦମିତ ତଥା ଅନ୍ୟ ମାର୍ଗେ ତୁ ଚାଲ ।
ଏ ପାର୍ବତ୍ୟ ପ୍ରବାହେ ଧର ତ ଅଳପ ଉତ୍ତୋଳ ଜଙ୍ଘାରୁ ଚେଲ ।

ବାମୀରନମ୍ରଶାଖା ନ ପଡୁ ବଦନରେ ମୌଳି ଅପେ ଲୁଅଁଅ ।
କାନ୍ତେ ସଲଗ୍ନ ହେଲ ଚୂଡକବାଟପରେ କାଢ଼ ତେ। ଉତ୍ତରୀୟ ॥

ସୀତା—(ତଥାଭିନୟରେ ରାମଙ୍କୁ ଅନୁସର ଚାଲିବା )

ଜଟାୟୁ—

ସ୍ରଗ୍ଧରା ବୃତ୍ତ ।

ପୂଜାର୍ଥେ ବତ୍ସ ! ତୁମ୍ଭେ କରୁଅଛ ସଦୟେ ଯାର ପୁଷ୍ପାବଲୂନ,
ଯେ ବର୍ଦ୍ଧେ ପାଇ ସୀତା-କରଧୃତକଳଶୀ-ବାରିଧାରାପ୍ରଦାନ ।
ପର୍ଯ୍ୟନ୍ତେ ଯାର କେଳୀ ହରିଣ ବରହଣବ୍ରାତ ସଂବାଦ୍ୟମାନ,
ଏ ସ୍ଥାନେ ସେହ ମାଡ଼ଦ୍ରୁମନକର କରେ ଚତ୍ତ ସପ୍ରୀତିମାନ ॥

ରାମ—ପ୍ରିୟେ !

ବସନ୍ତତିଲକ ବୃତ୍ତ ।

ଶ୍ରାନ୍ତା ନିତାନ୍ତ ଅଧୁନା ତୁହ ମୋର ସଙ୍ଗେ
ହେବାରୁ ଶୈଳୁ ଅବତୀର୍ଣ୍ଣ କଥାପ୍ରସଙ୍ଗେ ।
ଘର୍ମାକ୍ତ-ଗଣ୍ଡ-ପରଶୋଭିତ ବକ୍ତ୍ର ତୋର,
ପୀୟୂଷବର୍ଷି-ଶଶିମଣ୍ଡଳ ଯେପ୍ରକାର । ୪୪ ।

ଅତଏବ ମଞ୍ଜୁଳମଞ୍ଜରୀପୁଞ୍ଜସଯୁକ୍ତ ବାଲରସାଳର ଛାୟାରେ ପରଶୀତଳ ଏହ କାନନବାପୀର ସୀମାନ୍ତଃ ପରସର ପ୍ରଦେଶରେ କ୍ଷଣମାଏ ବିଶ୍ରାମ କର !

ସୀତା—ଆର୍ଯ୍ୟପୁତ୍ର ! ତାତ ଜଟାୟୁ ଅଉ ବତ୍ସ ଲକ୍ଷ୍ମଣ ଅମ୍ଭ ଦୁହଙ୍କର ଆଗମନକୁ ଅପେକ୍ଷା କର ରହିଅଛନ୍ତି; ଅପ ଧୀରେ ଧୀରେ ପର୍ଣ୍ଣଶାଳାକୁ ବାହାଡ଼ିବା ।

ରାମ—ତେବେ ଏହିବାଟେ ଯିବା ଚାଲ । ଦେଖ ଏହି ମାର୍ଗରେ—

କରଣୀ ବୃତ୍ତ ।

ମଧୁଶୀକରରମ୍ଯ ସେଚନ କରି ଯାବତ ହରତେ
କଲହାରର ପରଶୀତଳ ହରି ସୌରଭଭୃତେ ।
କରି ବସ୍ତୃତ ମଦଉତ୍କଣ୍ଠ-କଳହଂସର ରସିତେ
ପ୍ରସରେ ଅୟି ମମ ଜୀବନଧନ ! ମାରୁତ ସତତେ ।୪୫।

( ଚାଲିଯାଇଁ ଅବଲୋକନ କରି ) ତାତ ପୂଜ୍ୟପାଦ ଗୃଧ୍ରରାଜ ! ମୁଁ ଦାଶରଥି ରାମ ଆପଣଙ୍କୁ ପ୍ରଣାମ କରୁଅଛି ।

ଜଟାୟୁ—ବତ୍ସ ! ଚିରଜୀବୀ ହୁଅ ।

ସୀତା—ଆର୍ଯ୍ୟ ! ମୁଁ ନମସ୍କାର କରୁଅଛି ।

ଜଟାୟୁ—ବତ୍ସେ ! ବୀରପ୍ରସବା ହୁଅ ।

ରାମ—( ଲକ୍ଷ୍ମଣଙ୍କୁ ଆଲିଙ୍ଗନ କରି ) ବତ୍ସ ! ଭାଗ୍ୟବଶରୁ ତୋତେ ବିଜୟୀ ଦେଖୁଅଛି ।

ଲକ୍ଷ୍ମଣ—ଏ ସବୁ ତାତ ଗୃଧ୍ରରାଜଙ୍କ ପ୍ରସାଦରୁ

ଜଟାୟୁ—ବତ୍ସ ରାମଭଦ୍ର ! ବତ୍ସ ଲକ୍ଷ୍ମଣଙ୍କର ବିଜୟ କଣ ତୁମ୍ଭେ ଦେଖିଅଛ ?

ରାମ—ହଁ, ଆମ୍ଭେ ଦୂରେହେଁ ପର୍ବତଶିଖରରୁ ସବୁ ଦେଖିଅଛୁଁ ।

ସୀତା—କିନ୍ତୁ ସେହି ରାକ୍ଷସଅଉ ରାକ୍ଷସୀର ନିବାସସ୍ଥାନ କମ୍ବା ନାମ ଜଣାଯାଇ ନାହିଁ ।

ଜଟାୟୁ—ସେ ଏହି ଜନସ୍ଥାନର ବିରାଧ ନାମ ରାକ୍ଷସ ।

ପୃଥ୍ୱୀ ବୃତ୍ତ ।

ଚତୁର୍ଦ୍ଦଶ ସହସ୍ର ରାକ୍ଷସ ଚମୂସମୂହାଗ୍ରଣୀ
ଖରାସୁର ମହାବଳୀ ବନର ଏକ ପାର୍ଶ୍ୱେ ପୁଣି ।
ତପସ୍ୱିଜନବୃନ୍ଦରେ କରଇ ଘୋର ବିଦ୍ୱେଷିତା
ବିରାଧ ଦନୁସନ୍ତତି-ପ୍ରବର ଅନ୍ୟ ପାର୍ଶ୍ୱେ ତଥା । ୪୬ ।

ସେହି ରାକ୍ଷସୀ ଖରର କନିଷ୍ଠା ଭଗିନୀ, ତାହାର ନାମ ଶୂର୍ପଣଖା ।

ରାମ—ବତ୍ସ ଲକ୍ଷ୍ମଣ ବିରାଧକୁ ନିହତ କରିଅଛ ! (ସସ୍ନେହାଦରରେ ଲକ୍ଷ୍ମଣଙ୍କୁ ଚୁମ୍ବିବା)

ଲକ୍ଷ୍ମଣ—(ମୁଖ ନମ୍ର କରିବା)

ଜଟାୟୁ—ହଁ, ବିରାଧ ନିହତ ହୋଇଅଛି ।

ରାମ—ଅବଶିଷ୍ଟ ବଧଯୋଗ୍ୟ ରାକ୍ଷସସବୁ ମୋ ଭାଗରେ ନିର୍ଦ୍ଧାରିତ ହେଲେ ।

ଜଟାୟୁ—ବତ୍ସ ! ଖରାସୁର ଶୂର୍ପଣଖାର ବୈରୂପ୍ୟ ଦେଖି ବୋଧହୁଏ ଏକ୍ଷଣି ଅତି କ୍ରୋଧରେ ଯୁଦ୍ଧାର୍ଥ ଆସିବ ।

ରାମ—( ସୋତ୍ସାହେ ) ହେଉ, ତାହାହେଲେ କୌଣସି କ୍ଷତି ନାହିଁ ।

ଜଟାୟୁ—ସମ୍ପ୍ରତି ବିଶ୍ରାମାର୍ଥ ଏହି ନିକୁଞ୍ଜପୁଞ୍ଜ-ମନୋହର ଗିରିଶିଖରରେ ଆରୋହଣ କରିବାକୁ ଇଚ୍ଛା କରେଁ ।

ରାମ—ତାତଙ୍କର ଯେ ଇଚ୍ଛା ।

ଜଟାୟୁ—ବତ୍ସ ! ଏଣିକି ସାବଧାନ ରହିବ । (ନିଷ୍କ୍ରାନ୍ତ)

ନେପଥ୍ୟରେ—

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଉଚ୍ଚେ ରୋଦଣ ଅଶ୍ରୁପୂର୍ଣ୍ଣନୟନା ଦୁଃଖେ ଧରାଲିଙ୍ଗିତା
ଦୁଷ୍ଟା ସୂର୍ପଣଖା ବିରୂପିତନସା ହେଲା ଅନାଶ୍ୱାସିତା ।
ସକ୍ରୋଧେ ଯୁଝିବାକୁ ରାଘବ ତୁଲେ ଧାଏଁ ସସୈନ୍ୟେ ଖର
ବେଗେ ଆସ ଯିବା ନଭସ୍ଥଳ ରଗର୍ଜ୍ଜଣେ ! ଯେବେ ଦର୍ଦ୍ଦୁଷାକର ।୪୭।

ଲକ୍ଷ୍ମଣ—ଯୁଦ୍ଧଦର୍ଶନକୌତୁକୀ ବ୍ରହ୍ମପୁତ୍ର ଦୈଶିକ ମୁନି ଏଥି ଆଳାପ କରୁଅଛନ୍ତି । ଆମ୍ଭମାନଙ୍କୁ ସନ୍ନଦ୍ଧ ରହିବାକୁ ହେବ ।

ରାମ—ତାର୍ତ୍ତ ଜଟାୟୁଙ୍କ ସମୀପରେ ସସୈନ୍ୟ ଖରସୁରର ନିଧନ ହାର ମୋ ହାତରେ ନିର୍ଦ୍ଧାରିତ ଜର, ତଦବଧି ମୁଁ ସୁସନ୍ନଦ୍ଧ ଅଛି । ବତ୍ସ ! ତୁମ୍ଭେ ଜାନକୀଙ୍କୁ ସଙ୍ଗେ ନେଇ ଉଟଜରେ ପ୍ରବେଶ କର ।

ସୀତା—ଆର୍ଯ୍ୟପୁତ୍ର ! ସାବଧାନ ରହିବେ ।

ରାମ—ପ୍ରିୟେ ! ସନ୍ଦେହ କର ନାହିଁ ।

ଲକ୍ଷ୍ମଣ—ଆପଣଙ୍କର ଯାହା ଅଭିରୁଚି । ( ସୀତାଙ୍କ ସହିତ ନିଷ୍କ୍ରାନ୍ତ)

ନେପଥ୍ୟରେ—

ଉପେନ୍ଦ୍ରବଜ୍ରା ବୃତ୍ତ ।

ଇକ୍ଷ୍ୱାକୁବଂଶୋଦ୍ଭବ ରାଜବୀର
ତପସ୍ୱିବେଶୀ ହୃଦୟସ୍ଥ-ଦାର
ମୋ ଶତ୍ରୁ ହେଲା ଶୁଣ ଶସ୍ତ୍ରଧାର-
ଅଣୀକମାନେ ଗମ୍ୟ ତାକୁ ମାର । ୪୮ ।

ରାମ—(ସହର୍ଷେ ସ୍ମିତପ୍ରକାଶପୂର୍ବକ) ଏ କଣ ! ଖରାସୁର ପ୍ରବିଷ୍ଟ ହୋଇ୍ ରଡ଼ କରୁଅଛୁ ? ଅରେ ରେ ଦୁରାତ୍ମନ୍ ରାକ୍ଷସା-ଧମ ! ରହ ରହ । (କବଚଧାରଣପୂର୍ବକ ବାଣ କୋଦଣ୍ଡ ଓ ତୂଣୀର ଧରି ବାହାରିବା)

ସ୍ରଗ୍ଧରା ବୃତ୍ତ ।

ଯାହା ଯାହାର ଅସ୍ତ୍ରିପ୍ରକର ରଖିଛୁ ଏ କାନନେ ଜାନ* ନେଇ,
ଯେତେ ଯେତେ ତପସ୍ୱୀ ତପକୁ ବରଜଲେ
ତୋ ଭୟେ ଭୀତ ହୋଇ ।
ସେମାନଙ୍କୁ ପ୍ରମୋଦୀ କରିବ ମୁହିଁ ତଥା ସଙ୍ଗରେ ପକ୍ଷିସଙ୍ଘେ,
ତୋତେ ଦୁଷ୍ଟାତ୍ମ ! ଦୈତ୍ୟାଧମ ! ଖର ବଶିଖେ
କାଶି ନାଶୀର ସଙ୍ଗେ । ୪୯ ।

ସମସ୍ତେ ନିଷ୍କ୍ରାନ୍ତ ।

ପଞ୍ଚମ ଅଙ୍କ ସମାପ୍ତ ।



* ଜାନ = ପ୍ରାଣ ।

# ଷଷ୍ଠ ଅଙ୍କ ।



ତଦନନ୍ତର ଅନଳାର ପ୍ରବେଶ ।

ଅନଳା—(ପୁରତଃ ଦୃଷ୍ଟିନକ୍ଷେପି) ପିତାଙ୍କର ଅମାତ୍ୟ ସମ୍ପାତ୍ତି ଏହୁଆଡ଼କୁ କେବଳ ଆସୁଅଛନ୍ତି ତ ?

ସମ୍ପାତର ପ୍ରବେଶ ।

ସମ୍ପାତ—ସ୍ୱାମୀ ଯୁବରାଜ ବିଭୀଷଣଙ୍କ ତନୟା ଅନଳା ଆସୁ-ଅଛୁ । ( ସମୀପକୁ ଯାଇଁ ) ବତ୍ସେ ! ଅନଳେ ! କେଉଁଠାରୁ ଆସୁଅଛ ?

ଅନଳା—ବଜ୍ରଂଷ୍ଟ୍ରିହର ଗୃହରୁ ।

ସମ୍ପାତ—ସେଠାରେ ତୁମର କଅଣ କାର୍ଯ୍ୟ ଥିଲା ?

ଅନଳା—ଆର୍ଯ୍ୟ ଅମାତ୍ୟ ! ଶୁଣନ୍ତୁ । ମହାରାଜଙ୍କର ସୂର୍ପଣଖା-ନାମ୍ନୀ ଏକ ଭଗିନୀ ଅଛନ୍ତି ।

ସମ୍ପାତ—(ହସି) ପିତାଙ୍କର ଭଗିନୀ ବୋଲି କହ । ଯେ ରାମ ପ୍ରତି କାମଯୁକ୍ତା ହୋଇ ଲକ୍ଷ୍ମଣଦ୍ୱାରା ବିଗତନାସା ହେଲେ; ତଥାଚ ଯାହାଙ୍କ ବଚନରେ ପ୍ରେଷିତ ସସୈନ୍ୟ ଖରାସୁର ରାମବାହୁପ୍ରତାପାଗ୍ନିରେ ଶଲଭସ୍ଥିତ ହେଲେ; ସେ ନୁହନ୍ତି କି ?

ଅନଳା—ହଁ ସେହି । ବଜ୍ରଂଷ୍ଟ୍ରିହ ଭାର୍ଯ୍ୟା ମାୟାବତୀ ମୋ

ଅଗରେ ତାହାଙ୍କୁ ନାସିକାଚ୍ଛେଦର କାରଣ ପଚାରିବାରୁ ସେ କଥାପ୍ରସଙ୍ଗରେ ରାମଙ୍କର ମଧୁରାକୃତିର ବର୍ଣ୍ଣନା କଲେ ।

ସମ୍ପାତି—ତା ପରେ—

ଅନଳା—ଇତଃପୂର୍ବେ ରାମଚନ୍ଦ୍ରଙ୍କ ରୂପରେ ଅଙ୍କିତ ଚିତ୍ରପଟ, ଯାହାକୁ ପୂର୍ବେ ବନ୍ଦୁଏଁକି ହ ଆଣିଥିଲା, ସେଇଟି ମାଲ୍ୟବତୀ ମୋ ହସ୍ତରେ ଦେଇଥିଲା ।

ସମ୍ପାତି—ହେଲେ ତା ପରେ କଣ ହେଲା ?

ଅନଳା—ଏକ୍ଷଣି ରାମ ପ୍ରତିକୃତି ଦେଖିବାପାଇଁ ସେ ଚିତ୍ରପଟଟି ଦେବାକୁ ମୋତେ କହିଲା ।

ସମ୍ପାତି—ତା ଉତ୍ତାରୁ—

ଅନଳା—ଅତଏବ ମାଲ୍ୟବତୀଙ୍କ ଚିତ୍ରପଟ ପ୍ରତ୍ୟର୍ପଣ କରିବାକୁ ଯାଇଥିଲି ।

ସମ୍ପାତି—କି ହେତୁରୁ ସେହି ଚିତ୍ରପଟଟିକି ସେ ତୁମ୍ଭ ହସ୍ତରେ ଦେଇଥିଲା ?

ଅନଳା—ସେହି ଚିତ୍ରପଟଟିକି ବିବାହ ପୂର୍ବେ ସୀତା ଲେଖି-ଥିଲେ । ସମ୍ପ୍ରତି ଦୀର୍ଘ ବିରହରେ ତାହାଙ୍କର ଅଶ୍ୱାସନା ନିମିତ୍ତ ମୁଁ ସେଇଟି ମାଗିଥିଣି ଅଜପର୍ଯ୍ୟନ୍ତ ଦେଖାଉ-ଥିଲି ।

ସମ୍ପାତି—(ସ୍ମରଣପୂର୍ବକ) ଅହୋ ! କି ଆଶ୍ଚର୍ଯ୍ୟ ଯେ !

ଅନୁଷ୍ଟୁପ୍ ବୃତ୍ତି ।

ସୀତା ସକାଶେ ମାରୀଚ ମୃଗରୂପୀ ହିପାତିତ ।
ଗରୁତ୍ମାନଙ୍କ ଭ୍ରାତୃବ୍ୟ ଜଟାୟୁ ହତ ତଦ୍ବତ । ୧ ।

ଅୟି ଅନଳେ ! ଚିରସାହଚର୍ଯ୍ୟରୁ ଯେ ତୁମ୍ଭ ପ୍ରତି ପ୍ରିୟସଖୀ ସ୍ନେହ କରୁଅଛନ୍ତି, ସେହି ସୀତାଙ୍କର ସମାଶ୍ୱାସନା ଏଣିକି କିପରି ହେବ ?

ଅନଳା—ଅତଏବ ସମାଶ୍ୱାସନ ବିୟୋଗରୁ ସନ୍ତତ ଦୁଃଖିତା ସୀତାଙ୍କର ଶରୀର ରହିବ କି ନାହିଁ ? ଏହା ଭାବି ମୁଁ ବଡ଼ ଭୀତା ଅଛି ।

ସ୍ରଗ୍ଧରା ବୃତ୍ତ ।

ବକ୍ଷୋଦେଶେ ନିତାନ୍ତ ଶ୍ଳଥ ସର ମୁକୁତା ତୁଲ୍ୟ ବାଷ୍ପାମ୍ବୁ ମୁଞ୍ଚି,
ନେତ୍ରାବ୍ଜ-ଦ୍ୱନ୍ଦ ଦୁଃଖେ ମଳିନବସନର ପ୍ରାନ୍ତରେ ପୋଛି ପୋଛି,
ଚିନ୍ତନ୍ତି ସ୍ୱୀୟ ନାଥ-ପ୍ରତିକୃତିକୁ ସମାଲୋକି ସୁସ୍ନେହତାରେ
ଅହା ! ଯେ ସପ୍ତ ମାସ ବ୍ୟପଗତ କରିଲେ ଶିଂଶୁପାବୃକ୍ଷ ତଳେ ।୨।

ସମ୍ପାତି—ସ୍ୱାମୀ ଯୁବରାଜ ବିଭୀଷଣଙ୍କର ମାଲ୍ୟବନ୍ତ ପ୍ରଭୃତି ମନ୍ତ୍ରି-ମାନଙ୍କର ତଥାଚ କେତେକ ରାକ୍ଷସମାନଙ୍କର ମଧ୍ୟ ଏହି ଅଭିମତ ଯେ ବର୍ତ୍ତମାନ ବାଳୀ ମଧ୍ୟ ନିହତ ହେଲା, ସୀତାଙ୍କର ପ୍ରତ୍ୟର୍ପଣ କଲେ ଶୁଭୋଦର୍କ ହୁଅନ୍ତା ।

ଅନଳା—କିପରି ! ରାବଣବିଜୟୀ ବାଳୀ ମଧ୍ୟ ରାମଙ୍କ ଶରରେ ନିହତ ହେଲା ?

ସମ୍ପାତି—ଆଉ କଣ ?

ଅନଳା—ତେବେ ମହାରାଜ କଣ ଭାବନା କରୁଅଛନ୍ତି ?

ସମ୍ପାତି—ବର୍ତ୍ତମାନ ମନ୍ତ୍ରିମାନଙ୍କ ମଧ୍ୟରେ କେହି ହେଲେ ମହାରାଜଙ୍କୁ ବୁଝାଇବାପାଇଁ ସମର୍ଥ ନୁହନ୍ତି । ଯେହେତୁ

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଶଯ୍ୟା କଳ୍ପି ଣ ବାୟୁଦତ୍ତ ମଧୁବା ଉଦ୍ୟାନ ପୁଷ୍ପୌଘରେ
ମାଳା ରଖି ମୃଣାଳକାନକରରେ ଯା ଦତ୍ତ ବାସଗୃହରେ ।
ଦୈତ୍ୟାଧୀଶ୍ୱର ଶୋଇ ସେହି ଶଯ୍ୟନେ ଲମ୍ବାଇ ତାହା ଗଳେ
ସ୍ୱାନ୍ତେ ଚିନ୍ତୁଣ ଜାନକୀ ଅବିରତେ ଥାଆନ୍ତି ଅନ୍ତଃପୁରେ । ୩ ।

ଅ ତ ଏ ବ ଉ ପ ଗ ତ ମହାବୀରବୈରାନୁବନ୍ଧର ଅନଭିଜ୍ଞାନରୁ ମନ୍ତ୍ରବର୍ଗର ଓ କର୍ତ୍ତବ୍ୟାନୁଷ୍ଠାନବିରହରୁ ଅନଭିଜ୍ଞାତତତ୍ତ୍ୱ ମହାରାଜଙ୍କୁ ବାଳିବିନାଶନ ବୃତ୍ତାନ୍ତ ବାକ୍ୟୋପନ୍ୟାସରେ ଜଣାଇବାପାଇଁ ଅମାତ୍ୟବର୍ଗ ଅସମର୍ଥ ହୋଇ, ତତ୍ପ୍ରଦର୍ଶନାର୍ଥ ରାମଚନ୍ଦ୍ରଙ୍କ ଚରିତରେ ସଙ୍କଳିତ ଗୋଟିଏ ପ୍ରେକ୍ଷଣିକ ଶୁକ୍ରଙ୍କଦ୍ୱାରା ରଚିତ କରାଇଅଛନ୍ତି ।

ଅନଳା—କେଉଁଠାରୁ କେଉଁ ପର୍ଯ୍ୟନ୍ତ ଚରିତସଂବିଧାନ ସେଥିରେ ବର୍ଣ୍ଣିତ ଅଛି ?

ସମ୍ପାତି—ରାମଙ୍କର ସୀତାନ୍ୱେଷଣଠାରୁ ବାଳିବଧ ପର୍ଯ୍ୟନ୍ତ ।

ଅନଳା—ଅଚ୍ଛା ତା ପରେ କଣ ହୋଇଅଛି ?

ସମ୍ପାତି—ସେହି ପ୍ରେକ୍ଷଣିକଟି ଦେଖିବାର ସମ୍ପୂର୍ଣ୍ଣ ଯୋଗ୍ୟ ଅଟେ, ଏହି କଥା ଅନ୍ତଃପୁରଚର-ନିକଟବର୍ତ୍ତୀ ପରିଚର ମୁଖରେ ମହାରାଜଙ୍କ ସମ୍ମୁଖରେ ନିବେଦିତ କରାଗଲା । ଦୈବବଳରୁ ମହାରାଜ ସମ୍ମତିପୂର୍ବକ ଅପ୍ସରାମାନଙ୍କକର୍ତ୍ତୃକ ଅଭିନୀତ ସେହି ପ୍ରେକ୍ଷଣିକ ଦେଖିବା ନିମନ୍ତେ ନର୍ମ

ସଚିବ ମହାପାର୍ଶ୍ୱଙ୍କୁ କେବଳ ସଙ୍ଗେ ଧରି ସମ୍ପ୍ରତି
ସଙ୍ଗୀତଶାଳାରେ ଉପବିଷ୍ଟ ଅଛନ୍ତି ।

ଅନଳା—ତୁମେ ପୁଣି କେଉଁଠାକୁ ଯାଉଅଛ ?

ସମ୍ପାତି—ମନ୍ତ୍ରିମାନଙ୍କ ସହିତ ଉପବିଷ୍ଟ ସ୍ୱାମୀ ଯୁବରାଜ ବିଭୀଷଣ
ଆଜ୍ଞା ଦେଇଅଛନ୍ତି କି ଶୈଳୂଷବେଶଧାରୀ-ଅପ୍ସରାଗଣଙ୍କୁ
ମହାରାଜଙ୍କ ସମ୍ମୁଖରେ ପ୍ରବେଶ କରାଅ ।

ଅନଳା—ଯଦି ଏପରି, ତେବେ ଚିତ୍ରପଟଲିଖିତ ବଲ୍ଲଭ-
ଦର୍ଶନସୁଖବଞ୍ଚିତା ଦୁଃଖିତା ଜାନକୀ ମଧ୍ୟ ନିଜ ପ୍ରିୟ୍ଜନ-
ଭୂମିକାଦ୍ୱାରା ନିରୂପିତ କଥାଗୁଡ଼ିକ ଦେଖି ଚିତ୍ତ-
ବିନୋଦ କରନ୍ତୁ ।

ସମ୍ପାତି—ହଁ, ତାହା କଲେ ଭଲ ହେବ । କିନ୍ତୁ ତିରସ୍କରିଣୀ-
ପ୍ରଭାବରେ ପ୍ରଚ୍ଛନ୍ନ ରହି ଦେଖିବାକୁ ହେବ । ସେଥିପାଇଁ
କିଛି ଉପାୟ ଅଛି କି ?

ଅନଳା—ହଁ, ତାହାର ଭଲ ଉପାୟ କେବଳ ଅଛି ।

ସମ୍ପାତି—କଣ ସେ ଉପାୟ ?

ଅନଳା—ବିଦ୍ୟୁଜ୍ଜିହ୍ୱଙ୍କ ଭାର୍ଯ୍ୟା ମାୟାବତୀ ମୋତେ ଏପରି
ଦୁଇଟି କଙ୍କଣ ଦେଇଅଛନ୍ତି ଯେ ତହିଁରେ ଲାଗିଥିବା
ରତ୍ନର କିରଣରେ ରାକ୍ଷସମାନେ ଅନ୍ଧ ହୋଇପଡ଼ନ୍ତି ।
ସେଥିରୁ ଗୋଟିଏ ଜାନକୀଙ୍କ ହସ୍ତରେ ଅର୍ପିବି ମୋ
ହସ୍ତରେ ପନ୍ଦ ଦୁହେଁ ପ୍ରଚ୍ଛନ୍ନା ରହି ଦେଖିବୁଁ ।

ସମ୍ପାତି—ହଁ, ଏହି କଙ୍କଣଦ୍ୱୟର ଚରିତ୍ର ମୁଁ ଇତିପୂର୍ବରୁ ଶୁଣି-
ଅଛି । ପ୍ରଥମେ ବଶିଷ୍ଠ ସୀତାଙ୍କୁ ତାହା ଦେଇଥିଲେ ।

ତଦନନ୍ତର ହାରଣ ପାରିତୋଷିକରୂପେ ଗ୍ରହଣ କରି ମହାରାଜଙ୍କୁ ଦେଇଥିଲା, ମହାରାଜ ବନ୍ଧୁୀଙ୍କ ହାତରେ ରଖାଇଥିଲେ ।

ଅନଳା—ଅଚ୍ଛା ହେଉ, ତୁମେ ସ୍ୱାମିଙ୍କର ଅଦେଶ ପାଳନ କର । ମୁଁ ମଧ୍ୟ ଦୁଃଖିନୀ ସୀତାଙ୍କୁ ଚିତ୍ତବିନୋଦ ନିମନ୍ତେ ସଙ୍ଗୀତଶାଳାକୁ ନେବ ।

( ଦୁହେଁ ନିଷ୍କ୍ରାନ୍ତ )

ଇତି ବିଷ୍କମ୍ଭ ।



ତଦନନ୍ତର ମହାପାର୍ଶ୍ୱ ସହ ରାବଣର ପ୍ରବେଶ ।

ରାବଣ—ମହାପାର୍ଶ୍ୱ ! କି କାହିଁକି ? ମନ୍ତ୍ରିମାନେ ପ୍ରେକ୍ଷଣିକ ଦେଖିବାପାଇଁ ମୋତେ ସବିଶେଷ ଅନୁରୋଧ କରୁ-ଅଛନ୍ତି ?

ମହାପାର୍ଶ୍ୱ—ଜାନକୀ ନିମିତ୍ତକ ମନ୍ମଥ ତାପରେ ଶମନାର୍ଥମାନ ମହାରାଜଙ୍କର ଚିତ୍ତବିନୋଦନାର୍ଥ—

ରାବଣ—ଅଚ୍ଛା ହେଉ, ତେବେ ଶୈଳୂଷକମାନେ ପ୍ରସ୍ତାବ ଆରମ୍ଭ କରନ୍ତୁ ।



## ଅନ୍ତର୍ନାଟିକା ।

ତଦନନ୍ତର ଶୈଳୂଷକମାନଙ୍କ ମଧ୍ୟରୁ ଜଣେ ପ୍ରବେଶ କରି—

### ଇନ୍ଦ୍ରବଜ୍ରା ବୃତ୍ତ ।

ସଂଯୋଗିସୌଖ୍ୟାର୍ଥ ବିଯୋଗିବୈରୀ
ମାର ପ୍ରବର୍ତ୍ତେ କିଂଶୁକେଷୁଧାରୀ ।
ଯା ବାଣସଂଘାତ ନିବାରଣାର୍ଥ
ଅର୍ଦ୍ଧାଙ୍ଗ ନାରୀଶ୍ୱର ବିଶ୍ୱନାଥ । ୪ ।

### ନାନ୍ଦ୍ୟନ୍ତେ ସୂତ୍ରଧାର ।

ସୂତ୍ରଧାର—

### ବସନ୍ତତିଲକା ବୃତ୍ତ ।

କାଦମ୍ବିନୀକି ଅଧୁନା ଗଗନେ ନ ଦେଖି
ବର୍ଷାତ୍ୟଯେ ବରହିଶେଖର ହାୟ ଦୁଃଖୀ ।
ଦୁଃସହ୍ୟ ଶୋକଭର-ଶୋଷିତ ଦେହ ହୋଇ
ଅସ୍ଥୈର୍ଯ୍ୟରେ ବୁଲଇ କାନନ ମଧ୍ୟ ଦେଇ । ୫ ।

ରାବଣ—ଏ କଣ ! ମୋହ୍ୱାରା ଅପହୃତା ସୀତାର ଅଦର୍ଶନରେ ସେହି ଷଡ଼ିମ୍ବପୋତର ଅବରତ ରଦତ ପର ସୂଚତ ହୁଏ ?

ମହାପାର୍ଶ୍ୱ—ମୁଁ ମଧ ତାହାହିଁ ମନେ କରୁଅଛି ।

(ନେପଥ୍ୟରେ)

ହା ! ବତ୍ସ ଲକ୍ଷ୍ମଣ ! ମୁଁ ସୀତାଙ୍କୁ ଖୋଜ ଖୋଜ ଆସିଲି। ପର୍ଣ୍ଣଶାଳା ଶୂନ୍ୟ ପଡ଼ଅଛି ।

ସୂତ୍ରଧାର—ମହାରାଜ ଲଙ୍କେଶ୍ୱର ! ଦେଖନ୍ତୁ ଲକ୍ଷ୍ମଣର ଭୂମିକା-ଧାରଣୀ ଘୃତାଚୀ ସହ ସୀତାମାର୍ଗଣତତ୍ପର ରାମର ବେଶଧାରଣୀ ପୁଞ୍ଜିକସ୍ଥଳା ରଙ୍ଗସ୍ଥଳକୁ ଆସୁଅଛି ।

ଇତି ପ୍ରସ୍ତାବନା ।



ରାବଣ—ଭଲ ପ୍ରେକ୍ଷଣିକର ଅଭିନୟ ଆରବ୍ଧ ହୋଇଅଛି । ରାମ ସୀତାକୁ ଦେଖି ନ ପାଇ କଣ କରୁଅଛି ? ଏହା ମୋର ମଧ୍ୟ ବୁଝିବାର କଥା ଥିଲା ।

ତଦନନ୍ତର ଏକ ହସ୍ତରେ କଙ୍କଣଧାରଣୀ ସୀତାଙ୍କ ପ୍ରବେଶ ।

ସୀତା—ସଖି ଅନଳେ ! ରାକ୍ଷସେଶ୍ୱର ମୋତେ ତାହାର ଅନ୍ତଃପୁର ବନ ମଧ୍ୟରେ ନରୁଦ୍ଧ ରଖିଅଛି । ମୁଁ ବର୍ତ୍ତମାନ ଅଶରଣା ଓ ଅସହ୍ୟ ଶୋକତପ୍ତା ହୋଇ ପଡ଼ଅଛି । ପ୍ରେକ୍ଷଣିକର ଅଭିନୟ କଣ ଦେଖିବ ? କିନ୍ତୁ ଆର୍ଯ୍ୟପୁତ୍ରଙ୍କର ଚରିତ ବୋଲି ଅଭିଳାଷ କରୁଅଛି ।

ଅନଳାର ପ୍ରବେଶ ।

ଅନଳା—ଅତଏବ ଏହି ସଙ୍ଗୀତଶାଳାର ଭିତରେ ବସି ଦେଖିବା ।

ସୀତା—(ସଭୟେ) ସଖି ! ଦେଇଟି ସେହି ପରସ୍ତ୍ରୀହରଣ-
ମହାପାତକୀ ରାକ୍ଷସେଶ୍ୱର ନିକଟବର୍ତ୍ତୀ ହେଉଅଛନ୍ତି ।

ଅନଳା—ଆଉ, କଣ କରି ପାରିବ ? ଆମ୍ଭେ ଦୁହେଁ ତ
ରାକ୍ଷସାନ୍ତକରଣଖଚିତ କଙ୍କଣ ଧରିଅଛୁଁ । ନିର୍ଭୟରେ
ଏଠାରେ ବସି ଦେଖି ପାରିବୁଁ ।

ସୀତା—ପୂର୍ବେ ଅଯୋଧ୍ୟାକ ତପସ୍ୱିବେଶଧାରୀ ସେହି ରାକ୍ଷସକୁ
ଏହି କଙ୍କଣଦ୍ୱୟ ପାରିତୋଷିକ ଦେଇଥିବାରୁ ବର୍ତ୍ତମାନ
ନିଜର ସର୍ବପ୍ରକାର ଉପକାରକ ହେଲା ।

ଅନଳା—ଅହୋ ! ମହର୍ଷିଙ୍କର ମାହାତ୍ମ୍ୟ ଆଶ୍ଚର୍ଯ୍ୟଜନକ ଯେ !
କଙ୍କଣର ପ୍ରଭାବରୁ ତୁମ୍ଭେ ମୋତେ ଦିଶୁନାହଁ ।
କେବଳ ଅଙ୍ଗ ପର ଗାତ୍ରସ୍ପର୍ଶମାତ୍ରରେ ତୁମକୁ ଜାଣି
ପାରୁଅଛି ।

ସୀତା—ତୁମେ ମଧ ତ ଗୋଟିଏ କଙ୍କଣ ଧରିଅଛ । ଅନ୍ୟ
ରାକ୍ଷସ କେହି ତୁମକୁ ଦେଖି ପାରିବେ ନାହିଁ ।

ଅନଳା—ମୋତେ ମୁଁ ନିଜେ ତ ଦେଖି ପାରୁ ନାହିଁ ।
ଅତଏବ କହ ଯେ "ତୋତେ ମଧ ତୁ ଦେଖି ପାରୁ
ନାହିଁ ।"

ସୀତା—ତେବେ ବେଶଧାରିଣୀ ଅପ୍ସରାମାନଙ୍କ ପ୍ରତି କି ଉପାୟ ?

ଅନଳା—ସେମାନେ ଦେଖନ୍ତୁ, କିଛି ଦୋଷ ନାହିଁ ।

(ତଦନନ୍ତର ଲକ୍ଷ୍ମଣାନୁଗ ରାମଙ୍କର ପ୍ରବେଶ ।)

ରାମ—(ସୋଦ୍ବେଗେ) ହାୟ ! କୁଟୀର ଶୂନ୍ୟ ଦେଖି ମୋର ହୃଦୟ ଶୋକାଗ୍ନିରେ ଦଗ୍ଧ ହୋଇ ଯାଉଅଛି ।

ରାବଣ—(ସାନନ୍ଦେ) ଦଗ୍‌ଧ ହେଉ, ଦଗ୍‌ଧ ହେଉ ।

ସୀତା—ମୋ ପ୍ରତି ଆର୍ଯ୍ୟପୁତ୍ରଙ୍କର ସତେ ଏପରି ଗାଢ ସ୍ନେହାନୁବନ୍ଧ । ମୋ ବିନା ଶୂନ୍ୟ ପର୍ଣ୍ଣଶାଳାକୁ ଦେଖିବାକୁ କିପରି ଅବା ସେ ସମର୍ଥ ହେବେ ?

ଲକ୍ଷ୍ମଣ—ଆର୍ଯ୍ୟ ! ଏପରି ଶୋକ କରନ୍ତୁ ନା, ଆର୍ଯ୍ୟା ଜାନକୀ ଦେବୀ କୌତୁକବଶତଃ ମୟୂରଗଣସଙ୍କୁଳ ନିକୁଞ୍ଜକୁ ଅବା ଯାଇଥିବେ ।

ରାବଣ—(ସହାସ୍ୟେ) ସୀତାଙ୍କୁ ମୁଁ ହରଣ କରିଅଛି; ଏହା ଏ ଜାଣି ପାରି ନାହିଁ ।

ସୀତା—ଏହା ତ ଅସମ୍ଭବ ଅଟେ । କିନ୍ତୁ ବତ୍ସ ଲକ୍ଷ୍ମଣ ଏପରି ସମାଶ୍ୱାସନୋପାୟ କରୁଅଛନ୍ତି ।

ରାମ—ପ୍ରିୟା ମୋ ବିନା ଏକାକିନୀ କଦାପି ଗିରିନିକୁଞ୍ଜକୁ ଯାଏ ନାହିଁ ତ ।

ରାବଣ—ସେପରି ନ ଯିବା ପ୍ରେମାନୁବନ୍ଧରୁ ନୁହେ, କିନ୍ତୁ ଭୟରୁ ଯାଏ ନାହିଁ ।

ସୀତା—ଏ କଥା ଯଥାର୍ଥ । ଆର୍ଯ୍ୟପୁତ୍ର ପାଖରେ ନ ଥିଲେ ମୁଁ କାହିଁରେ ପ୍ରୀତି କରେ ନାହିଁ ।

ଲକ୍ଷ୍ମଣ—ଅଥବା ଦେବାର୍ଚ୍ଚନ ସକାଶେ ପୁଷ୍ପ ଅଣିବାପାଇଁ ପୁନ୍ନାଗବାଟିକାକୁ ଯାଇଥିବେ ସିନା ?

ରାମ—ବତ୍ସ ! ତେବେ ଅନ୍ୱେଷଣ କର ।

ଲକ୍ଷ୍ମଣ—ଆଜ୍ଞା, ଶୋକବ । (ପ୍ରସ୍ଥାନ)

ରାବଣ—ସେ ପୁନ୍ନାଗ ଉଦ୍ୟାନକୁ ଯାଇ ନାହିଁ, ଅଶୋକ ଉଦ୍ୟାନକୁ ଯାଇଅଛି ।

ସୀତା—ସେହି ଦଳ ଏହା ପ୍ରଥମେ ଘଟିଥିଲା । ସଖି ଅନଳେ ! ସେହି ଅବସ୍ଥା ସ୍ମରଣ କରି ମୋର ହୃଦୟ ଶୋକାକୁଳିତ ହେଉଅଛି ।

ଅନୁଷ୍ଟୁପ୍ ବୃତ୍ତ ।

ନ ଦେଖି ଆର୍ଯ୍ୟପୁତ୍ରଙ୍କୁ ବଂଶବାହୁକୁ ଦେଖିଣ
ପ୍ରକମ୍ପିତା ମୁଁ ଏଠାରେ ବାତ୍ୟାରେ କଦଳୀ ଯଥା । ୭ ।

ଅନଳା—ସଖି ସୀତେ ! ତୁମେ ନଷ୍ଟେ ବୀରହୃଦୟା, ଅତଏବ ସେହି ସମୟରେ ସୁସ୍ଥିର ହୋଇ ପାରିଲ ।

ସୀତା—ତାହା ନୁହେ । ଅତି ମହର୍ଷିଙ୍କ ସହଧର୍ମିଣୀ ଅନସୂୟାଙ୍କ ପ୍ରଦତ୍ତ ଦିବ୍ୟ-ବସନାଙ୍ଗରାଗ ପ୍ରଭାବରୁ ମୁଁ ସୁସ୍ଥିର ହୋଇଥିଲି ।

ଅନଳା—ହିଁ, ତାହା ଯଥାର୍ଥ ଅଟେ ।

ରାମ—ହା ପ୍ରେୟସି ସୀତେ ! କେଉଁଠାରେ ଅଛ ?

ସୀତା—(ସୋଦ୍‌ବେଗେ) ହାୟ ! ସେହି ସମୟରେ ଆର୍ଯ୍ୟପୁତ୍ର ଏପରି ସକରୁଣ ରୋଦନ କରିଥିବେ ଯେ !

ରାମ—ହାୟ ହାୟ !

ଉପେନ୍ଦ୍ରବଜ୍ରା ବୃତ୍ତ ।*

ନ ଦେଖି ସୀରଧ୍ୱଜନନ୍ଦନୀଙ୍କୁ
ଅତୀବ ଦୀନ ସ୍ୱର ରମ୍ୟ ଶୋକୁ ।
ଚତୁର୍ଦ୍ଦିଗେ ଚାହିଁଣ କେଳକୀର
ପରଭୃତମେ ପଞ୍ଜରରେ ଅଧୀର । ୮ ।

ସୀତା—(ସକରୁଣେ) ଅନଳେ ! ହାୟ ହାୟ ! ସେହି ସୁବୁଦ୍ଧି ନାମକ ଲୀଲାଶୁକଟି ନଷ୍ଟେ ଅବଲମ୍ୱେ ପ୍ରାଣ ଛାଡ଼ଥିବ ଯେ !

ଅନଳା—ସଖି ! ଶୋକ କରିବା ବୃଥା । ଏପରି ତ ବିଧାତାର ଦୁର୍ବିଧାନ ଘଟିଅଛି, କଣ କରାଯାଇ ପାରେ ?

ରାମ—ଅହୋ ! କେଡ଼େ ଦାରୁଣ କଷ୍ଟ ଯେ !

ମନ୍ଦାକ୍ରାନ୍ତା ବୃତ୍ତ ।

ଏବେ ସେହି ଦ୍ୱିପଶିଶୁ ବୁଲେ ପଣ୍ଡଶାଳୋପକଣ୍ଠେ
ଶୋକବ୍ୟସ୍ତେ ଜନକତନୟାନ୍ୱେଷଣାର୍ଥେ ଅକୁଣ୍ଠେ ।
ସୀତା ଯାର ପ୍ରଚଳିତ କରେ ସଞ୍ଚିତେ ପୁବ ଭଳି
ସ୍ନେହେ ନିତ୍ୟ ଦିଅଇ ହରଷେ ଶଲ୍ଲକୀପଲ୍ଲବାଳି । ୯ ।

ରାବଣ—ଏଥିରେ ସୀତାର କଣ ଅଛି ? ଯଦି ସେ ଇଚ୍ଛା କରେ, ତେବେ ଏପରି ସହସ୍ର ସହସ୍ର ଗଜପୋତ ମୋ ଘରେ ପାଇ ପାରିବ ।

---

* ବଂଶଷ୍ଥ ।

ସୀତା—(ସଦମ୍ଭେ) ବସ୍ତ୍ର କାଲମେଘ ! ମୁଁ ଏହିଠାରେ—
(ଏପର ଅର୍ଦ୍ଧୋକ୍ତିରେ) ଅନଳେ ! ସତେ ଏ ପ୍ରେକ୍ଷଣିକ
କି ?

ଅନଳା—ସଖି ସୀତେ ! ସ୍ନେହାନୁବନ୍ଧନରୁ ସେହି କରପୋତକୁ
ବର୍ତ୍ତମାନ ମଧ୍ୟ ତୁମେ ପ୍ରତ୍ୟକ୍ଷ ମନେ କରୁଅଛ ।

ରାମ—

ଅନୁଷ୍ଟୁପ୍ ବୃତ୍ତ ।

ପ୍ରବେଶି ଉଟଜଦ୍ୱାରେ ଅଶ୍ରି ଗୃହେଁ ପୁନଃପୁନ ।
ବଳାପବର୍ତ୍ତୀ ସୀତାକୁ ଦେଖି ଶୋକଇ ଦୁଃଖରେ । ୧୦ ।

ରାବଣ—ମୁଁ ନକେ ସୀତାକୁ ଅପହର ନେଇଥିବାସ୍ଥଳେ ଏ
ଅବା କଣ କର ପାରବ ?

ସୀତା—ହା ! ବଚନ୍ଦଦର୍ଶନ ସୁବ୍ରବିନାମଧେୟ ବହାରମୟୂର !
ସେ ଦନ ତୁ କ୍ଷୁଧିତ ଥିଲୁ । ତୋତେ ଯାନ
ଭୋଜନ ନ ଦେବା ପୂର୍ବରୁ ମୋତେ ରାକ୍ଷସ ଅପହରଣ
କର ଅଣିଅଛି । ହାୟ ! କେଡ଼େ ଦୁଃଖର କଥା ଯେ !

ଅନୁଷ୍ଟୁପ୍ ବୃତ୍ତ ।

ହତଭାଗ୍ୟାକୁ ଅନ୍ୱେଷି ବହୁବାର ପଦଦ୍ୱୟ
ବସ୍ତାର ମୂଢ ତୋ ଚଞ୍ଚୁ ନଷ୍ଟେ ହୋଇଥିବୁ ମୃତ । ୧୧ ।

( ଏହା କହି ମୂର୍ଚ୍ଛିତ ହେବା )

ଅନଳା—(ସଶଙ୍କେ ଭୁଜ ହାତରେ ପରାମର୍ଶ କର ସ୍ୱଗତ)

ଏ ତ ମୂର୍ଚ୍ଛିତା ହୋଇ ପଡ଼ିଲେ ! (ପ୍ରକାଶତଃ) ସଖି ! ଆଶ୍ୱାସିତା ହୁଅ, ଆଶ୍ୱାସିତା ହୁଅ ।

ସୀତା--(ଆଶ୍ୱାସ ପାଇ) ସଖି ଅନଳେ ! ଏତେ ଦୁଃଖ ସହିବା-ପାଇଁ ବିଧାତା ମୋତେ ଜନ୍ମ ଦେଇଅଛି !

ରାମ--(ସ୍ମରଣପୂର୍ବକ)

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ସ୍ନାନକ୍ଳିନ୍ନ ସୁକେଶପାଶ ସୁଖିବାପାଇଁ ପ୍ରିୟା ଯାବତ
ବକ୍ଷୋଜାଂଶୁକ କର୍ଷି ଲି ପର କରେ ଝାଡ଼େ ସୁଖେ ତାବତ ।
ଏ ଲୀଳାବରହୀ ଅତୀବ କୁତୁକେ କେକା ସମୁଚ୍ଚାରଣ
ଚକ୍ରାକାର ତଦୀୟ ପୁଚ୍ଛ ରଖି ତା ପାଖେ କରେ ନର୍ତ୍ତନ । ୧୨।

ରାବଣ--ଏହା ଉଚିତ ଅଟେ । ଯେହେତୁ—

ଅନୁଷ୍ଟୁପ୍ ବୃତ୍ତ ।

କାଦମ୍ବିନୀ ପ୍ରାୟ ନୀଳା ବେଣୀ ତାହା ବିଲୋକଣ
ଘନାନୁରାଗୀ ବରହୀ ପ୍ରାୟ ମୋ ଚିତ୍ତ ନାଚଇ । ୧୩ ।

ସୀତା--ଅନଳେ ! ଏହି ଚିତ୍ରଦର୍ଶନର ତାଦୃଶ ବିଳାସମାନ ଆର୍ଯ୍ୟପୁତ୍ର ସ୍ମରଣ କରିଥିଲେ । ( ଏହା କହି ଲୋତକ ବୁହାଇବା)

ଅନଳା--ଏବେ ସେ ତ କଥାବଶେଷ ହେଲଣି; ତାହାର ବିଳାସମାନଙ୍କରେ ଆସକ୍ତି ଜନ୍ମାଇବାରେ କିଛି ପ୍ରୟୋଜନ ନାହିଁ ।

ରାମ--ହା ସୁକେଶି ପ୍ରେୟସି ! (ମୋହିତ ହେବା)

ରାବଣ--(ସନ୍ଦେହୋତ୍ସୁକ୍ୟରେ) ଏହାର ମୋହ ଅଶାନ୍ତ ହେଉ । ତାହାହେଲେ ଜାନକୀ ଏହା ପ୍ରତି ହତାଶା ହୋଇ ମୋ ଶଯ୍ୟାରେ ଅରୋହଣ କରିବ ।

ସୀତା--ଅନଳେ ! ମୋ ନିମିତ୍ତ ଆର୍ଯ୍ୟପୁତ୍ର ଏପରି ଦୁରବସ୍ଥିତ ହେଲେ । ମୁଁ ପୁଣି ଏପରି କୁଳଶିହୃଦୟା ରହିଅଛି ।

ଅନଳା--ସଖି ସୀତେ ! ତୁମେ ତ ମଧ୍ୟ ତାହାଙ୍କ ନିମିତ୍ତ କ୍ଷଣେ କ୍ଷଣେ ମୋହସମୁଦ୍ରରେ ବୁଡ଼ିଯାଇ ଅତି କଷ୍ଟରେ ଉଦ୍ଧୃତ ହେଉଅଛ । ତେବେ କୁଳଶିହୃଦୟା କପରି ?

ଲକ୍ଷ୍ମଣ--(ସମୀପକୁ ଯାଇ) ଆର୍ଯ୍ୟ ! ଟିକିଏ ଆଶ୍ୱାସିତ ହୁଅ, ଧୈର୍ଯ୍ୟ ଧର ।

ରାବଣ--ଏହି ନଷ୍ଟାତ୍ମା ଲକ୍ଷ୍ମଣ ସମାଶ୍ୱାସନରେ ରାମକୁ ଉଜ୍ଜୀବିତ କରୁଅଛି ।

ସୀତା—ସୌଭାଗ୍ୟବଳରୁ ଲକ୍ଷ୍ମଣଙ୍କ ସମାଶ୍ୱାସନରେ ସିନା ଅର୍ଯ୍ୟ-ପୁତ୍ର ଆଶ୍ୱାସିତ ହେଲେ ।

ରାମ—(ଆଶ୍ୱାସିତ ହୋଇ) ବତ୍ସ ! ପୁନାଗ ଉଦ୍ୟାନରେ ଜାନକୀକୁ ଦେଖିଲ ?

ଲକ୍ଷ୍ମଣ—(ସ୍ୱଗତ) ହାୟ ! କଣ କହିବି ? କପରି ଅବା କହିବି ? ଅଉ କି କରିବି ? ଏପରି ଜଣାଇବି । (ପ୍ରକାଶତଃ) ଆର୍ଯ୍ୟ ଶୁଣନ୍ତୁ ।

ସ୍ରଗ୍ଧରା ବୃତ୍ତ ।

ଆର୍ଯ୍ୟା ସୀତାଙ୍କୁ ଅନ୍ୱେଷିଲି ଗମି ମୁହିଁ ପୁନ୍ନାଗବନ୍ୟା ତ ଶୂନ୍ୟା
ଦେଖିଲି ଅନ୍ୱେଷିତା ସୁଶ୍ରୁତ ମଧୁକର ଝଙ୍କାର-ମାକନ୍ଦ ବନ୍ୟା ।
ଉନ୍ମଦ୍ୟଚ୍ଚକ୍ରବାକପ୍ରକର-ଚରଣବିନ୍ୟାସ ଯା ସୈକତାରେ
ସେହି ପ୍ରୋତ୍ଫୁଲ୍ଲପଦ୍ମ-ଷିତଧର ସରତେ ଖୋଜିଲି ଷିପ୍ରତାରେ ।

ରାମ—(ସୋଦ୍ୱେଗେ) କଣ ! ସୀତା କୁଆପି ଦିଶିଲେ ନାହିଁ ?
(ଦୀର୍ଘ ନିଃଶ୍ୱାସ ମୂର୍ଚ୍ଛା)

ମାଳିନୀ ବୃତ୍ତ ।

ଦଳଇ ହୃଦୟ କାନ୍ତେ ! ହାୟ ଦୁଃସହ୍ୟ ଶୋକ
ଦଳନ କରଇ ଗାଢ଼େ ମୋର ହୃଦ୍‌ଗ୍ରନ୍ଥିଯୋକ ।
ଶୁଣି କରି ତବ ବାର୍ତ୍ତା ଧ୍ୱସ୍ତ ହେଲା ବିବେକ
କି କରିବ ମୁହିଁ ଅହା ! ଘୋର ଏ ଦୁର୍ବିପାକ । ୧୯ ।

ରାବଣ—ଉତ୍ତମ ସ୍ତ୍ରୀର ବିଯୋଗରେ ଯାହା କର୍ତ୍ତବ୍ୟ, ତଥାଚ ଲଙ୍କେଶ୍ୱରଙ୍କର ଯାହା କି ପ୍ରିୟ—

ସୀତା—ସଖି ଅନଳେ ! ମୋର ଅଦର୍ଶନରୁ ପ୍ରାଣପ୍ରିୟଙ୍କର ଦଶାପରିପାକ ଏପରି, ନାଥଙ୍କର ଅସାନ୍ନିଧ୍ୟରୁ ମୁଁ ପୁଣି ରାକ୍ଷସଦ୍ୱାରା ଅପହୃତା ହୋଇ ନାଥଦର୍ଶନ ବିନା ଏପରି ଦୁରବସ୍ଥାରେ ପଡ଼ିଅଛି; ଦେଖ ସଖି ! ଆମ୍ଭ ଦୁହିଙ୍କର ଉପରେ ଦାରୁଣ ନିୟତି ଆସି ଉପସ୍ଥିତ ହୋଇଅଛି (ଏହା କହି ମୂର୍ଚ୍ଛିତା)

ଅନଳା—ସଖି ! ଧୈର୍ଯ୍ୟ ଧର, ଅଶ୍ୱସ୍ତ ହୁଅ, ଅଛି ଅଳ୍ପ କାଳ ମଧ୍ୟରେ ବିଭୁବନୈକବୀର ସେହି ରାମଚନ୍ଦ୍ରଙ୍କୁ ପାଇବ ।

ସୀତା—( ଆଶ୍ୱାସିତା ହୋଇ ) ଅନଳେ ! ଏତେକାଳ ପ୍ରାଣନାଥ ପ୍ରାଣ ଧାରଣ କରି ପାରିବେ ? ଏହି ସନ୍ଦେହ ହୃଦୟ ବିଦାରୁଅଛି ।

ଅନଳା—ସମସ୍ତ କଥା ଏହି ପ୍ରେକ୍ଷଣିକରୁ ଜଣାଯିବ ।

ଲକ୍ଷ୍ମଣ—ଆର୍ଯ୍ୟ ! ଧୈର୍ଯ୍ୟ ଧର, ବନର ଅନ୍ୟ ପ୍ରଦେଶମାନ ଦେଖିବା ।

ରାମ—(ପୁରତଃ ବଲୋକ)

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ବାୟୁ ଗ୍ରସ୍ତ ସୁଗନ୍ଧଯୁକ୍ତ କୁସୁମାସାରେ କରେ ବୃଷ୍ଟିକ ।
କେଳୀ-ସଖିର ତୁଲ୍ୟ ଏହି ବକୁଳ ପ୍ରାତେ ଦାଏ ତୁଷ୍ଟିକ ।

ରାବଣ—ଏଥିଦ୍ୱାରା କଣ ହୋଇ ପାରେ ?

ସୀତା—ଆର୍ଯ୍ୟପୁତ୍ରଙ୍କର ଏହି ବଚନ ପୂର୍ବବୃତ୍ତାନ୍ତକୁ ମନେ ପକାଇ ମୋର ମର୍ମଭେଦ କରୁଅଛି ।

ରାମ—

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ସୌହାର୍ଦ୍ଦେ ଅଧୁନା ପଚ୍ଚାରିବ ଭଲେ କାନ୍ତାର ସନ୍ଦେଶକୁ ।
ସୀତା କାହିଁ ଗଲା ? ତୁ ଦେଖିଛୁ ପରି ସଂଭାଷ ତା ଭାଷକୁ ।୧୬।

ରାବଣ—(ସକ୍ରୋଧେ) ରେ ରେ ବୃକ୍ଷାଧମ ! ଯଦ୍ୟପି ତୁ ସୀତାର

ସନ୍ଦେଶ କହନ୍ତୁ, ତେବେ ତୋତେ ଏହି ଚନ୍ଦ୍ରହାସରେ ଛେଦନ କରିବି ।

ମହାପାର୍ଶ୍ୱ—(ସ୍ୱଗତ)

ଅନୁଷ୍ଟୁପ୍ ବୃତ୍ତ ।

ଜାନକୀ ସ୍ନେହରେ ବଦ୍ଧ ଉନ୍ମତ୍ତ ପରି ରାବଣ ।
ବଂଶାକ୍ଷ ମଧ ତଦ୍ରୂପ ତାଠାରେ କରି କାମନା । ୧୭ ।

(ପ୍ରକାଶତଃ) ମହାରାଜ ! ବୃକ୍ଷ ତ ଅଚେତନ, ସୁତରାଂ ଏହା ପ୍ରେଷଣିକ ଅଟେ ।

ରାବଣ—ମଦନବୃଦ୍ଧିବଶରୁ ମୋର ସେହି ବଚାର ନାହିଁ ।

ସୀତା—ଆର୍ଯ୍ୟପୁତ୍ର ଉନ୍ମତ୍ତ ପରି ଅଚେତନ ବୃକ୍ଷକୁ ମଧ ପଚାରୁଅଛନ୍ତି । ଏସ୍ଥଳେ ମୋର ସ୍ନେହ କେବଳ ନାଥଙ୍କ-ଠାରେ ଅପରାଧ କରୁଅଛି ।

ରାମ—ଏହି ମୀନ କଚ୍ଛ କହୁ ନାହିଁ ତ, ଆଚ୍ଛା ଦେଖନ୍ତି, ସ୍ମୃତି କଣ ଅଛି, ଏହି ଶିଖିବରକୁ ପଚାରିବି—ରେ ଶିଖିଧର !

ଶିଖରିଣୀ ବୃତ୍ତ ।

ପ୍ରିୟା ସୀତା କେଉଁସ୍ଥଳକୁ ଗମିଲା ଭାଷ ଅଧୁନା
ଶରେ ଦୂର୍ଣ୍ଣ ପ୍ରାଣ୍ୟେକରିବଟି ତତେ ମୌନ ହୁଅ ନା ।
ଚରତ୍କୋଧୀ ଚଣ୍ଡାଶୁଗ ଅଟଇ ତା ବେଗ ବଫଳେ
ଦିଗନ୍ତେ ତୋତେ ସେ କରୁ ପତିତ ଉତ୍କ୍ଷେପଣବଳେ ।

ରାବଣ—

ଅନୁଷ୍ଟୁପ୍ ବୃତ୍ତ ।

ଜାଣି ଏ ଗିରି ଅପେ ମୋ ବଜ୍ର ତୁଲ୍ୟ ଚପେଟିକା ।
କେହ୍ନେ ବା ଜାନକୀ ବାର୍ତ୍ତା–କଥନେ ହେବ ସାହସୀ ।୧୯।

ରାମ—କଣ ! ଏହାର ଟିକଏ ଚଳନ ମଧ ଦେଖାଯାଏ ନାହିଁ !
ହେଉ ତେବେ ଗିରନଦୀଙ୍କ ପଚ୍ଚରିବ ।

ସ୍ରଗ୍ଧରା ବୃତ୍ତ ।

ଏ ଶୈଳୋତ୍ତୁଙ୍ଗଦେଶେ ତବ ବସତି ସଦା ମୋଦନ ଦ୍ରାହନ ରେ !
ମୋ ଉତ୍ତୁଙ୍ଗପ୍ରିୟା ତୋ ନୟନପଥଗତା ଜାନକୀ ହୋଇଲ ରେ ?
ତୋ ପ୍ରାୟେ ଯେ ପ୍ରଫୁଲ୍ଲାମଳକମଳଦୃଶା ବୋଦ୍ଧ୍ୟୁଗ୍ମୋତ୍ତରମା ।
ବେଣୀ ଯା ବମ୍ଭରାଳୀ ଅଛଇଟି ସୁଭଗା କାନ୍ତସନ୍ଦୋହଧାମା । ୨୦ ।

ରାବଣ—ମୋର ଭୟରୁ ଏ ମଧ କଛି କହ ପାରବ ନାହିଁ ।

ରାମ—ଓ ! ଜଡ଼ରୂପିଣୀ ତରଙ୍ଗିଣୀ କଛି କହୁ ନାହିଁ ।

ସୀତା—ମୋତେ ରାକ୍ଷସ ଅପହରଣ କରଅଛି, ଏହା ଆର୍ଯ୍ୟପୁତ୍ରଙ୍କୁ
　　କିଏ କହଦେବ ? ନାଥ ଏହା ଶୁଣି ପାରିଲେ ସିନା
　　ମୋତେ ଶୋକସାଗରରୁ ଉଦ୍ଧାର କରବେ ?

ଅନଳା—ସଖି ! ଅଗକୁ ଜଣାଯିବ ।

ଲକ୍ଷ୍ମଣ—(ସ୍ୱଗତ) ହାୟ ! ଆର୍ଯ୍ୟ ଉନ୍ମାଦଗ୍ରସ୍ତ ପର ହେଲେ !
　　ଅହା ! ଦୈବର ଦୁର୍ବିଧାନ ! ( ପ୍ରକାଶତଃ ) ଆର୍ଯ୍ୟ !
　　ଏ କଣ ? ଆପଣ ସହଜ ଧୈର୍ଯ୍ୟ ଧର ହୃଦୟ ସ୍ଥିର

କରନ୍ତୁ । ଏଇ ଦେଖନ୍ତୁ, ଦକ୍ଷିଣଦିଗରେ ଦୃଷ୍ଟିପାତ
କରନ୍ତୁ ।

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଆର୍ଯ୍ୟା ଶ୍ରୀମିଥିଳାଧିରାଜତନୟା ନିତ୍ୟ ସ୍ୱହସ୍ତେ ବୃତ
ସସ୍ନେହେ ତୃଣପୂଳ ଦେଇ କରଲେ ଯାହାଙ୍କୁ ସଂବର୍ଦ୍ଧିତ ।
ସେ ଏଣାର୍ଭକବୃନ୍ଦ ସାଶ୍ରୁନୟନେ ଯାମ୍ୟାଟବୀଦେଶକୁ
ଦୁଃଖେ ଚୂର୍ଣ୍ଣ କହନ୍ତି ଆମ୍ଭକୁ ଅବା ସୀତାଙ୍କ ସନ୍ଦେଶକୁ । ୨୧ ।

ରାବଣ—(ସକୋପେ) ଏହି ମୃଗଶାବକମାନଙ୍କୁ ଏକ୍ଷଣି ବିନାଶ
କରିବ । (ଖଡ୍ଗ ଉତ୍ତୋଳନ କରିବା)

ମହାପାର୍ଶ୍ୱ—ମହାରାଜ ! ଏ ତ ପ୍ରେକ୍ଷଣିକ, ବୃଥା କ୍ରୋଧ କରନ୍ତୁ
ନା ।

ସୀତା—(କୌତୁକ ମୁଗ୍ଧସସ୍ନେହେ) ଅହୋ ପୂର୍ବ ଭୁକ୍ତ ମୃଗ-
ଶାବକମାନେ କେବଳ ପ୍ରଥମେ ଆର୍ଯ୍ୟପୁତ୍ରଙ୍କୁ ମୋର
ବୃତ୍ତାନ୍ତ ନିବେଦନ କରିଅଛନ୍ତି ।

ରାମ—ବତ୍ସ ! ତେବେ ଦକ୍ଷିଣଦିଗରେ ଅନ୍ୱେଷଣ କରିବା ।
(ଏହା କହି ଚାଲିଯିବା) ବତ୍ସ ଲକ୍ଷ୍ମଣ ! ଦେଖ ଦେଖ ।

ମନ୍ଦାକ୍ରାନ୍ତା ବୃତ୍ତ ।

କାନ୍ତା ସୀତାରୁଚିର ଚିକୁରେ ଯେଉଁ ଜାତ ପ୍ରସୂନ
ମାଳା ଆଗେ ବିନିହିତ ଥିଲା ସେ ପରି ଏହିମାନ ।
ଗନ୍ଧାକୃଷ୍ଟ-ଭ୍ରମରନିଚୟା ହୋଇଲା ଦୃଷ୍ଟ ଅଦ୍ୟ
କ୍ଷୌଣୀପୃଷ୍ଠେ ପଡିରହିଛି ଅମ୍ଳାନଭାବେ ପଦ୍ୟ । ୨୨ ।

ଲକ୍ଷ୍ମଣ—ବୋଧ ହୁଏ, ଜାନକୀଦେବୀଙ୍କୁ କେହି ବଳାତ୍କାରେ ନେଇ ଯାଉଥିବା ସମୟରେ ତାହାଙ୍କ କବରୀଭାରରୁ ଏଇଟି ଖସି ପଡ଼ିଥିବ ।

ରାବଣ—ହାୟ ହାୟ ! ସେତେବେଳେ ମୋର ବିଭ୍ରାନ୍ତିବଶରୁ ଏପରି ପ୍ରମାଦ ଘଟିଥିଲା ।

ସୀତା—(ଅଣା ସହିତ) ସେତେବେଳେ ରାକ୍ଷସ ଅପହରଣ କରି ଆଣିବା ମାର୍ଗରେ ମାଳାଟି ପଡ଼ିଯାଇଥିଲା ।

ରାମ—(କେତେକ ପାଦ ଚାଲିଯାଇ) ବତ୍ସ ଲକ୍ଷ୍ମଣ ! ଏ କଣ ? ଭୂପୃଷ୍ଠରେ ନିପତିତ ଏହି ମୃତ ସାରଥି କାହାର ? କ୍ଳାନ୍ତାଗ୍ରଚଞ୍ଚୁ ପିଶାଚବଦନ ରଥବାହକ ଏହି ଗର୍ଦ୍ଦଭମାନେ ଅବା କାହାର ? ଅପିଚ ଏ କାହାର ? ଭଗ୍ନମନୋରଥ ପ୍ରାୟ ବିକଳାଙ୍ଗ ମନୋହର ରଥ, ବିପାଟିତ ମୁକୁଟ ଓ ଦ୍ୱିଖଣ୍ଡୀକୃତ ଧନୁଃଖଣ୍ଡ ପଡ଼ି ରହିଅଛି । ଏଇ ଦେଖ ଦେଖ, କାହାର ପିନଦ୍ଧକାଞ୍ଚନାଙ୍ଗଦ ପୀବରତର ଦଶଗୋଟି ଭୁଜ ବିଦାରିତ ହୋଇ ସୁଦ୍ଧା ଭୂମିକି ଆଲିଙ୍ଗନ କରି ପଡ଼ି ରହିଅଛି ।

ଲକ୍ଷ୍ମଣ—ଅହୋ ଆଶ୍ଚର୍ଯ୍ୟ ! ଆର୍ଯ୍ୟ ! ମୁଁ ମନେ କରେଁ, ସୀତାଙ୍କ ନିମିତ୍ତ ଦୁଇଜଣ ବୀରପୁରୁଷ ଏ ସ୍ଥଳରେ ଯୁଦ୍ଧ କରିଥିବେ ।

ରାବଣ—(ସକ୍ରୋଧେ)

ଅନୁଷ୍ଟୁପ୍ ବୃତ୍ତ ।

ଜାନକୀହରଣେ ମୋର କଲା ଯେ ପ୍ରତ୍ୟବାୟକୁ ।
ସେ ଜଟାୟୁ ଦୁରାତ୍ମାକୁ ମୃତକଲ୍ପ ମୁଁ କଲିଲି ।୨୭।

ସୀତା—ହା ତାତ ଜଟାୟୁ ପକ୍ଷିରାଜ ! ମୁଁ କେବଳ ମନ୍ଦଭାଗିନୀ । ମୋର ରକ୍ଷା କରିବାକୁ ଯାଇ ଆପଣ ମଧ୍ୟ ଧର୍ମର ଫଳ ପାଇଲେ ନାହିଁ ।

ଅନଳା—"ରାବଣ ଅତି ବଳବାନ୍" ଏହି ବୀରସମ୍ବାଦ ତ୍ରିଭୁବନରେ ଶୁଣା ଯାଉଅଛି । ସେଥିକି କି କରି ଯାଇ ପାରେ ?

ରାମ—ବତ୍ସ ଲକ୍ଷଣ ! ଧନୁ ଧନୁ—

(ଅତିଦ୍ରୁତଗତିରେ ଚାଲିଯିବା)

ଲକ୍ଷ୍ମଣ—କି କାହିଁକି ? ଆର୍ଯ୍ୟ ଅନବସରରେ ଧନୁ ମାଗୁଅଛନ୍ତି ?

(ଏହା ଭାବି ଅନୁଗମନ କରିବା)

ମହାପାର୍ଶ୍ୱ—

ବସନ୍ତତିଳକ ବୃତ୍ତ ।

ହୁଙ୍କାରଗର୍ବ-ଗଳ ସମ୍ପ୍ରତି ରାମଚନ୍ଦ୍ର,
ତା ବଜ୍ର ଖରକର ଦଶେ ଭ୍ରୂକୁଟୀପ୍ରସାନ୍ତ ।
ସଦ୍ୟ ବିଲୋକକୁ କଲି ପରି ଦୃପ୍ତପାତ
ସନ୍ଧବ ହୋଇଅଛି ହାୟ ! କି ଶକ୍ତିମନ୍ତ ! ୨୩।

ରାବଣ—( ସସମ୍ଭ୍ରମେ ) ତେବେ ଏହାର ସମ୍ମୁଖରୁ ଅନ୍ତର ହେବା ଉଚିତ । ଏହି ପାଳହୀନ ସଙ୍ଗେ ଯୁଦ୍ଧ କଲେ ଅବା କି କୀର୍ତ୍ତି ହେବ ? (ଏହା କହି ଉଠିବାର ଅଭିନୟ)

ମହାପାର୍ଶ୍ୱ—ମହାରାଜ ! ଏ ତ ପ୍ରେକ୍ଷଣିକ, ବସିବା ହୁଅନ୍ତୁ ।

ସୀତା—ଏହାର କଥାରେ ଏଡ଼େ କ୍ରୋଧ କାହିଁକି ?

ରାମ—

ମନ୍ଦାକ୍ରାନ୍ତା ବୃତ୍ତ ।

ଶୈଳପ୍ରାନ୍ତେ ଗୁରୁତର ବଣେ ଶ୍ୱାସି ସେ ଭୂମ୍ଯ ଭୂମ୍ଯ,
ଧୀରେ ଧୀରେ ନୟନକୁ ମୁଦେ ହୋଇ ରକ୍ତାକ୍ତ-କାୟ ।
ବୈଦେହୀକୁ ଗ୍ରସନ କରନ୍ତି ହାତ ଯେପରେ ମୃଣାଳ,
ମାର୍ଗେ ଏବେ ଅଛୁ ଦନୁଜ ଏ ପକ୍ଷିରୂପୀ କରାଳ । ୨୫ ।

ଅତଏବ ଏହାକୁ ଏକ୍ଷଣି ନହତ କରବ ।

ରାବଣ—(ସରୋଷେ)

ଅନୁଷ୍ଟୁପ୍ ବୃତ୍ତ ।

ମୋ ଚନ୍ଦ୍ରବଳ୍ଲଭା ସୀତା ଭକ୍ଷିଲା କେଉଁ ରାକ୍ଷସ !
କାହା କଣ୍ଠେ ହେବ ପାତ ଏ ଭଯ୍ଯଙ୍କର ସାୟକ ? ।୨୬।

ମହାପାର୍ଶ୍ୱ—ମହାରାଜ ! ଆପଣ କଣ ପାସୋର ହେଲେ ? ସୀତାକୁ ଅଶୋକବନକାରେ ନରୋଧ କର ରଖିଅଛନ୍ତ ତ ?

ସୀତା—ମୋତେ କୌଣସି ରାକ୍ଷସ ଖାଇ ନାହିଁ । ଆର୍ଯ୍ୟ-ପୁତ୍ରଙ୍କର ବରହଜାତ ଦୁଃସହ ଶୋକ ଅନୁଭବ କରିବାପାଇଁ ଅଦ୍ୟାପି ମୁଁ ଜୀଇଁ ରହିଅଛୁ ।

ଲକ୍ଷ୍ମଣ—(ପୃଷ୍ଠେ ଭାଗକୁ ନରୀକ୍ଷଣ କରି) ଆର୍ଯ୍ୟ ! କ୍ରୋଧପରବଶ ହେବା ବୃଥା । ଏ ତ ତାତ ଜଟାୟୁଙ୍କ ପର ଦଶୁଅଛନ୍ତ ।

ନେପଥ୍ୟରେ—ବତ୍ସ ରାମଭଦ୍ର !

ରଥୋଦ୍ଧତ ବୃତ୍ତ ।

ରାକ୍ଷସାପହୃତ-ଦୁଃଖପୀଡ଼ିତା
ଜାନକୀକୁ କରଯାଇ ମୋଚିତା ।
ହେଲ ରାକ୍ଷସକରେ ବିନାଶିତ,
ହା ! ଜଟାୟୁ ମୁଁ ନ ମାର କଥିତ ।୨୭ ।

ରାବଣ—(ଶୁଣି) ଏହା କପର ! ସେହ ରାଜପୁତ୍ର ଦୁହିଙ୍କର ଆଗମନ ପର୍ଯ୍ୟନ୍ତ ବୃଦ୍ଧ ଗୃଧ୍ର ପ୍ରାଣ ଧରିଥିଲା ! ଏ ତ ଗତଜୀବିତ ହେଲାଣି, ସେ ରାଜପୁତ୍ର ଦୁହିଙ୍କୁ ଅଉ ମୋର ବାର୍ତ୍ତା କହ ପାରିବ ନାହିଁ, ଏହା ମୁଁ ବିଶ୍ୱସ୍ତ ହୃଦୟରେ ଭାବ ବାହାର ଆସିଲ ।

ସୀତା—(ସାନନ୍ଦେ) ତାତ ଜଟାୟୁ ରାକ୍ଷସନାଥଦ୍ୱାରା ନିହତ ହୋଇ ସୁଦ୍ଧା ପ୍ରାଣ ଧାରଣ କରି ସାନୁଜ ଅର୍ଯ୍ୟପୁତ୍ରଙ୍କୁ ରାକ୍ଷସକୃତ ମୋର ଅପହରଣ ବୃତ୍ତାନ୍ତ କହୁଅଛନ୍ତି । (ବିଚାର କରି) ତେବେ ଅର୍ଯ୍ୟପୁତ୍ର ଏହି ଦୁଃଖିନୀର ଉଦ୍ଧାରରେ କେତେ ବିଳମ୍ବ କରୁଅଛନ୍ତି କାହିଁକି ?

ଅନଳା—ସବୁ ପ୍ରେକ୍ଷଣିକରୁ ଜଣାଯିବ ।

ଲକ୍ଷ୍ମଣ—(ଶୀଘ୍ର ସମୀପକୁ ଯାଇ) ହା ତାତ ପକ୍ଷିରାଜ ! ଆପଣ ମଧ୍ୟ ଏହି ଅବସ୍ଥା ପାଇଲେ !

ରାମ—ଅର୍ଯ୍ୟ ! ଯଦି ଆପଣଙ୍କର କହିବାର ଶକ୍ତି ଥାଏ, ଶୀଘ୍ର ଶୀଘ୍ର କହନ୍ତୁ । ସେହି ରାକ୍ଷସ କାହାର ପୁତ୍ର ? ତାହାର ନାମ କଣ ? ପୁଣି ତାହାର ନିବାସ କେଉଁଠାରେ ?

ତାହାର ବଳ କେତେ ? କି ହେତୁରୁ ସୀତାଙ୍କୁ ଅପ-
ହରଣ କରିଅଛୁ ?

ରାବଣ--(ସଧୈର୍ଯ୍ୟ) ଛାର ଏହି ଶକୁନାଧମ ମହାସ୍ୱ ବୃତ୍ତାନ୍ତ-
ମାନ ଏହାକୁ କହୁ । ତଥାପି କଣ ଏଥିରେ ଲଙ୍କା-
ନାଥଙ୍କର ଭୟ ହେବ ?

ସୀତା--(ସୋଲ୍ଲାସେ) ଏ ତ ରାବଣବାଣରେ ବଦଳିତଶରୀର
ହୋଇ ପଡ଼ିଅଛନ୍ତି; କେ ଜାଣେ କଣ ଅବା କହିବେ,
ଏହା ଭାବି ହୃଦୟ କ୍ଷୀଣ ହେଉଅଛି ।

ନେପଥ୍ୟରେ—ବତ୍ସ ରାମଭଦ୍ର !

ମୋର ଚିତ୍ତ ବିମୋହିତ ହୋଇ ଯାଉଅଛି, ବଚନ
ସ୍ଖଳିତ ହୋଇ ପଡ଼ୁଅଛି, ଶୁଣିବାର ଶକ୍ତି ନାହିଁ ।

ରାବଣ—ଏହା ମୋର ଆନନ୍ଦର ବିଷୟ ।

ସୀତା—(ସକରୁଣେ) ତାତ ପକ୍ଷିରାଜ ! ଆପଣ ମୋ ଲାଗି ଏହି
ଦୁର୍ଦ୍ଦଶାକୁ ପାଇଲେ ।

ରାମ—ତାତ ! କଷ୍ଟେ ଧୈର୍ଯ୍ୟ ଧର, ଉପରି ଯାହା ବକ୍ତବ୍ୟ
ଅଛି, ତାହା କହି ଦିଅନ୍ତୁ ।

ପୁଣି ନେପଥ୍ୟରେ—

କଣ କହିବ ! ସେହି ରାକ୍ଷସ ସ୍ୱୀୟ ମାୟାବିତା ବିତାନରେ
ତୁମ୍ଭ ପ୍ରିୟକାନ୍ତାକୁ ନେଇଅଛି ।

ରାବଣ—କ୍ଷାତ୍ରବଳନାଶରୋଷାମର୍ଷଣ ରାବଣ ବିନା ନିର୍ଯ୍ୟାତନରେ
କଣ ଛାଡ଼ି ଦିଅନ୍ତେ ?

ସୀତା—ହା ଆର୍ଯ୍ୟପୁତ୍ର ! ହା ବତ୍ସ ଲକ୍ଷ୍ମଣ ! ଜାଣି ପାରିଲ ନାହିଁ ଯେ ! ଏହି ଅନାଥା ସୀତାକୁ ରାକ୍ଷସ—( ଏହି ଅର୍ଦ୍ଧୋକ୍ତିରେ) ଅନଳେ ! ମୁଁ ଏହାକୁ ଦେଖି ଉଦ୍ଭ୍ରାନ୍ତ ଚିତ୍ତରେ ଏବେ ମଧ୍ୟ ପ୍ରଥମ ପରିଚିତ-ବଚନମାନ କହିଦେଉଅଛି ।

ଅନଳା—ହଁ, ଅବସ୍ଥା ସେପରି କରୁଅଛି ।

ରାମ—ରାକ୍ଷସାଧମ ରାମର ସମକ୍ଷରେ ଯଦି ଅପହରଣସାହସୀ ହୁଅନ୍ତା——

ଲକ୍ଷ୍ମଣ—(ସକ୍ରୋଧ ଗର୍ବେ)

ମନ୍ଦାକ୍ରାନ୍ତା ବୃତ୍ତ ।

ଦୈତ୍ୟଦ୍ୱାରା ଜନକତନୟା ଚୌରିତା ହୋଇ ମାତ୍ର
ଏବେ ଗୃଧ୍ରାଧିପତି କହିଲେ ହୋଇ ସଚ୍ଛିନ୍ନଗାତ୍ର ।
ଚୋର ପ୍ରାପ୍ୟେ ଯଦି ନ ଲଭି ସେ ହୋଇଥାନ୍ତା କହାର୍ଯ୍ୟ
ନଷ୍ଟେ ତାହା ଶିରକରତଳେ ହୋନ୍ତି ଶସ୍ତ୍ରେ କଦାପି ।୨୮।

ରାବଣ—(ସସ୍ମିତେ)

ଅନୁଷ୍ଟୁପ୍ ବୃତ୍ତ ।

ଶତ୍ରୁମାନଙ୍କ ପୀଡ଼ାରେ ସ୍ୱକୀୟ ଇଷ୍ଟ ସାଧନେ ।
କର୍ତ୍ତବ୍ୟ କର୍ମ ଏପ୍ରାୟ ସୁଧୀଜନ କରେ ସଦା ।୨୯।

ରାମ—ତାତ ! ତା ଉତ୍ତରୁ କହନ୍ତୁ ।

ପୁଣି ନେପଥ୍ୟରେ—

ରାକ୍ଷସାଧମ ରାବଣନାମା ମୁହୂର୍ତ୍ତରେ ଅପହରିଅଛି; ତୁମ୍ଭେ ଅବଶ୍ୟ ଅପହୃତ ଧନ ପ୍ରାପ୍ତ ହେବ ।

ରାବଣ—( ସ୍ୱଗତରେ ) ମୁଁ ଅଭିଜ୍ଞ ହୋଇ ସୁଦ୍ଧା ତେତେବେଳେ ଏହା ଜାଣି ପାରିଲି ନାହିଁ । ଅଛ ହେଉ, ଦୈବକୃତକୁ ମଧ୍ୟ ଯଥାସମୟରେ ପୁରୁଷକାରରେ ଅନୁକୂଳ କରିବ ।

ସୀତା—ମୁଁ ତ ମନ୍ଦଭାଗିନୀ, ମୋ ବିଷୟରେ ଏହା ସମ୍ଭବ ହୋଇ ନ ପାରେ ପରା ?

ଲକ୍ଷ୍ମଣ—ସେହି ରାକ୍ଷସ କିଏ ? ତାହା ତ ଜଣାଗଲା ନାହିଁ । କିପରି ପୁଣି ନଷ୍ଟ ଧନ ହସ୍ତଗତ ହେବ ?

ରାମ—ତାତ ! ମୋ ପ୍ରଶ୍ନର ଠିକ ଉତ୍ତର କିଣ, କହନ୍ତୁ ।

ପୁନରପି ନେପଥ୍ୟରେ—

ବତ୍ସ ! ସବୁ କହୁଅଛି, ଶ୍ରବଣ କର । ସେ ବିଶ୍ରବା ଋଷିଙ୍କ ପୁତ୍ର, ତ୍ରୈଲୋକ୍ୟରେ ରାବଣ ନାମରେ ପ୍ରଖ୍ୟାତ ଲଭିଅଛି ।

ରାବଣ—ଏହି ଗୃଧ୍ରହତକ କ୍ଷତ୍ରିୟାଧମକୁ ମୋର ନାମ ଜଣାଇ ଦେଇଅଛି । ( ନିଃଶ୍ୱାସ ମୁଞ୍ଚି ) ହାୟ ! ଏହା ମୋର ପ୍ରମାଦର ଫଳ ।

ଅନୁଷ୍ଟୁପ୍ ବୃତ୍ତ ।

ପକ୍ଷହସ୍ତ ପଦଦ୍ୱନ୍ଦ ମୁଁ ହାଣି କରବାଳରେ
ନ ହାଣିଲି କିପାଁ କଣ୍ଠ ଏହି ପକ୍ଷିର ଯୁଦ୍ଧରେ ।୩୦।

ସୀତା—ଏଦ୍ୱାର ନାମମାତ୍ର କଥନରେ "ମୋତେ ଏ ଲଙ୍କା-
ପୁରରେ ରଖିଅଛୁ" ଏ କଥା ଆର୍ଯ୍ୟପୁତ୍ର କପର ଜାଣି
ପାରିବେ ?

ରାମ—ତାତ ! ଅବଶିଷ୍ଟ ମଧ୍ୟ କହନ୍ତୁ ।

ଲକ୍ଷ୍ମଣ—(ସବାଷ୍ପ ଗଦ୍ଗଦେ) ହାୟ ! ହାୟ !

ଇନ୍ଦ୍ରବଜ୍ରା ବୃତ୍ତ ।

ଚଞ୍ଚୁକୁ ବସ୍ତ୍ରାର ସମାଂସ ରକ୍ତ ଉଦ୍ଗାର ଅହା ଉଲଟାଇ ନେବ,
ନିର୍ଲୂନ-ପକ୍ଷାଂଘ୍ରି ଜଟାୟୁ ଅବ କ୍ଷୌଣୀପରେ ପାଡ଼ିତ ତାଡ଼ମିବ ।

ରାମ—(ସଦୁଃଖେ) କପର ! ଅବଶିଷ୍ଟ କଥା ନ କହ ତାତ
ଜଟାୟୁ ବିଗତାସୁ ହୋଇପଡ଼ିଲେ ! (ନିକଟକୁ ଯାଇ)
ହା ତାତ ! ହା ତାତପାଦ ଦଶରଥପ୍ରିୟସୁହିଏ !
ହା ଅରୁଣକୁଳପ୍ରଦୀପ ! ଅମ୍ଭେମାନେ ପଞ୍ଚବଟୀରେ
ନିବାସ କରୁଥିବା ସମୟରେ ଆପଣ ପ୍ରଧାନ ସହାୟସ୍ୱରୂପ
ପ୍ରଶଂସାସ୍ପଦ ହୋଇଥିଲେ ।

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ରାଜ୍ୟଭ୍ରଂଶ ମୁଁ ହୋଇବାରୁ ପୁଣି ମୋ ତାତଙ୍କ ନିର୍ବାଣରୁ
କଷ୍ଟେ ଶ୍ୱାପଦପୂର୍ଣ୍ଣ ଖ୍ରୀକରବନେ ନିତ୍ୟେ ଥିବା ହେତୁରୁ
ବୈଦେହୀ ନବବପ୍ରଯୋଗରୁ ତଥା ମୋ ଦୁଃଖ ବାରିନିଧି
ହେଲା ବର୍ଦ୍ଧିତ ତାତ ! ସତ୍ୟ ତବ ସଦ୍ଧାବେ ତ ବେଳାବଧି ।

ମହାପାର୍ଶ୍ୱ—ମହାରାଜ ! ଏହାର ସମସ୍ତ ଦୁଃଖର କାରଣ ଆପଣ
    କେବଳ ହୋଇଅଛନ୍ତି ।

ରାବଣ--ଅମାତ୍ୟପୁଙ୍ଗବ ! ବୋ ଧହୁଏ ତୁମ୍ଭେ ଜାଣ ନାହିଁ ।

ମହାପାର୍ଶ୍ୱ—କଣ ତାହା କହନ୍ତୁ ।

ରାବଣ—

ଉପେନ୍ଦ୍ରବଜ୍ରା ବୃତ୍ତ ।

ସୁବାହୁ ମାରୀଚ କରାଳ ନାଶୁଁ
ଖର ପ୍ରଖର ତ୍ରିଶିରା ବନାଶୁଁ—
ସମୁଥ ଦୁଃଖାବ୍ଧିକ ସେ ଶବାଧୀ
ବଢ଼ାଇଲା ସ୍ୱସୃର ନାକ ଛେଦ । ୩୩ ।

(ସକ୍ରୋଧେ) ଅତଏବ ଏହିକ୍ଷଣି—

ଉପଜାତ ବୃତ୍ତ ।

ମତ୍‌ଖଡ୍ଗ–ବଚ୍ଛେଦତ ଶୀର୍ଷରନ୍ଧ୍ରୁ
ପାପିଷ୍ଠ ସୌମିତ୍ରିର କଣ୍ଠରନ୍ଧ୍ରୁ
ବନର୍ଗତା ଫେନଲ–ରକ୍ତସାର
ପିଉ ପ୍ରମୋଦେ ଭଗିନୀଟି ମୋର । ୩୪ ।

(ଖଡ୍ଗ ଧରି ଉଠିବା)

ମହାପାର୍ଶ୍ୱ—ମହାରାଜ ! ଏହା ପ୍ରେକ୍ଷଣିକ । (ଏହା କହ ନବାରଣ
    କରିବା)

ସୀତା—ହାୟ ହାୟ ! ମୋର ଅପହାରକ ରାବଣର ନାମମାତ୍ର
    କହ ତାତ ଜଟାୟୁ ପ୍ରାଣ ବସର୍ଜନ କଲେ ! ତାହାର

ସ୍ଥାନ ଲଙ୍କାପୁର, ଏହା କହୁ ନାହାନ୍ତ । ମୁଁ ମନ୍ଦଭାଗିନୀ କଣ କରିବି ?

ଲକ୍ଷ୍ମଣ — ଆର୍ଯ୍ୟ ! ବର୍ତ୍ତମାନ ଶୋକର ସମୟ ନୁହେ । ଶତ୍ରୁ କେଉଁଠାରେ ଅଛି, ତାହା ଜାଣିବାକୁ ହେବ ।

ରାମ—(ସକ୍ରୋଧେ)

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ବୈଦେହୀ-ଅପହାରକ ଯାଉ ଅବା ଯାଏ ସ୍ୱର୍ଗ-ବାସକୁ,
କିମ୍ବା କୁଣ୍ଡଳରାଜବାସକୁ ଅବା ଶମ୍ଭୁଙ୍କ ନେବଷ୍ଟକୁ ।
ତେବେ ତାକୁ ମହୀୟ କାର୍ମ୍ମୁକ-ବିନିର୍ମ୍ମୁକ୍ତେଷୁ ବିଦ୍ରାବିବ,
ତାର୍କ୍ଷ୍ୟ ବ୍ୟାଳକୁ ନାଶିଲା ପରି ପୁଣି କ୍ରୋଧେ ତ ସଂହାରିବ ।୩୫।

ରାବଣ—(ଆତ୍ମୀୟା ସହ) ରେ ନର ଷତ୍ରିୟପୋତ ! ବୃଥା କାହିଁକି ଏଡ଼େବଡ଼ ଗର୍ବ କରୁଅଛୁ ? ଇନ୍ଦ୍ରାଦି ଦିଗୀଶବୃନ୍ଦ-ତ୍ରାସକ ଲଙ୍କେଶ୍ୱରଙ୍କର ପ୍ରତାପ ଜାଣି ନାହୁଁ ।

ସୀତା—(ସାନନ୍ଦେ) ଆର୍ଯ୍ୟପୁତ୍ର ଏତେକାଳଯାଏ କି ହେତୁରୁ ବିଳମ୍ବ କରୁଅଛନ୍ତି ? ସଖି ଅନଳେ ! ସତେ କଣ ଏ ପ୍ରେକ୍ଷଣିକ ? ମୁଁ ବିଶ୍ୱାସ କରେଁ କି, ଅନବଗତକପଟା-ଟୋପ ମହାପୁରୁଷଙ୍କ ପ୍ରତି ମାୟାବୀ ରାକ୍ଷସାଧମ କି ଅବା ଅତ୍ୟାହିତ କରିଥିବ ?

ଅନଳା—ସଖି ! କ୍ଷଣମାତ୍ର ବିଳମ୍ବ ସହ୍ୟ କର । ଏକ୍ଷଣି ଦେଖା ଯିବ ।

ଲକ୍ଷ୍ମଣ — ଆର୍ଯ୍ୟ ! ସହାୟ ହୁଅ, ସହାୟ ହୁଅ ।

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଏହି ସ୍ଥାନରୁ ପେଷିଲେ ବଶିଷ ହେ ଦେବେଶ ଏହିକ୍ଷଣେ
ନଷ୍ଟେ ସେ ହତ ହେବ କୋଶଳପତେ ! ଘୋରାପରାଧୀ ଜଣେ ।
ତାହା ବନ୍ଧୁ ସୁହୃଦ୍ବକାଣ୍ଡରଥପାଦାତଙ୍କୁ ବଧ୍ୱଂସିଣ
ଯୁଦ୍ଧେ ତାକୁ ନ ନାଶିଲେହି ନ ହୁଏ ତା ବୈରନର୍ଯାତନ ।୩୬।

ତଥାଚ—

ଅନୁଷ୍ଟୁପ୍ ବୃତ୍ତ ।

ଅଗ୍ନିଷସ-ଅମୋଘାସ୍ତ୍ର ଯଦି ପେଷିବ ଲୋକରେ ।
ସାଧୁ ବାଳକ ବୃଦ୍ଧ ସ୍ତ୍ରୀ ସମସ୍ତ ହତ ହୋଇବେ । ୩୭ ।

ଅତଏବ ଆପଣ ଦୀନଜନଶରଣ୍ୟ ହୋଇ ଏତାଦୃଶ ନିର୍ଦ୍ଦୟ କାର୍ଯ୍ୟ କରିବା ଉଚିତ ନୁହେ ।

ରାବଣ—ଅମାତ୍ୟ ! ଏହି ଜାଲ୍ମର ବଚନ ଶୁଣିଲ ତ ?

ମହାପାର୍ଶ୍ୱ—ସେ ଏପରି ଭାବୁଅଛି । ହେଉ, ଏଥିରୁ ଦୋଷ କଣ ?

ରାବଣ—ଏ ନଷ୍ଟେ—

ଅନୁଷ୍ଟୁପ୍ ବୃତ୍ତ ।

ନ ଜାଣେ ମୋ ବଳାଧିକ୍ୟ ତେଣୁ ଏ ପ୍ରାଯ୍ୟ କଲ୍ପଇ !
ମରିବେ ଏ ଯୁଦ୍ଧେ ବାଣେ ଉଲ୍କାରେ ଗଜ ଯେପରି । ୩୮ ।

ସୀତା—ବତ୍ସ ଲକ୍ଷ୍ମଣ ! ତୁମେ ଭଲ କହୁଅଛ । ଏହିପରି ଅପରାଧୀ ରାକ୍ଷସକୁ ଏଭଳି ଦଣ୍ଡ ଦେବା ଉଚିତ ।

ରାମ—ତେବେ ସମ୍ପ୍ରତି କଣ କରିବାକୁ ହେବ ?

ଲକ୍ଷ୍ମଣ—ଆର୍ଯ୍ୟାପହାରର ବୃତ୍ତାନ୍ତ ଜାଣିବା ନିମନ୍ତେ ଦକ୍ଷିଣ-ଦିଗକୁ ପ୍ରସ୍ଥାନ କରିବା ।

ରାମ—ବତ୍ସ ! ତେବେ ଏହି ଗିରିନଦୀତୀରରେ ଜଟାୟୁଙ୍କର ସଂସ୍କାରବିଧାନ କରାଇଦିଅ ।

ଲକ୍ଷ୍ମଣ—ଆର୍ଯ୍ୟଙ୍କର ଯେ ଆଜ୍ଞା । (ପ୍ରସ୍ଥାନ)

ରାମ—(ପରିଣପୂର୍ବକ)

ବସନ୍ତତିଲକ ବୃତ୍ତି ।

ସସ୍ନେହ ସାଦର ମନେ କଥିତୋକ୍ତିମାନ
ଏ କାନନେ କୃତ ତଦୀୟ ବିଳାସମାନ ।
ମୋ ଅନ୍ତରଙ୍ଗ ସୁମରି ପ୍ରଳୟାଗ୍ନିକଳ୍ପ—
ଶୋକାଗ୍ନିରେ ହୁଅଇ ଦଗ୍ଧ, ନୁହେ ବିକଳ୍ପ । ୭୯ ।

( ଏହି ପଦ୍ୟଟିକୁ ପୁନଃପୁନଃ ପଢ଼ି ଭ୍ରମିବା)

ନେପଥ୍ୟରେ—

ଲକ୍ଷ୍ମଣ—ମୁଁ ଏହି ଚିରନଦୀତୀରରେ ଶାସ୍ତ୍ରବିହିତମତେ ଆର୍ଯ୍ୟ ଗୃଧ୍ରରାଜଙ୍କର ସଂସ୍କାରବିଧାନ ନିଷ୍ପନ୍ନ କରି ପ୍ରତ୍ୟାଗତ ହେଉଅଛି । ଏ କିଏ ? ଆରଣ୍ୟକ ଜନ୍ତୁମାନଙ୍କ ସହିତ ମୋତେ ଆକର୍ଷଣ କରି ନେଉଅଛି ।

ରାମ—(ସାଶ୍ଚର୍ଯ୍ୟେ) କଣ ! ଲକ୍ଷ୍ମଣର ଆର୍ତ୍ତଧ୍ୱନି ପରି ଶୁଭୁଅଛି । ବତ୍ସ ! ତୁମକୁ ମଧ୍ୟ କେହି ଧର୍ଷଣାକର୍ଷଣ କରୁଅଛି ?

ମହାପାର୍ଶ୍ୱ—ମହାରାଜ ! ମୁଁ ମନେ କରେଁ, ଭବଦୀୟ ଆଦେଶାନୁସାରେ ଅରଣ୍ୟମାର୍ଗରେ ସ୍ଥାପିତ ଦନୁକବନ୍ଧ ଲକ୍ଷ୍ମଣଙ୍କୁ ଆକର୍ଷଣ କରିଅଛି ।

ରାବଣ—ହଁ, ତାହାହିଁ କର୍ତ୍ତବ୍ୟ । (ସହର୍ଷେ) ଉଦରସ୍ଥ କରିବାପାଇଁ ଶୀଘ୍ର ଶୀଘ୍ର ଆକର୍ଷଣ କରୁ ।

ସୀତା—(ସୋଦ୍ବେଗେ) ଲକ୍ଷ୍ମଣଙ୍କୁ ପୁଣି କିଏ ଆକର୍ଷଣ କରୁଅଛି ?

ନେପଥ୍ୟରେ ଲକ୍ଷ୍ମଣ--ଅହୋ ! ଏ କି ଆଶ୍ଚର୍ଯ୍ୟକର ଅଦ୍ଭୁତ ! ଏହାର ବାହୁଦ୍ୱୟ ମହାଚଳକଳ୍ପ ସ୍ଥୂଳ ଓ ବିସ୍ତୃତ; ଆଉ କୁକ୍ଷି ମଧ୍ୟରେ ବିକୃତ ନେତ୍ର-ମୁଖ ବିକାଶିତ ଦିଶୁଅଛି । ଏ ଗୋଟାଏ କବନ୍ଧ ।

ରାମ--ଅହୋ ପ୍ରମାଦ ! ଶୀଘ୍ର ନିକଟକୁ ଯିବି ।

ନେପଥ୍ୟରେ—

ତୁ କିଏ ? ରାଜକୁମାର ପରି ଦିଶୁଅଛୁ । ସନ୍ଧ୍ୟାଂକଷ ଦୈବବଳରୁ ମୋର ଭକ୍ଷଣୀୟରୂପେ ଉପସ୍ଥିତ ହେଲୁ ।

ରାମ—( ଶୁଣି, ଶୀଘ୍ର ନିକଟକୁ ଯାଇ ଅବଲୋକନ କରି ) କପର ! ବତ୍ସ ଲକ୍ଷ୍ମଣ ଏହି ରାକ୍ଷସକୁ ନିହତ କରିଅଛି !

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଗବ୍ୟୂତ୍ୟଶ୍ଚଦ୍ୱୟ ଦୀର୍ଘ ବାହୁଯୁଗ ସେ ବଚ୍ଛେଦିଲା ଖଡ୍ଗରେ ।
ହେଲା ନଷ୍ଟ କବନ୍ଧ ରକ୍ତ ବହିଲା ତା ସ୍କନ୍ଧରନ୍ଧ୍ରକୁ ।

ଚନ୍ଦ୍ରକେ ସ୍ତନକୁଙ୍କୁମାଙ୍କିତ ତନୁ ପ୍ରାପ୍ତେ ଦଶେ ସୁନ୍ଦର ।
ଅପେ ପାଶକୁ ହେଟି ଲକ୍ଷ୍ମଣ ଜବେ ସେ ସର୍ବଥା ସାଦର ।୪୦।

ରାବଣ—(ସଶୋକାଶ୍ଚର୍ଯ୍ୟେ) ହାୟ ! ଏ ଦୁହଙ୍କର ବିନାଶନାର୍ଥ
 ଯାହାକୁ ଅରଣ୍ୟମାର୍ଗରେ ସ୍ଥାପିତ କରିଥିଲି, ସେହି ଦନୁ
 କବନ୍ଧ ମଧ୍ୟ ଏହି ବୀରବଟୁଦ୍ୱାରା ନିହତ ହେଲା !

ସୀତା—(ସାନନ୍ଦେ) ବତ୍ସ ଲକ୍ଷ୍ମଣ ! ତୁମେ ନିଶ୍ଚୟ ଭବଳରୁ ମୃତ୍ୟୁ-
 ମୁଖରୁ ମୁକ୍ତ ହେଲ ।

(ଲକ୍ଷ୍ମଣ ପ୍ରବେଶି ଆକାଶରେ ଲକ୍ଷ୍ୟ ରଖି)

ଆକାଶବାଣୀ ଆର୍ଯ୍ୟଙ୍କ କଣ ଜଣାଉଅଛୁ ? ହେ ରାମଚନ୍ଦ୍ର!
 ଶୁଣନ୍ତୁ, ଆପଣ ଯେଉଁ କାର୍ଯ୍ୟଦ୍ୱାରା ଶତ୍ରୁଜୟପୂର୍ବକ
 ସୀତାଙ୍କ ପ୍ରାପ୍ତ ହେବେ, ତାହା କହୁଅଛୁ । ସାବଧାନ
 ଶୁଣନ୍ତୁ ।

ରାମ—(ସାଦରେ ଶୁଣିବା)

ଲକ୍ଷ୍ମଣ—ପୁନରପି କଣ ଶୁଭୁଅଛୁ !

ବସନ୍ତତିଳକ ବୃତ୍ତ ।

ସୁଗ୍ରୀବ ନାମ କପିପୁଙ୍ଗବ ଋଷ୍ୟମୂକ-
ଶୃଙ୍ଗେ ବସେ ସଚିବଯୁକ୍ତ ମହାତ୍ମକ ।
ତା ମିତ୍ର ହୋଇଣ ଉଦଗ୍ରଜବାଲି-ରାଜ୍ୟ
ତାକୁ ପ୍ରଦାନ କରିଲେ ତବ ହେବ କାର୍ଯ୍ୟ । ୪୧ ।

ଅପିଚ—

ଅନୁଷ୍ଟୁପ୍ ବୃତ୍ତ ।

ସ୍ଥୂଳଶୀର୍ଷଙ୍କ ଶାପେ ମୁଁ ଥିଲି ରାକ୍ଷସଆକୃତ ।
କଲ ଉନ୍ମୁକ୍ତ ସଦସ୍ୟେ ତେଣୁ ଏ ବାଗୁପ୍ରକୃତ ।୪୨ ।

ଲକ୍ଷ୍ମଣ—କପରେ ! ଦନୁ କବନ୍ଧ କେବଳ ଦବ୍ୟଦେହରେ ଏହା କହୁଅଛୁ !

ରାବଣ—(ଅସୂୟା ସହତ) କଣ ହେଲା ! ଦନୁ କବନ୍ଧ ପୁଣି ମଦୀୟ ପକ୍ଷ ତ୍ୟାଗପୂର୍ବକ ପର ପକ୍ଷରେ ପ୍ରବେଶ କଲା !

ମହାପାର୍ଶ୍ବ—ସେ ଯାବତ୍ କବନ୍ଧଦେହ ଧାରଣ କରିଥିଲା, ତାବତ୍ ପର ପକ୍ଷରେ ପ୍ରବିଷ୍ଟ ହୋଇ ନ ଥିଲା ।

ସୀତା—ଦୈବ-ବଳରୁ ଏହ ରାକ୍ଷସ କୂର ଦେହି ଛାଡ ଉପକାର କରୁଅଛୁ ।

ରାବଣ—ମହାପାର୍ଶ୍ବ ! ଏ ପୁଣି ବାଲିଙ୍କ ରାଜ୍ୟରେ ସୁଗ୍ରୀବକୁ ପ୍ରତିଷ୍ଠିତ କରିବ ? ଏ ବଡ଼ ଅସମ୍ଭବ କଥା !

ସୁମୁଖୀ ବୃତ୍ତ ।

ଭୃଗୁସମ୍ଭବ ପର୍ଶୁରାମକୁ
ଖର ଦୂଷଣ ଓ ତ୍ରିଶୀର୍ଷକୁ
ଜିଣିଲେହିଁ, ବଳେକ ରାଘବ
ଭୟ ପାଇବ କୀଶପୁଙ୍ଗବ । ୪୩ ।

ଅତଏବ ମନ୍ତ୍ରିମାନେ ସିଦ୍ଧାନ୍ତିତ କରିଅଛନ୍ତି କି ଏହି କ୍ଷତ୍ରିୟକୁମାର ଦୁହିଙ୍କର ନାଶ ନିମନ୍ତେ ବାଳୀ ପ୍ରଣୋଦିତ ହୋଇଅଛନ୍ତି । ଦେଖ—

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଯେ ପ୍ରାଗ୍‌ଦକ୍ଷିଣ ପଶ୍ଚିମାମ୍ବୁଧିଜଳେ ଏକକ୍ଷଣେ ମାତର
ଶ୍ରୀସୂର୍ଯ୍ୟଙ୍କୁ ଜଳାଞ୍ଜଳିତ୍ରୟ ଦିଏ, ସନ୍ଧ୍ୟା କରେ ଅବର ।
ଯୁଦ୍ଧେ ନାଶି ନିଗାଢ଼ ଦୁନ୍ଦୁଭି ଚତୁଃକ୍ରୋଶେ ତ ନିକ୍ଷେପିଲା ।
କେ ତାହା ସମ ନାହିଁ ବୋଲି ଜଗତେ କେଉଁ ଯଶ ସ୍ଥାପିଲା ।

ମହାପାର୍ଶ୍ୱ—(ସ୍ୱଗତ) ଏହାର ସମସ୍ତ ବଳଯୁଅଶଂସା ବାଳି-ଠାରେ ରହିଅଛି । ବାଳି ମଧ୍ୟ ନିହତ ହେଲା, ଏହା ଜାଣି ପାରିଲେ ଏ କଣ ଅବା କରିବ, କିଛି ଜଣା ଯାଉ ନାହିଁ । (ପ୍ରକାଶତଃ) ମହାରାଜ ! ତାହା ଯଥାର୍ଥ ଅଟେ ।

ରାମ—(ଆକାଶରେ ଲକ୍ଷ୍ୟ ରଖି) ଆର୍ଯ୍ୟ ! ସମ୍ପ୍ରତି ଆମ୍ଭେ ଦୁହେଁ ଅନୁଗୃହୀତ ହେଲୁଁ । ଆପଣ ଯଥାଭିଲଷିତ ଦିବ୍ୟ ସ୍ଥାନରେ ପ୍ରବିଷ୍ଟ ହୁଅନ୍ତୁ । ପୁନରପି ଆର୍ଯ୍ୟ କଣ କହୁଅଛନ୍ତି ? ତୁମ୍ଭେ ଦୁହେଁ ଏହି ପମ୍ପାନଦୀ ତୀରସ୍ଥ ମାର୍ଗ ଦେଇ ଋଷ୍ୟମୂକ ପର୍ବତକୁ ଯାଅ, ଏହା କହୁଅଛନ୍ତି । (ରାମ ଲକ୍ଷ୍ମଣ ଦୁହେଁ ଯଥାନିର୍ଦ୍ଦିଷ୍ଟ ମାର୍ଗାଭିମୁଖ ହେବା)

ରାବଣ—(ସାଶଙ୍କେ) କଣ ! ସୁଗ୍ରୀବ ସଙ୍ଗେ ଏହି ମିଥ୍ୟା-ତାପସର ମିତ୍ରତା ଘଟିବ ?

ମହାପାର୍ଶ୍ୱ—ଏହା ଅସମ୍ଭବ ।

ରାବଣ—(ସଧୈର୍ଯ୍ୟେ)

ଅନୁଷ୍ଟୁପ୍ ବୃତ୍ତ ।

ସହସ୍ର ରାମ ସୁଗ୍ରୀବ ଆନ୍ତୁ ବଳମବାରଧି-
ବାଳିର ପ୍ରାଣହରଣେ ସମର୍ଥ ନୋହିବେ କଦା । ୪୫ ।

ମହାପାର୍ଶ୍ୱ—(ସ୍ୱଗତ) ରାଜା ନଷ୍ଟେ ଯଥାର୍ଥାନଭିଜ୍ଞ ଅଟନ୍ତି । ରାଜା ଅବିବେକୀ ହେଲେ ମନ୍ତ୍ରିମାନେ ଅବା କଣ କରି ପାରିବେ ? (ପ୍ରକାଶତଃ) ସବୁ ପ୍ରେକ୍ଷଣିକରୁ ବ୍ୟକ୍ତ ହେବ ।

ସୀତା—(ସ୍ମରଣପୂର୍ବକ) ରାକ୍ଷସ ଯେତେବେଳେ ମୋତେ ଧରି ଆକାଶରେ ଧାଉଁଥିଲା, ସେତେବେଳେ କୌଣସି ପର୍ବତ ଉପରେ ଉପବିଷ୍ଟ ପାଞ୍ଚ ଗୋଟି ମର୍କଟଙ୍କୁ ଦେଖିଥିଲି ବୋଧହୁଏ ସେମାନଙ୍କ ମଧ୍ୟରୁ ଜଣେ ସୁଗ୍ରୀବ ହେବେ ।

ଅନଳା—ସେମାନଙ୍କ ମଧ୍ୟରୁ କାହାକୁ ହେଲେ ତୁମ୍ଭେ ଶରଣ କହୁଅଛ କି ?

ସୀତା—ମୋତେ ତ ରାକ୍ଷସ ଧରି ପବନ ଅପେକ୍ଷା ଅଧିକ ବେଗରେ ଧାଉଁଥିଲା, କପରି ତାହା ସମ୍ଭବ ହୁଅନ୍ତା ?

ଲକ୍ଷ୍ମଣ—( ପୂର୍ବୋଭାଗକୁ ଦେଖାଇ ) ଏଇ ଦେଖନ୍ତୁ ସେହି ପମ୍ପାସର ।

ସ୍ରଗ୍ଧରା ବୃତ୍ତ ।

ଏହାର ପ୍ରାନ୍ତଦେଶେ ହରିଣ ଖୁରପୁଟ-କ୍ଳିଷ୍ଟ ମନ୍ଦାରମାଧ୍ୱୀ-
ଧାରାସଂଯୋଗ ଶୀତ ଶ୍ରୁତ ପଡଅଛୁ ସେ ବନ୍ୟଯାବାର ସାଧ୍ୱୀ ।

ସୂର୍ଯ୍ୟାଂଶୁଚକ୍ଳଶ ନାଶେ କ୍ରମୁକ ପନସ ମାକନ୍ଦ ବୃକ୍ଷାଳି-କ୍ଷଇ ।
ପୁନ୍ନାଗାମୋଦବାହୀ ଦ୍ରୁମପବନ ବହେ ଶ୍ରାନ୍ତ ସେ ମାର୍ଗ ଦେଇ ॥

ରାବଣ—ସତ୍ୟ, ସେହି ପମ୍ପାତୀରବର୍ତ୍ତୀ ବନପ୍ରଦେଶ ଅତି ରମଣୀୟ ଅଟେ ।

ସୀତା—( ସୋଦ୍ବେଗେ ) ଅନଳେ ! ମନୋହର ପମ୍ପା-ସରୋବରର ତୀରସ୍ଥ ବନପ୍ରଦେଶର ରମଣୀୟତା ଦେଖି ଆର୍ଯ୍ୟପୁତ୍ର କେଉଁଠାରେ କଣ ହେଲେ ? ଜଣା ଯାଉ ନାହିଁ ।

ଅନଳା—ସବୁ ପ୍ରେକ୍ଷଣିକରୁ ଜଣାଯିବ ।

ରାମ—(ଅବଲୋକ) ଏଇ ଦେଖାଯାଏ । ଏହି ପମ୍ପାସରରେ କୃତବହାର ମାତଙ୍ଗ ପ୍ରଥମେ ଉତ୍ପାଟିତ ଶ୍ୱେତଲତାଦ୍ୱା-ଦାନରେ ପ୍ରିୟାର ସନ୍ତୁଷ୍ଟି ଅବଗତ ହୋଇ, ସମ୍ପ୍ରତି ସଲୀଳେ ଧୃତ ସଲିଳକୁ ନିଜ ଶୁଣ୍ଡାଗ୍ରରୁ ତାହାର ମୁଖରେ ସନ୍ତୋଷଭରେ ସଂକ୍ରମିତ କରୁଅଛି । ଆହା ! ଏହା କି ସୁନ୍ଦର ପ୍ରୀତିର ପରିଚୟ ଯେ ! (ବର୍ତ୍ତରପୂର୍ବକ) ହାୟ ! ମୋ ବିନା ଜାନକୀ ପୁଣି କିପରି ଥିବ ଯେ ! (ଲୋତକ ବୁହାଇବା)

ରାବଣ—ଲଙ୍କେଶ୍ୱରଙ୍କର ପ୍ରସାଦାତିଶୟ୍ୟରୁ ରାକ୍ଷସୀମାନଙ୍କଦ୍ୱାରା ସେ ଏଠାରେ ସୁରକ୍ଷିତା ଅଛି ।

ସୀତା—(ଅଶ୍ରୁ ତେଜ) ଅନଳେ ! ଆର୍ଯ୍ୟପୁତ୍ରଙ୍କର ସାନ୍ନିଧ୍ୟ ବିନା ମୁଁ ଯାହା ପ୍ରାଣ ଧାରଣ କରିଅଛି, ତାହା ନଷ୍ଟେ ମୋର ହୃଦୟଶଲ୍ୟ କେବଳ ।

ରାମ—(ଅଶ୍ରୁ ମାର୍ଜନ କରି) ଏଠାରେ ପୁଣି ପ୍ରଣୟିନୀ ହଂସୀଗଣ ବହାରକ୍ରମରେ ହଂସମାନଙ୍କ ଉପରେ ଉଠୁଅଛନ୍ତି । ସେମାନଙ୍କର ଆଧୂତ ପକ୍ଷଚ୍ଛଦାଘାତରେ କମଳମାଷଣ୍ଡୁ କ ମନୋହର କମ୍ପିତ ହେଉଅଛୁ । ତଥାଚ ତାହାର ଚତୁର୍ଦ୍ଦିଗରେ ଉଦ୍ଭ୍ରାନ୍ତ ଭ୍ରମରମାନେ ସଞ୍ଚାର କରୁଅଛନ୍ତି । ହା ପ୍ରେୟସି ଜାନକି ! (ମୂର୍ଚ୍ଛିତ ହେବା)

ସ୍ଵବଣ—( ସହର୍ଷଚଶ୍ଯେ ) ଏ ତ ମୂର୍ଚ୍ଛିତ ହୋଇ ପଡ଼ଅଛୁ । ପୁନରପି କଣ ଉଠିବ ? ନା, ଆଉ ଉଠି ପାରିବ ନାହିଁ ।

ସୀତା—ହାୟ ହାୟ ! ପ୍ରାଣନାଥଙ୍କର ଏଭଳ ଶାରହାବସ୍ଥାରେ ମଝ ଦୁଷ୍ଟାତ୍ମା ବଧାତା ମୋତେ ତାଙ୍କର ଦୃଷ୍ଟିପଥରେ ରଖିଲ ନାହିଁ । (ଏହା ଭାବ ସଭୟେ ରହବା)

ଲକ୍ଷ୍ମଣ—ଆର୍ଯ୍ୟ ! ଆଶ୍ଵାସିତ ହୁଅ, ଆଶ୍ଵାସିତ ହୁଅ ।

ଉପଜାତି ବୃତ୍ତ ।

ଯେ ଗ୍ରେର ତା କେତନ ନାମଧେୟ
ଜଣାଗଲ ସହାରବା ଉପାୟ ।
ଏ ଶଲ୍ୟ ଉଦ୍ଧାର ସୁସାଧ୍ୟ ଅର
ବମୋହ କେଣେ ଅଥବା ବଗ୍ଚର । ୪୭ ।

ରାମ—( ଆଶ୍ଵାସ ଲଭ ) ବତ୍ସ ! ଋଷ୍ୟମୂକ ପର୍ବତ କେତେ ଦୂରରେ ଅବସ୍ଥିତ ?

ଲକ୍ଷଣ—ଆର୍ଯ୍ୟ ! ଏଇ ଦେଖନ୍ତୁ, ନିକଟରେ କେହି ଜଣେ ଭିକ୍ଷୁ ଆସୁଅଛନ୍ତି, ତାହାଙ୍କୁ ପଗ୍ଚରବ ।

ତଦନନ୍ତର ଭିକ୍ଷୁ ପ୍ରବେଶ ।

ଭିକ୍ଷୁ—ମୁଁ ଭିକ୍ଷୁବେଶରେ ରାଜକୁମାର ଦୁହିଙ୍କ ସମୀପରେ ଉପସ୍ଥିତ ହେଲି ।

ସୀତା—ଅନଳେ ! ହାୟ ହାୟ ! ଭୟଙ୍କର ଘଟନା ।

ଅନଳା—କି କାହିଁକି ? ଅନବସରରେ ଏଡ଼େ ଭୀତ ହେଉ- ଅଛ ?

ସୀତା—ଅନଳେ ! ବିଚାର କରେଁ, ରାକ୍ଷସ ସେପରି ଭିକ୍ଷୁରୂପରେ ମୋତେ ଚୋରାଇ ଆଣିଅଛି, ସେପରି ଆର୍ଯ୍ୟପୁତ୍ରଙ୍କର ଅତ୍ୟାହିତ କରିବାପାଇଁ ଆସିଅଛି ଅବା ?

ଅନଳା—ଏ ତ ପ୍ରେକ୍ଷଣିକ । ଆଗକୁ କି ହେବ ଦେଖାଯାଉ ତୁମେ ବୃଥା ଉଦ୍ବିଗ୍ନ ହୁଅ ନାହିଁ ।

ଲକ୍ଷ୍ମଣ—ଭଗବନ୍ ଭିକ୍ଷୁକ ! ଯେଉଁଠାରେ ସୁଗ୍ରୀବ ମନ୍ତ୍ରିମାନଙ୍କ ସହିତ ନିବାସ କରନ୍ତି, ସେହି ଋଷ୍ୟମୂକ ପର୍ବତ କେଉଁଠାରେ, ଆପଣ ଜାଣନ୍ତି ?

ଭିକ୍ଷୁ—(ସ୍ୱଗତ) କଣ ! ଋଷ୍ୟମୂକ ବାଳିର ଅଗମ୍ୟ ଥିବାରୁ ସୁଗ୍ରୀବବନ୍ଧନରେ ନିଜେ ଅସମର୍ଥ ହୋଇ ଏ ଦୁହିଙ୍କୁ ପଠାଇ ଅଛି ? ଅତଏବ ସ୍ୱାମୀ ସଂଶୟାପନ୍ନଚିତ୍ତରେ ଯଥାର୍ଥତା ଜାଣିବାପାଇଁ ମୋତେ ପଠାଇଅଛନ୍ତି । ଅଥବା ସେପରି ନୁହେ । କାରଣ ମୋର ଅନ୍ତରାତ୍ମା ତ ପ୍ରସନ୍ନ ଅଛି । (ପ୍ରକାଶତଃ)

ବସନ୍ତତିଲକ ବୃତ୍ତ ।

କାଦମ୍ବିନୀ ଲଳିତମସ୍ତକ-ବେଷ୍ଟ ଯାଇ
ଇନ୍ଦ୍ରଦ୍ରୁ-କାନନ ଦର୍ଶ କରଚ ପ୍ରକାର ।
ସ୍ରୋତସ୍ୱତୀ କରଧୃତାସିଲତା ସମାନ
ସେ ଋଷ୍ୟମୂକ ଗିରଇନ୍ଦ୍ର ସୁଦୃଶ୍ୟମାନ । ୪୮ ।

ଆପଣ ତୁମ୍ଭେଁ କିଏ ?

ରାବଣ—(ସ୍ୱଗତ) ଏ ବାଳୀ ନୁହେ । (ପ୍ରକାଶତଃ) ମହାପାର୍ଶ୍ୱ ! ତୁମେ ଜାଣିଅଛ ତ । ଏ ଦୁହିଙ୍କ ମଧ୍ୟରୁ ଏକ ଖର-ନିଧନମହାପାପୀ, ଅନ୍ୟ ସୂର୍ପଣଖାମୁଖବିରୂପକରଣ-ମହାପରାଧୀ ।

ସୀତା—(ସ୍ୱଗତ) ଏହି ଭିକ୍ଷୁବେଶଧାରୀ ରାକ୍ଷସ ନୁହେ ତ ? (ପ୍ରକାଶତଃ) ଅନଳେ ! ଏ ଦୁହିଙ୍କୁ ମନ୍ଦଭାଗିନୀ ସୀତାର ଭର୍ତ୍ତା ଆଉ ଦେବରଙ୍କର ରୂପଧାରିଣୀ ଅପ୍ସରା ବୋଲି ଏ କଣ ଜାଣି ନାହିଁ ?

ଲକ୍ଷ୍ମଣ—ସେ ମୋର ଆର୍ଯ୍ୟ ଦାଶରଥି ଶ୍ରୀରାମ, ମୁଁ ତାହାଙ୍କର ଅନୁଜ ଲକ୍ଷ୍ମଣ; ହାୟ ! ଆଉ ତାହାଙ୍କ ଭାର୍ଯ୍ୟାଙ୍କ କଥା କି କହିବ !

ଭିକ୍ଷୁ—କହିବା ଅନାବଶ୍ୟକ, ଜଣାଗଲା । ଅବଶିଷ୍ଟ ସବୁ ମୁଁ ଶୁଣିଅଛି । ରାବଣ ସୀତାଙ୍କୁ ଅପହରଣ କରିଅଛି ।

ଲକ୍ଷ୍ମଣ—ଅତଏବ ବର୍ତ୍ତମାନ ସୁଗ୍ରୀବ ଆମ୍ଭମାନଙ୍କର ଗତି ।

ଭିକ୍ଷୁ—ମୁଁ ସୁଗ୍ରୀବଙ୍କର ସଚିବ । ମୋର ନାମ ହନୁମାନ୍ । ଦେବ ! ହରିକୁଳପ୍ରଦୀପ ! ଶ୍ରବଣ କରନ୍ତୁ ।

ମାଳିନୀ ବୃତ୍ତ ।

ଅପହରିଛ୍ଛି ଦୁରାତ୍ମା ତାଙ୍କ ବାଲୀକୁ ବାଲୀ,
ନିଧନ କରି ଇହାଙ୍କ ଅଣ ହେ ଶକ୍ତିଶାଳୀ ।
କୁଳବନଜଗଣ ସଙ୍ଗେ ରାବଣ ଧ୍ୱଂସି ରୋଷେ
ତବ ଯୁବତିକି ଦେବେ ଆଣି ସେ ମଧ୍ୟ ତୋଷେ । ୪୯ ।

ଆପଣ ସନ୍ଦେହ କରନ୍ତୁ ନା । ଏହାଙ୍କ ଅଗ୍ରଜ ବାଳୀ ରାଜାଙ୍କ ଅଦ୍ଦ୍ଭୁତ କୋଟିପରିମିତ ଦଣ୍ଡରକ୍ଷ ଏହାଙ୍କଦ୍ୱାରା କେବଳ ପରାଭୂତ ହୁଅନ୍ତି ।

ରାବଣ—( ସକ୍ରୋଧେ ) ଏହି ଦୁଷ୍ଟାତ୍ମା ତାପସକୁ କଣ ଗୁଡ଼ାଏ କହୁଅଛି ? କାହିଁ ମୋର ଚନ୍ଦ୍ରହାସ ?

ଅନୁଷ୍ଟୁପ୍ ବୃତ୍ତ ।

ଅଗେ ନାଶିବ ଏ ତାପ୍ସ ସାମ୍ୟକେ ତଦନନ୍ତର
ଋଷ୍ୟମୂକସ୍ଥ ସୁଗ୍ରୀବ ତା ମନ୍ତ୍ରିଗଣ ନାଶିବ । ୫୦ ।

(ବିଚାରପୂର୍ବକ) ଅନବସରରେ ମୋର ଏପରି ବୃଥା ସମ୍ଭ୍ରମ କାହିଁକି ? ସେହି କ୍ଷତ୍ରିୟପୋତର ବିନାଶନାର୍ଥ ବାଳୀ ପ୍ରଣୋଦିତ ହୋଇଅଛନ୍ତି । ସେ ଅବଶ୍ୟ ଏ ଦୁହିଙ୍କୁ ତଥାଚ ତଦୀୟ ମିତ୍ରମାନଙ୍କୁ ମଧ୍ୟ ନାଶ କରିବାକୁ ପାରିବେ ।

ମହାପାର୍ଶ୍ୱ---ମହାରାଜ ! ଭଲ କହିଲେ ।

ସୀତା—( ସାନନ୍ଦେ ) ଏହି ସୁସ୍ୱଭାବ ତାପସ ପରସ୍ପର ଙ୍ଗମକୁ ସୂଚନା କରୁଅଛନ୍ତି ।

ରାମ—ଆଚ୍ଛା ସେହିପରି ହେଉ । ତେବେ ସେହି ଋଷ୍ୟମୂକକୁ ଯିବା ଚାଲ । (ସମସ୍ତଙ୍କର ପ୍ରସ୍ଥାନ)

ରାମ—ଏ କଣ ! ଏ ସ୍ଥଳରେ ମାର୍ଗନିରୋଧକରୂପେ ପର୍ବତଶିଖର ପ୍ରାୟ ଉନ୍ନତ ଅସ୍ଥିସଞ୍ଚୟ ପଡ଼ିଅଛି କିପରି ?

ହନୁମାନ୍—ବାଳୀ ଦୁନ୍ଦୁଭିନାମକ ଅସୁରକୁ ନିହତ କରି ନିକ୍ଷେପ କରିଥିଲା, ଏ ତାହାର ଅସ୍ଥିଶେଷ କଙ୍କାଳ ।

ରାମ—ଏହାକୁ ଦୂରନିକ୍ଷିପ୍ତ କରି ଦେଲେ ଗମନାର୍ଥ ମାର୍ଗ ସୁଗମ ହେବ । (ଏହା କହି ଉତ୍‌କ୍ଷେପଣାଭିନୟ କରିବା)

ଲକ୍ଷ୍ମଣ—(ସାଶ୍ଚର୍ଯ୍ୟ) କିପରି ! ଆର୍ଯ୍ୟ ପାଦାଙ୍ଗୁଷ୍ଠରେ ଅସ୍ଥିକୂଟକୁ ଦଶ ଯୋଜନ ଦୂରକୁ ନିକ୍ଷେପି ଦେଲେ !

ହନୁମାନ୍—(ସ୍ୱଗତ) ଏହି ରାଜକୁମାର ମହାନ୍ ବଳଶାଳୀ ଅଟନ୍ତି । (ପ୍ରକାଶତଃ) ଦେବ ! ବୀରପ୍ରବର ବାନରାଧିପ ଯୁଦ୍ଧ ପରେ ଏହି ଗତଜୀବିତ ଦୁନ୍ଦୁଭିକୁ ବାହୁଦ୍ୱୟରେ ଏକ ଯୋଜନ ଦୂର ମାତ୍ର ନିକ୍ଷିପ୍ତ କରିଥିଲେ ।

ରାମ—(ପୁରତଃ ବିଲୋକି) ଶରବିଦାରଣ-ପ୍ରକାଶିତରନ୍ଧ୍ର ଏହି ଶାଳବୃକ୍ଷଗୁଡ଼ିକ କାହାର ?

ହନୁମାନ୍—ଏ ସବୁ ବାଳୀର !

ଲକ୍ଷ୍ମଣ—ଅହୋ ! ଆର୍ଯ୍ୟ ଭୂମିରେ ପାଦାଙ୍ଗୁଷ୍ଠନିଷ୍ପୀଡ଼ନପୂର୍ବକ ଏହି ବୃକ୍ଷଗୁଡ଼ିକୁ ସମରେଖାସ୍ଥ ରଖି ଯୁଗପତ ଏକମାତ୍ର ବାଣରେ ବିଦାରିତ କରିଦେଲେ !

ହନୁମାନ୍—(ସାନନ୍ଦେ) ଏଇ ଦେଖନ୍ତୁ, ବାଲିର ଅନୁଜ ସୁଗ୍ରୀବ ମନ୍ତ୍ରିମାନଙ୍କ ସଙ୍ଗେ ଧରି ଗିରିଶିଖରରୁ ଅବତରଣ କରୁଅଛନ୍ତି । ମୁଁ ମନେ କରେଁ—

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଅଙ୍ଗୁଷ୍ଠେ ଗିରିକଳ୍ପ-ଅସ୍ଥିରାଶି ଯେ ନିକ୍ଷେପିଲେ ଆପଣ,
ହେଳାରେ ପୁଣି ସପ୍ତଶାଳ ଚିରିଲେ ବାଣେକ ନିକ୍ଷେପିଣ ।
ବାଳୀ ହେବ ବିନଷ୍ଟ ଭାବି ହୃଦୟେ ସନ୍ତୁଷ୍ଟ ନିଃସାଧ୍ୱସେ,
ଏ ଦେଶେ ଭବଦାସ୍ୟ ସଖ୍ୟରୁ ରଜା ହେବାକୁ ଆସନ୍ତି ସେ ।୫୧।

ରାବଣ—(ଆଶ୍ଚର୍ଯ୍ୟ ଓ ଉଦ୍ବେଗ ସହିତ)

ଉପଜାତି ବୃତ୍ତ ।

ପାଦାଗ୍ରରେ ଦୁନ୍ଦୁଭି ଅସ୍ଥିମାଳ
ନିପେପିଷି ନାଶେ ତ ବିଶାଳ ଶାଳ ।
ସୁଗ୍ରୀବ ସଙ୍ଗେ ପୁଣି ମିତ୍ର ଭାବ
କେଳେଣ ଅବା ବାଲିକି ଘାତ ହେବ । ୫୨ ।

(ବିଚାର କରି)

ଅନୁଷ୍ଟୁପ୍ ବୃତ୍ତ ।

ମାରି ପାରେ ପ୍ରହର୍ତ୍ତାକୁ ଅଟେ ମୃତ୍ୟୁର ମୃତ୍ୟୁ ସେ ।
ସଂଗ୍ରାମେ ଗ୍ରୀବ ବର୍ଷାଏ କେ ଯାକୁ ମାରି ପାରିବ । ୫୩ ।

ସୀତା—ମନେ ହୁଏ, ଭାଗ୍ୟବଳରୁ ଦେଶାନ୍ତରରେ ଆର୍ଯ୍ୟପୁତ୍ରଙ୍କର ପ୍ରବଳ ମିତ୍ରଲାଭ ଘଟିବ ।

ରାମ—ହଁ, ତାହା ହୋଇ ପାରେ ।

ମନ୍ତ୍ରୀ ସହିତ ସୁଗ୍ରୀବଙ୍କର ପ୍ରବେଶ ।

ସୁଗ୍ରୀବ—(ସାଶ୍ଚର୍ଯ୍ୟେ)

ବସନ୍ତତିଳକ ବୃତ୍ତ ।

ବାଳିପ୍ରଣୋଦିତ ଅବା ମମ ନାଶନାର୍ଥେ
ଆଗେ ମନେ କରି ମୁଁ ହୋଇଲି ଶଙ୍କିମନ୍ତ ।
ଆହା କି ଭାଗ୍ୟ ମମ ମିତ୍ର କରାଇବାକୁ
ଆଣନ୍ତି ମୋ କତିକି ପାବନ ସେ ଦୁହିଙ୍କୁ । ୫୪ ।

ହନୂମାନ୍—ଦେବ ! ହେଇଟି ସୁଗ୍ରୀବ ପ୍ରଣାମ କରୁଅଛନ୍ତି ।

ରାମ—ମିତ୍ର ବାନରାଧିପ ! ଆପଣଙ୍କର ସବୁ କୁଶଳ ତ ?
(ଆଲିଙ୍ଗନ କରିବା)

ସୁଗ୍ରୀବ—ଦେବ ! ଭାଗ୍ୟବଳରୁ ମୁଁ ଆପଣଙ୍କ ମିତ୍ରପଦଭାଜନ
ହୋଇଅଛି, ଏହାଠାରୁ ବଳି ମୋର ଆଉ କଣ କୁଶଳ
ଆବଶ୍ୟକ ଅଛି ?

ରାମ—ସଖେ ! ବିଶ୍ରବାପୁତ୍ର ରାବଣକୁ ତଥାଚ ତାହାର
ବାସସ୍ଥାନ ଆପଣ ଜାଣନ୍ତି ତ ?

ଲକ୍ଷ୍ମଣ—ସୁଗ୍ରୀବ କଣ ଅବା ଉତ୍ତର ଦେବ ! ( ଶୁଣିବାରେ
ଅଭିନୟ କରିବା )

ସୁଗ୍ରୀବ—ଦେବ ! ମୁଁ ତାହା କିଛି ଜାଣେ ନାହିଁ

ମହାପାର୍ଶ୍ୱ—ମହାରାଜ ! ଆପଣଙ୍କ ମିତ୍ର ସୁଗ୍ରୀବ ମଧ୍ୟ ଜାଣି ନାହିଁ ?

ରାବଣ—(ହସି) ସଚିବ ! ଶ୍ରବଣ କର ।

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ସୀତା ପଞ୍ଚବଟୀରୁ ସେ ମଧୁବନେ ହେଲା ପରେ ରୋଧିତ
କାମାରିଙ୍କୁ ମୁଁ ପୂଜିବାରୁ ବର ସେ ଦେଲେ ମମାରାଧିତ ।
ପ୍ରାଣୀ ବସ୍ତୁରହେଉ ଜାଣି ଶୁଣି ତୋ ବାର୍ତ୍ତା ମହେନ୍ଦ୍ରାବଧି
ସୁଗ୍ରୀବ ସ୍ପୃଷ୍ଟ ନୋହିଲା ପରଚଟେ ସେହେତୁ ଏବେ ସୁଧୀ ! ॥

ସୀତା—ଅନଳେ ! ଏହି ବାନରନାଥ ମଧ୍ୟ ଲଙ୍କାଧିପତିର ବୃତ୍ତାନ୍ତ ଅବଗତ ନାହାନ୍ତି । ତେବେ ମୋତେ ଅଶୋକ-ବନିକାରେ ରାକ୍ଷସୀମାନେ ନିରୋଧ ରଖିଅଛନ୍ତି, ଏହା ଆର୍ଯ୍ୟପୁତ୍ରଙ୍କୁ କିଏ କହିବ ?

ଅନଳା—ଏଣିକି ତୁମ୍ଭେ ଆଉ କାହିଁକି ବୃଥାରେ ଚିନ୍ତା କରୁଅଛ ? ଏହା ନିଶ୍ଚିନ୍ତ ମନେ କର ଯେ, ସୁଗ୍ରୀବସେନା ମଧ୍ୟରୁ କେହି ଜଣେ ମହାତ୍ମା ଆସି ତୁମ୍ଭର ସମ୍ବାଦ ନେଇ ରାମଚନ୍ଦ୍ରଙ୍କୁ ଜଣାଇଦେବ ।

ସୁଗ୍ରୀବ—କିନ୍ତୁ କେହି ଜଣେ ରାକ୍ଷସ କୌଣସି ଏକ ରାଜକନ୍ୟାଙ୍କୁ ଧରି ଗଗନମାର୍ଗରେ ଦ୍ରୁତବେଗରେ ବାହାରି ଯାଉଥିଲା, ତଦା ସେହି ରାଜକନ୍ୟା ନିଜ ଉତ୍ତରୀୟରେ ଅଳଙ୍କାର-ଗୁଡ଼ିଏ ବାନ୍ଧି ମୋ ସମ୍ମୁଖରେ ପକାଇଦେଇ ଯାଇ-ଅଛନ୍ତି । (ଏହା କହି ଅଳଙ୍କାର ସମର୍ପଣ କରିବା)

ଲବଣ—(ସୋଦ୍ବେଗେ) ରଥର ଅତି ଶୀଘ୍ର ଗମନ ହେତୁରୁ "ସୀତା ଉତ୍ସଙ୍ଗ ପକାଇଅଛୁ" ଏହା ମୁଁ ଜାଣି ପାରି ନାହିଁ ।

ସୀତା—ମୋର ଭାଗ୍ୟବଳରୁ ସେହିଦିନ ଉତ୍ସଙ୍ଗ ଆର୍ଯ୍ୟ-ପୁତ୍ରଙ୍କର ହସ୍ତଗତ ହୋଇଅଛି ।

ରାମ—(ଆନନ୍ଦ ଓ ଶୋକ ସହ ସ୍ୱଗତ) ଏଇ ତ ପ୍ରାଣପ୍ରିୟାର— ଯେ କି ତଦୀୟ ମକରିକାପତ୍ରିକାକସ୍ତୂରିକାପଙ୍କରେ ସମର୍ପିତ ହୋଇ ପୀନୋନ୍ନତ ବକ୍ଷଃସ୍ଥଳକୁ ବ୍ୟକ୍ତଭାବେ ପିହିତ ରଖିଥାଏ, ଯାହାକୁ ପୁଣି ମୁଁ ଆକର୍ଷଣ କଲେ ପ୍ରିୟା ଭ୍ରୂଭଙ୍ଗୀ ସହ ଗୃହିଁ ରହେ, ତଥାଚ ସମୟେ ସମୟେ ପ୍ରାଣବଲ୍ଲଭା ଯାହାର ଅଞ୍ଚଳରେ ବଦ୍ଧ ମୋତେ ସନ୍ତୋଷିତ କରେ, ସେହି ଉତ୍ସଙ୍ଗ ତ ଏହି ।

ରାବଣ--ରାମର ଏହି ଉତ୍କଣ୍ଠା ବଳବତୀ ହୋଇଅଛି ତ । (ସାଶ୍ଚର୍ଯ୍ୟ) ପ୍ରାଣକୁ ପୁଣି ନିର୍ମୂଳ କରୁନାହିଁ !

ସୀତା—ଆହା ! ମୋ ବିନା ମୋର ଉତ୍ସଙ୍ଗ ଦେଖି ଆର୍ଯ୍ୟପୁତ୍ର କିପରି ଅବସ୍ଥାନ୍ତର ପାଇଥିବେ ଯେ !

ରାମ—( ପ୍ରକାଶତଃ ) ପ୍ରିୟାର ଅଳଙ୍କାରଗୁଡ଼ିକ ଦେଖିବ । (ଉତ୍ସଙ୍ଗ ଫିଟାଇ ସଲୋଚକନୟନେ ସ୍ୱଗତ) ପ୍ରିୟାର ଅଙ୍ଗରାଗାନ୍ୱିତ ବକ୍ଷଃସ୍ଥିତ ହାର ଏହ, କରିଗତିର ଲୀଳାଗତିବ୍ୟଞ୍ଜକ ମଞ୍ଜୁ ମଞ୍ଜୀରଦ୍ୱୟ ଏହ ! ଆହା ! ମୁଁ କଣ ଜାଣି ନାହିଁ କି, ଏ ତ ପ୍ରେୟସୀର ଗୃହୁ ଗୃହୀକର ରଚନା—

ରାବଣ—ରାଜପୁତ୍ର ଏହି ଆଭରଣମାନ ଦେଖି ନଶ୍ଚେ ପ୍ରାଣ ତ୍ୟାଗ କରିବ ।

ସୀତା—ଆର୍ଯ୍ୟପୁତ୍ର ! ତୁମ୍ଭେ ଏପରି ଚିନ୍ତାରେ ନିମଗ୍ନ ହେଲ, ଏହା ଭାବି ମୋ ହୃଦୟ ଅନଳ ଓ ଅମୃତ ମଧ୍ୟରେ ନିପତିତ ପରି ହୋଇଅଛି ।

ସୁଗ୍ରୀବ—(ସ୍ୱଗତ) ବୋଧହୁଏ ଏହି ଅଳଙ୍କାରଗୁଡ଼ିକ ଦେଖି ସୀତାଙ୍କୁ ସ୍ମରଣ କରୁଅଛନ୍ତି । ଅତଏବ—

ଅନୁଷ୍ଟୁପ୍ ବୃତ୍ତ ।

ସୀତାଚନ୍ଦ୍ରକ ମିବଙ୍କ ବାଷ୍ପବନ୍ଦୁ ୍ୟୁତାନନ
ହସେ ଜଳକଣାଯୁକ୍ତ ଯେହ୍ଣେ ସଜସରୋରୁହ । ୫୬ ।

( ପ୍ରକାଶତଃ ) ସଖେ ! ଲୋତକପାତ କରନ୍ତୁ ନା । ଅବଶ୍ୟ ସୀତାଙ୍କୁ ପ୍ରାପ୍ତ ହେବେ ।

ରାମ—(ସ୍ମରଣପୂର୍ବକ ସ୍ୱଗତ) ସେହି ହେମମେଖଳାର ଆକର୍ଷଣ କ୍ଷେପଣରେ ତ କଦାଚିତ୍ ଆମ୍ଭ ଦୁହିଙ୍କର ପ୍ରଣୟକଳହ ସଫଳ ହୋଇଉଠେ । (ପ୍ରକାଶତଃ) ବତ୍ସ ଲକ୍ଷ୍ମଣ ! ମୋତେ ଧର । (ମୂର୍ଚ୍ଛିତ ହେବା)

ରାବଣ—ଏଣିକି ଆଉ କଣ ଅଛି ? ଏହାର ଜୀବିତ ଏପର୍ଯ୍ୟନ୍ତ କେବଳ । (ସହର୍ଷେ ଉଠିବା)

ମହାପାର୍ଶ୍ୱ—ମହାରାଜ ! ଏ ତ କ୍ଷଣିକ । ( ନିବାରଣ କରିବା )

ସୀତା—ଆର୍ଯ୍ୟପୁତ୍ରଙ୍କର ଏତାଦୃଶ ମନୋବୃତ୍ତି ଜାଣି ପାର ତାତ୍କାଳୀନ ଅବସ୍ଥା ସ୍ମରଣ କର ମୋର ହୃଦୟ ବହୁ ନାହିଁ । ଅନବଚ୍ଛିନ୍ନ ବକାର ଜନ୍ମୁଅଛି । ହାୟ ! ମୁଁ କି କରିବି ! (ମୂର୍ଚ୍ଛିତା ହେବା)

ଅନଳା—ସଖି ! ଆଶ୍ୱାସିତା ହୁଅ । ଧୈର୍ଯ୍ୟ ଧର ।

ଲକ୍ଷ୍ମଣ—ଆର୍ଯ୍ୟ ! ଆଶ୍ୱାସିତ ହୁଅ । ଧୈର୍ଯ୍ୟ ଧର ।

ରାମ—( ଆଶ୍ୱାସ ପାଇ ) ସୁଗ୍ରୀବ ! ଆପଣ ଯଦି ସଖ୍ୟ ଇଚ୍ଛା କରନ୍ତି, ତେବେ ହେଇଟି ହସ୍ତ ପ୍ରସାରିତ କରୁଅଛି ।

ସୁଗ୍ରୀବ—(ସାନନ୍ଦେ ହସ୍ତରେ ହସ୍ତ ଦେଲେ ।)

ନେପଥ୍ୟରେ—

ସ୍ରଗ୍ଧରା ବୃତ୍ତ ।

ଯା ବାଣେ ନଷ୍ଟ ହେଲା ମମ ସୁହୃଦ-ଦଶଗ୍ରୀବର ଖ୍ୟାତ-ସନ୍ଧି,
ଅଗ୍ନିକେ ସ୍ଥାପିଲା ଯେ ପୁଣି ମମ ଅରି ସୁଗ୍ରୀବ ସଙ୍ଗେ ସଖିତ୍ୱ ।
ତାହାର ଧ୍ୱଂସନାର୍ଥେ ବହିଅଛି ମୁଁ କରେ ଏ ଶିଳାଶାଳ, ମାନି,
ହେଲା ସେ ଲକ୍ଷ୍ୟ ଯେବେ ତ୍ରିଭୁବନବିଜୟୀ, ନାହିଁ ମୋ
କୀର୍ତ୍ତିହାନି । ୫୭

ସୁଗ୍ରୀବ—କଣ ! ସ୍ୱୟଂ ଆଗତ ବାଳୀ ଏପରି କହୁଅଛି ?

ହନୂମାନ୍—ହାୟ ! ସୁଗ୍ରୀବଙ୍କ ପ୍ରମାଦ ! ବାଳିର ଦୁଷ୍ଟବେଶ ଋଷ୍ୟମୂକ ଶିଖର ଛାଡ଼ି ଏହି ବନାନ୍ତରରେ ଉପସ୍ଥିତ ଅଛନ୍ତି । ଯାହାହେଉ ରାମଙ୍କର ସାନ୍ନିଧ ତାହାଙ୍କର ଅଦୃଷ୍ଟପ୍ରଦ ହୋଇଅଛି ।

ରାମ—(ସହର୍ଷେ) ଓ ! ଏହାର କଣ୍ଠନାଦ ସିଂହଧ୍ୱନି ପରି ଶୁଭୁଅଛି ।

ଲକ୍ଷ୍ମଣ—(ସକ୍ରୋଧେ) ଅରେ ରେ ଦୁରାତ୍ମନ୍ ! ମର୍କଟ ସଙ୍ଗେ ଯୁଦ୍ଧ, ଏଥିରେ ଆମ୍ଭର କେବଳ କୀର୍ତ୍ତିହାନି !

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଶ୍ରୀରାମଙ୍କ ପଦାମ୍ବୁଜେ ଭରତ ସେ ଆବେଦିଲେ ପାର୍ଥିବ ।
ପାପାତ୍ମାରୁ ଅବଶ୍ୟ ନାଶିବ ଥିଲେ ଗନ୍ତବ୍ୟମାର୍ଗେ ତବ ।
ଭ୍ରାତୃଷ୍ଟହି କ୍ଷମା ତୁଲେ ବଡ଼ରି ସେ ପାପେ ତୁ ପାପୀ ଅଛୁ ।
ଏବେ ଦଣ୍ଡକୁ ପାଇବୁ ତ୍ରିଭୁବନେ କେ ତୋର ରକ୍ଷାପଟୁ ।୪୮।

ରାବଣ—ବର୍ତ୍ତମାନ ରାମକଥା ସମାପନାର୍ଥ ମହାବଳ ବାଳୀ ଆସି ଉପସ୍ଥିତ ହେଲା । ଏତେଦିନେ ମୋର ଚନ୍ଦ୍ରଶେଖରାରାଧନ ସଫଳ ହେଲା । କିନ୍ତୁ ଏହି ବୈଧେୟ ଲକ୍ଷ୍ମଣ ବାଳକ ମଧ୍ୟ ଦଣ୍ଡ ଦେବାକୁ ସାହସ କରୁଅଛି ! କି ଆଶ୍ଚର୍ଯ୍ୟର କଥା !

ସୀତା—ଆର୍ଯ୍ୟପୁତ୍ରଙ୍କ ପ୍ରତି ସକ୍ରୋଧ ବାନରରାଜ ଆସି ଉପସ୍ଥିତ ହେଲା । ବତ୍ସ ଲକ୍ଷ୍ମଣ ନୈସର୍ଗିକ ଧୀରତ୍ୱରୁ କି ସୁନ୍ଦର ସ୍ଥୈର୍ଯ୍ୟ ଗାମ୍ଭୀର୍ଯ୍ୟ ମାଧୁର୍ଯ୍ୟଯୁକ୍ତ ବଚନରେ ଆଳାପ କଲେ ।

ପୁନରପି ନେପଥ୍ୟରେ—

ଅହୋ ! ଏହି ସୌମିତ୍ରି ସୂର୍ପଣଖା ମୁଖବିରୂପୀକରଣରେ କେବଳ ଶୂରାଭିମାନୀ ହୋଇ କଣ କହୁଅଛି !

ଉପେନ୍ଦ୍ରବଜ୍ରା ବୃତ୍ତ ।

ଘୃଣାସ୍ପଦ ନ୍ୟାୟ୍ୟ ବିରୋଧ ଦ୍ୱାରେ, ବନାଶିଲା ଏ ସତ ସଂପ୍ରହାରେ ।
ପରାକ୍ରମୀ ଯଦ୍ୟପି ଯୁଦ୍ଧରଙ୍ଗେ, ପ୍ରକାଶୁ ତା ଶକ୍ତିକି ମୋର ଆଗେ ॥

ଅଥବା ଏହି ଅକୃତପ୍ରଜ୍ଞ ତେଣେ ଥାଉ । ଭୋ ଭୋ ରଘୁକୁମାର !

ଅନୁଷ୍ଟୁପ୍ ବୃତ୍ତ ।

ସନ୍ତପ୍ତ ତୋର ହୃଦୟ ସୀତା ଶରହବହ୍ନିରେ ।
ରକ୍ତାକ୍ତ ତାକୁ କରିବ ବଦାର ମୋର ଏ ଶିଳା ।୭୦।

ରାବଣ—ଇନ୍ଦ୍ରଜିତନୟଙ୍କର ଏହି ବଚନ ଉପଯୁକ୍ତ ଅଟେ ।

ସୀତା—(ସଭୟେ) ସଖି ଅନଳେ ! ଏହା ପରେ କେ ଜାଣେ କଣ ଅବା ହୋଇଯିବ, ଏହା ଭାବି ମୋର ହୃଦୟ ଥରୁଅଛି ।

ଅନଳା—ରଘୁବୀର ଅବଶ୍ୟ ଏହାକୁ ପରାଭୂତ କରିବେ ।

ରାମ—ତେବେ ଆସ, ଏହି ଯୁଦ୍ଧୋଚିତ ପ୍ରଦେଶରେ ପ୍ରବେଶ କର । (ପ୍ରସ୍ଥାନ)

ନେପଥ୍ୟରେ—

ହାୟ ହାୟ ! ମୁଁ ହତଭାଗିନୀର ସର୍ବନାଶ ହେଲା ! ଶୁଣୁଅଛି, ଶିଳାନିକ୍ଷେପ ପୂର୍ବରୁ ଯେହି ରଘୁକୁମାର ଅତି ଲଘୁହସ୍ତରେ ଗୋଟାଏ କାଳୋରଗଭୟଙ୍କର ଶର ଛାଡ଼ିବାରୁ ମୋ କାନ୍ତ ନିହତ ହେଲେ !

ସୁଗ୍ରୀବ—ଅହୋ ! ବାଳୀ ନିହତ ହେଲା ! ଅତଏବ ତାରା
 କନ୍ଦରରୁ ବହିର୍ଗତ ହୋଇ ଆର୍ତ୍ତସ୍ୱରରେ ବିଳାପ
 କରୁଅଛି । ହେ ସୌମିତ୍ରେ ! ବର୍ତ୍ତମାନ ମୁଁ ପରିବାର ସଙ୍ଗେ
 ନେଇ ଶ୍ରୀରାମଙ୍କ ଚରଣାରବିନ୍ଦରେ ସେବା କରିବାକୁ
 ଯାଉଅଛି । (ନିଷ୍କ୍ରାନ୍ତ)

ରାବଣ—କଣ ! ରାମ ବାଳିକୁ ନିହତ କଲା ! ଏହା କିପରି
 ବିଶ୍ୱାସଯୋଗ୍ୟ ହେବ ? ଜଳ ତ ପାଷାଣକୁ ବହନ କରି
 ପାରେ ନାହିଁ ।

ନେପଥ୍ୟରେ—

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ହେଲା ଦୁନ୍ଦୁଭିଶୃଙ୍ଗ ଚୂର୍ଣ୍ଣ ଯହିଁରେ, ଯେ ହେମମାଳାଯୁତ ।
କକ୍ଷ-ସ୍ଥାପିତ ରାବଣାସୁରର ଯେ ଶୀର୍ଷପ୍ରହାର-କ୍ଷତ ।
ଯେ ତାରାସ୍ତନକୁଙ୍କୁମାଙ୍କିତ ଅଟେ, ସେ ବାଳିବକ୍ଷସ୍ଥଳ
ଧ୍ୱଂସେ, ଯେ ଶର ରାମତୂଣ୍ଣ ଗମି, ସେ କଲ୍ୟାଣଲୀଳାକର ।୭୯।

ମହାପାର୍ଶ୍ୱ—ମହାରାଜ ! ବାଳୀ ନିହତ ହେବାରୁ ସୁଗ୍ରୀବ ଅତି
 ସନ୍ତୋଷପୂର୍ବକ ଏହି ଶୁଭସମ୍ଭାବନାବୋଧକ ବଚନ
 କହୁଅଛି ।

ରାବଣ—(ସକ୍ରୋଧେ ଉଠି) ମୁଁ କଠୋର ଯୁଦ୍ଧସମ୍ମର୍ଦ୍ଦରେ
 ଦିକ୍ପାଳଦଳକୁ ଦଳନ କରିଅଛି । ମୋ ନାମ ରାବଣ ।
 ଅସମ୍ଭାବିତାର୍ଥର ଅଭିନୟକାରିଣୀ ଏହି ଅପ୍ସରମାନଙ୍କର

କେଶ କର୍ତ୍ତନ ନିମନ୍ତେ କାହାଁକୁ ଅବା ଆଦେଶ ଦେବ ନାହିଁ ?

ମହାପାର୍ଶ୍ୱ—( ସାଞ୍ଜଳିହସ୍ତେ ) ମହାରାଜ ! କ୍ଷମା କରନ୍ତୁ, କ୍ଷମା କରନ୍ତୁ । ଏହି ପ୍ରେକ୍ଷଣିକକୁ ଭଗବାନ୍ ଶୁକ୍ର ରଚିଅଛନ୍ତି, ଏଥିରେ ମିଥ୍ୟାପ୍ରବୃତ୍ତି କିଛି ନାହିଁ ।

ରାବଣ—(ସ୍ୱଗତ) ତାହାହେଲେ ଏସବୁ ସତ୍ୟ ? (ପ୍ରକାଶତଃ ସଦୁଃଖେ) ହା ମମ ପ୍ରିୟସୁହୃଦ ! ହା ଦୁନ୍ଦୁଭିଦାନବାହବ-ପ୍ରକାଶିତଉଦ୍ଦଣ୍ଡଦୋର୍ଦ୍ଦଣ୍ଡପ୍ରଚଣ୍ଡବିକ୍ରମ ! ହା ବାନର-ଚକ୍ରବର୍ତ୍ତିନ୍ !

ପୃଥ୍ୱୀ ବୃତ୍ତ ।

ବିରାଧ ହତ ହୋଇଲା, ଖର ବିସର୍ଜିଲା ପ୍ରାଣକୁ ।
ତଥାପି ବିଜୟସ୍ପୃହା ରଖିଲ ଗୃହିଁ ତୋ ଠାଣକୁ ।
ତୁ ସେପରି ଦଶାବଶେ ଯଦି ସମୀକରେ ପାରୁକ ।
ବଳୀ ଅଟଇ ସେ ସତେ ପୁଣି ନିଶାଟବୃନ୍ଦାନ୍ତକ ।୬୩।

ଲକ୍ଷ୍ମଣ—ଆର୍ଯ୍ୟ ବାଳିନିଧନ ନିଷ୍କନ୍ଧ କରି ପ୍ରତିନିବୃତ୍ତ ହେଉଅଛନ୍ତି ।

ରାମଙ୍କର ପ୍ରବେଶ ।

ରାମ—ବତ୍ସ ଲକ୍ଷ୍ମଣ ! ଏକ୍ଷଣି କିଷ୍କିନ୍ଧାର ରାଜାସନରେ ସପରିବାର ସୁଗ୍ରୀବଙ୍କୁ ଅଭିଷିକ୍ତ କରିଦିଅ । ତଥାତ ଅଙ୍ଗଦଙ୍କୁ ଯୁବରାଜ କର ।

ଲକ୍ଷ୍ମଣ—ଆର୍ଯ୍ୟ ଦୀନଦୟାଳୁ ଅଟନ୍ତି ।

ସୀତା—ଏହା ଯଥାର୍ଥ, କିନ୍ତୁ ମୁଁ ଦୀନା ଅଟେ, ଏହା ଆର୍ଯ୍ୟପୁତ୍ର କିଣ ଜାଣୁ ନାହାନ୍ତି ?

ଅନଳା—ସଖି ! ଏପରି କିଣ କହୁଅଛ ? ଏହି ଦୁଃସାଧ୍ୟ ରଣ-ଭୟୁଙ୍କର ବାଳକୁ କି ନିମିତ୍ତ ଯୁଦ୍ଧରେ ନିହତ କଲେ ?

ନେପଥ୍ୟରେ—

ଇନ୍ଦ୍ରସୂନୁ ବାନରାଧିପ ବାଳୀ ସଂଗ୍ରାମରେ ବିନଷ୍ଟ ହେବାରୁ ତଦୀୟ କନିଷ୍ଠ ସୁଗ୍ରୀବ ସମ୍ପ୍ରତି ଶ୍ରୀରାମଚନ୍ଦ୍ରଙ୍କ ଆଦେଶାନୁସାରେ ରାଜ୍ୟରେ ଅଭିଷିକ୍ତ ହୋଇ ଜାନକୀ ଅନ୍ୱେଷଣାର୍ଥ ସୈନ୍ୟ ପ୍ରେରଣ କରୁଅଛନ୍ତି ।

ରାମ—ଏହା ତ ମୋର ପ୍ରିୟ କଥା । ବତ୍ସ ଲକ୍ଷ୍ମଣ ! ଜାନକୀ ଦର୍ଶନ ବୃତ୍ତାନ୍ତର ଅବଗତି ପର୍ଯ୍ୟନ୍ତ ଏହି ପ୍ରସ୍ରବଣ ଗିରିରେ ନିବାସ କରିବାକୁ ହେବ ।

ଦୁହେଁ ନିଷ୍କ୍ରାନ୍ତ ।

ରାବଣ—(ବିଚାରପୂର୍ବକ) ଏଥିରେ ଆମ୍ଭର କର୍ତ୍ତବ୍ୟ ପ୍ରତି-ବିଧାନ କିଣ ?

ସୀତା—(ସାନନ୍ଦେ) ଅନଳେ ! ନିଶ୍ଚେ ତୁମେ ତଥ୍ୟଭାଷିଣୀ ଅଟ ।

ପୁନରପି ନେପଥ୍ୟରେ—

ସଖେ ଶୁକ ! ଦେଖୁ ନାହଁ କି ? ବର୍ତ୍ତମାନ ହନୂମାନ୍ ଜଟାୟୁଅଗ୍ରଜ ସମ୍ପାତି ବାକ୍ୟରୁ ସୀତାର ସଂସ୍ଥାନ ଜାଣି ପାରି ଲଙ୍କାବଦ୍ଧକାରେ ଅମ୍ଭୋଧି ଉତ୍ତୀର୍ଣ୍ଣ ହେଲା ।

ପୁନରପି ନେପଥ୍ୟରେ—

ସଖେ ! ଶାର୍ଦ୍ଦୂଳ ! ଅମ୍ଭେମାନେ ଯାହା ଯାହା ଦେଖି-ଅଛୁଁ, ମହାରାଜ ଲଙ୍କେଶ୍ୱରଙ୍କୁ ଶୀଘ୍ର ନିବେଦନ କରିବା ଆସ ।

ରାବଣ—କଣ ! ପ୍ରେଷିତ ଶୁକ ଶାର୍ଦ୍ଦୂଳ ଦୁହେଁ ଏପରି ସଂଲାପ କରୁଅଛନ୍ତି ? ଅହୋ ! ରାମ ପ୍ରଭୃତି ଚରପ୍ରେଷଣର କଥା ମଧ୍ୟ ପାସୋରି ଦେଇଅଛୁ ! (ସ୍ୱଗତ୍ରପୂର୍ବକ)

ଅନୁଷ୍ଟୁପ୍ ବୃତ୍ତ ।

ଜାନକୀ ପ୍ରୀତି ଇଚ୍ଛାରେ ଶୋଇବାରୁ ସଦା ଗୃହେ
କାର୍ଯ୍ୟାନୁସନ୍ଧାନାର୍ଥେ ମୋ ମନ୍ତ୍ରିଙ୍କ ଏ ଉପାୟ କି ? ।୬୩ ।

ମହାପାର୍ଶ୍ୱ—(ସସ୍ମିତେ) ମହାରାଜ ! ଏହି ପ୍ରେକ୍ଷଣିକଟି ଏହି ନିମିତ୍ତ କେବଳ ପ୍ରଦର୍ଶିତ ହେଲା ।

ସୀତା—( ଅନଦ୍ଧାତିଶଙ୍କ୍ୟେ ) ସଖି ଅନଳେ ! ଶୁଣାଯାଏ, ହନୂମାନ୍ ସମୁଦ୍ର ଉଲ୍ଲଂଘି ଆସିଅଛନ୍ତି । ଆସ, ଆମ୍ଭେ ଦୁହେଁ ଅଶୋକବନିକାରୁ ବାହାରିଯିବା ।

ଉଭୟେଁ ନିଷ୍କ୍ରାନ୍ତ ।

ରାବଣ—ମହାପାର୍ଶ୍ୱ ! ତେବେ ପରିଜନମାନଙ୍କୁ ଏହି ଆଦେଶ ଦିଆଯାଉ ।

ସ୍ରଗ୍ଧରା ବୃତ୍ତ ।

ପାଣିନ୍ଧାଧାର ଶୋଷି, ପ୍ଲବଗବଳ ପଥେ ଯେ ପଳୀ ବୃକ୍ଷ ପୂର୍ଣ
ନିଃଶେଷ ଧ୍ୱଂସି, ଅଭ୍ରଂଲିହବରଣ ତଥା କଣ୍ଠକେ ଖଦ ବେଗ ।
ଲଙ୍କାଦେବୀଙ୍କଠାରେ କହ ନ ପଶୁ ହନୁମାନ ଏବେ ପୁଷ୍ପରେ
ଯାହା ମୋ କ୍ଷେମ ତାହା କରିବ ସଯତନେ ମନ୍ତ୍ରିମନ୍ତ୍ରାନୁସାରେ ॥

ଏହା କହି ମହାପାର୍ଶ୍ୱ ସହ ନିଷ୍କ୍ରାନ୍ତ ।



ଷଷ୍ଠ ଅଙ୍କ ସଂପୂର୍ଣ୍ଣ ।



# ସପ୍ତମ ଅଙ୍କ ।



## ସୂର୍ପଣଖାର ପ୍ରବେଶ ।

ସୂର୍ପଣଖା—(ସଶୋକେ ଉରସ୍ତାଡ଼ନପୂର୍ବକ) ହାୟ ! ଆର୍ଯ୍ୟ ଦଶଗ୍ରୀବ ! ଆର୍ଯ୍ୟ କୁମ୍ଭକର୍ଣ୍ଣ ! ବତ୍ସ ମେଘନାଦ ! ତୁମ୍ଭେମାନେ ମଧ୍ୟ ଏତେତବେଗି ମୃତ୍ୟୁମୁଖରେ ପଡିଗଲ ! ହା ଅତିକାୟ ! ହା ତ୍ରିଶିର ! ହା ଦେବାନ୍ତକ ! ନରାନ୍ତକ ! କୁମ୍ଭ ! ନିକୁମ୍ଭ ! ତୁମ୍ଭେମାନେ ବତ୍ସ ଅକ୍ଷୟକୁମାର ସହିତ କଥାବଶେଷ ହୋଇଗଲ ଯେ ! ହାୟ ! ହାୟ ! ମୁଁ ବଡ଼ ମନ୍ଦଭାଗିନୀ, ଏବେ କଣ କରିବି ? ପୂର୍ବେ ହନୁମାନର ଲାଙ୍ଗୁଳ ଅଞ୍ଚଳରେ ପ୍ରଜ୍ୱଳିତ ଅଗ୍ନି ଲାଗି ଲଙ୍କାପୁରର ଗୃହ ସବୁ ଯେପରି ଜଳି ଉଠିଥିଲା, ବର୍ତ୍ତମାନ ମୋର ହୃଦୟ ସେପରି ପୋଡ଼ୁଅଛି, ସହି ହେଉ ନାହିଁ । ତଥାପି ମୁଁ ସ୍ତ୍ରୀ ହୋଇ ମଧ୍ୟ ସମ୍ପ୍ରତି ରାକ୍ଷସକୁଳାନ୍ତକ ସେହି ରାଜପୁତ୍ର ଦୁହିଙ୍କର ଯଥାଶକ୍ତି ପ୍ରତୀକାର କରିବି । (ଆଗକୁ ଚାହିଁ) କୁମାର ବିଭୀଷଣର ମନ୍ତ୍ରୀ ସମ୍ପାତି ପୁଷ୍ପକ ବିମାନ ଧରି ଆସି ହେଉଛି ଅବଶ୍ୟ ସୁଗ୍ରୀବ ଶିବିରରେ ଉପସ୍ଥିତ ଅଛି । ଏହି ସମ୍ପାତି କେବଳ ବିଭୀଷଣକୁ ଶତ୍ରୁପକ୍ଷରେ ପ୍ରବେଶ କରାଇ ଲଙ୍କାପୁରକୁ ଛାରଖାର କରିଅଛି । ବିଭୀଷଣ ସନ୍ତତ ରାକ୍ଷସକୁଳର

ଶତ୍ରୁଙ୍କ କାର୍ଯ୍ୟମାନ କରେ ବୋଲି ତାହାର ରାଜ୍ୟଲାଭ
ମୋର ସନ୍ତୋଷଜନକ ନୁହେ ।

ତଦନନ୍ତର ସମ୍ପାତିର ପ୍ରବେଶ ।

ସମ୍ପାତି—(ସବହୁମ୍ୱେ)

ସ୍ରଗ୍ଧରା ବୃତ୍ତ ।

ଆହା ରାମଙ୍କ ବାହା-ବଳ କି କହିବ ଯେ ସାଗରେ ସେତୁ ପାତି
ତନ୍ମାର୍ଗେ ଆସି ଯୁଦ୍ଧେ ଖିଳବଳ ସହିତେ ବଂଶବାହା ନପାତି ।
ସେ ସଂକଳ୍ପି ପ୍ରତିଜ୍ଞା ଅନୁଗତ ଶରଣ-ପ୍ରାର୍ଥି-ସଂରକ୍ଷଣାର୍ଥ
ଲଙ୍କାରାଜ୍ୟାଧିଲକ୍ଷ୍ମୀ ତଦନୁଜ ଦନୁଜେ କଳ୍ପିଲେ ସମ୍ପ୍ରଦତ୍ତ ।୧।

(ପାର୍ଶ୍ୱତଃ ଦୂରରେ ଦୃଷ୍ଟି ନକ୍ଷେପି ) ଏହି ତ ସେହି
ସୂର୍ପଣଖା; ଅତି ଦୁଃଖିତା ଦିଶୁଅଛି । ବୋଧହୁଏ ଧର୍ମାତ୍ମା
ବିଭୀଷଣଙ୍କର ରାଜ୍ୟଲାଭ ଏହି କ୍ରୂରାର ସ୍ୱଭାବତଃ
ଅଭିମତ ନୁହେ । ଅତଏବ ଏପରି ଦୁଃଖିତା ହୋଇ-
ଅଛି । ଆଚ୍ଛା ହେଉ ପଚାରି ବୁଝି ନେବି । ଅୟି
ସୂର୍ପଣଖେ ! କି କାହିଁକି ? ଏପରି ବ୍ୟାକୁଳହୃଦୟା
ଦିଶୁଅଛ ?

ସୂର୍ପଣଖା—( ସ୍ୱଗତ ) ଆମର ତ ସମସ୍ତ ଲୋକେ ନହତ
ହେଲେଣି, ତୁ ପୁଣି କାହିଁକି ଜୀଇଁଅଛୁ ? (ପ୍ରକାଶତଃ)
ଲଙ୍କେଶ୍ୱରବିଜୟୀ ରଘୁନାଥଙ୍କ ଆଦେଶରେ ତଦାୟ
ଦର୍ଶନାର୍ଥ ଉତ୍କଣ୍ଠିତା ସୀତାଙ୍କର ପ୍ରସ୍ଥାନ ସମୟରେ

ସମ୍ମୁଖରେ ମୁଁ ଯାଉଥିଲି । ଗନ୍ଧନାସିକା ବୋଲି ବେତ୍ର-
ହସ୍ତ ମୋତେ ଦୂରକୁ ତଡଦେଲା ।

ସମ୍ପାତ—ତୁମେ ତ ଗନ୍ଧନାସିକା, ଅତଏବ ସେ ତଡ଼ ଦେଇ-
ଅଛି । ପ୍ରସ୍ଥାନ ସମୟରେ ପୂର୍ବୋକ୍ତିନୀ ଗନ୍ଧନାସିକାର
ମୁଖାବଲୋକନ ଭାବି-ଦୁଃଖଦାୟକ, ଏହା ନିମିତ୍ତ-
ବଦମାନେ ମଧ୍ୟ କହନ୍ତି । ଏହି ନ୍ୟାୟସଂଗତାର୍ଥରେ
ତୁମ୍ଭର ଏଡ଼େ ବୈମନସ୍ୟ କାହିଁକି ? ଦେଖ, ଚନ୍ଦ୍ରକୁ
ଚକୋରୀ ପରି ରାମଚନ୍ଦ୍ରଙ୍କୁ ଦେଖିବା ନିମିତ୍ତ ସୀତା
ଏକାନ୍ତ ଉନ୍ମନା ଥିଲେ ସୁଦ୍ଧା ତୁମ୍ଭ ମୁଖାବଲୋକନ
ଦୋଷରୁ ଦର୍ଶନ ସମୟରେ ରାମଚନ୍ଦ୍ର ତାହାଙ୍କୁ ନିଷ୍ଠୁର
ବଚନରେ ଅଗ୍ନି-ପ୍ରବେଶ କରାଇଥିଲେ । କିନ୍ତୁ
ଭଗବାନ୍ ହୁତାଶନ "ସୀତା ସମ୍ପୂର୍ଣ୍ଣ ପରିଶୁଦ୍ଧା" ଏହା
କହି ରାମଙ୍କ ଛାମୁରେ ସମର୍ପଣ କରିଅଛନ୍ତି ।

ସୂର୍ପଣଖା—ଅଚ୍ଛା ହେଉ, ବର୍ତ୍ତମାନ ସ୍ୱାମୀ ରାମଚନ୍ଦ୍ର ଆଉ
କଣ କରିବାର ଇଚ୍ଛା କରୁଅଛନ୍ତି ?

ସମ୍ପାତ—ଆଉ ଅନ୍ୟ କଥା କଣ କରିବେ ?

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଲଙ୍କାଧୀଶ ବନାଶି ବାରଣ ଯଥା ଯୂଥାଙ୍ଗଣେ କେଶରୀ,
ବହ୍ନି ସ୍ୱଚ୍ଛ, ସୁବର୍ଣ୍ଣ–ଭୂଷଣସମା କ୍ଷୌଣୀସୁତା ସ୍ୱୀକରି;

ସୂର୍ପଣଖା—(ସ୍ୱଗତ) ସମ୍ପ୍ରତି ବିଧାତା ତାହାର ଅନୁକୂଳ ତଥାପି
ରାବଣର ପ୍ରତିକୂଳ ହୋଇଅଛି । ଏଥିକି ମୁଁ କଣ କରିବି ?

ସଙ୍ଗେ ସୈନ୍ୟ ଧରି ସ୍ୱରାଜ୍ୟ ଗମନେ ଇଚ୍ଛା କଲେ ପାବନୀ,
ଅଗେ ସେ ଭରତଙ୍କଠାରୁ ଅଧୁନା ବାର୍ତ୍ତା ନାଏ ପାବନ । । ୨ ।

(ଏହା କହି ନିଷ୍କ୍ରାନ୍ତ)

ସୂର୍ପଣଖା—(ହର୍ଷପୂର୍ବକ) ହନୂମାନ୍ ସନ୍ଦେଶ ନ ଦେବା-
ପୂର୍ବରୁ ମୁଁ ଯାଇ ଭରତଙ୍କୁ କୌଣସି ପ୍ରକାର ଅପ୍ରିୟ
କଥା କହିବି । ତାହା ଶୁଣି ସାନୁଜ ଭରତ ଅବଶ୍ୟ
ଦେହତ୍ୟାଗ କରିବ । ତାହାହେଲେ ରାମବନାଶିତ
ମଦୀୟ ଭ୍ରାତୃଦ୍ୱୟର ପ୍ରତୀକାର ହେବ । (ଏହି ହର୍ଷରେ
ନିଷ୍କ୍ରାନ୍ତ)

ବିଷ୍କମ୍ଭ ।



ଅନନ୍ତର ଭରତ ଓ ତଦନୁଗ ଶତ୍ରୁଘ୍ନଙ୍କର ପ୍ରବେଶ ।

ଭରତ—ବତ୍ସ ଶତ୍ରୁଘ୍ନ !

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଶ୍ରୀ ଆର୍ଯ୍ୟଙ୍କ କଳବର୍ଷେର ହଇଛେ ଏବେ ମହାଦେଶରେ
ଯୁଦ୍ଧେ ସଂହରିବାକୁ ସୋଣ୍ଡୁ କହୁଛେ ସମ୍ପ୍ରାପ୍ତ ଏ ଦେଶରେ
ତ୍ରୈଲୋକ୍ୟ ଦ୍ରବିଡ଼ାନ୍ଧ୍ର ମଦ୍ର ମଗଧାଧୀଶାଦି ରାଜାଗଣେ
ସଶ୍ରଦ୍ଧେ ବିବଧୋପହାର ସହିତେ ସତ୍କାର ଏହିକ୍ଷଣେ । ୩ ।

ମୁଁ ଯାଉଅଛି ସେମାନଙ୍କ ଉପାହୃତ ଉପାୟନମାନ
ଆର୍ଯ୍ୟଙ୍କ ପାଦୁକାଯୁଗଳ ସମ୍ମୁଖରେ ସମର୍ପଣପୂର୍ବକ
କୋଷଗୃହରେ ନିହିତ କରାଇବି ।

ଶତ୍ରୁଘ୍ନ—ଆର୍ଯ୍ୟ ! ଆପଣଙ୍କ ଆଦେଶମତେ ଇତଃପୂର୍ବରୁ ସମାଗତ ରାଜାମାନେ ଯଥୋଚିତ ସତ୍କୃତ ହୋଇଅଛନ୍ତି । ଆପଣ ମଧ୍ୟ ତଦୁପସ୍ଥାପିତ ଉପହାରଗୁଡ଼ିକ ପ୍ରଥମତଃ ଆର୍ଯ୍ୟବର୍ଯ୍ୟଙ୍କ ପାଦୁକାଯୁଗଳ ସନ୍ନିଧିରେ ସମର୍ପଣ କରି କୋଷାଗାରରେ ସଂସ୍ଥାପିତ କରାଇଅଛନ୍ତି । ପୁନରପି କି ହେତୁରୁ ଏପରି ଆଦେଶ ଦେଉଅଛନ୍ତି ?

ଭରତ—ଆଃ ! ସମସ୍ତ ବିସ୍ମୃତ ଥିଲି । ତାତପାଦଙ୍କ ପ୍ରିୟପୁତ୍ର ଆର୍ଯ୍ୟଦେବଙ୍କ କେବେ ଅବା ସନ୍ଦର୍ଶନ କରି ନେତ୍ରକୁ ପରିତୃପ୍ତ ଆଉ ହୃଦୟକୁ ଶୀତଳ କରିବ ? ଏହି ଚିନ୍ତାରେ ଅନବରତ ଏକାନ୍ତ ଆସକ୍ତ ରହି, ହାୟ ହାୟ ! ମୁଁ କୃତ କାର୍ଯ୍ୟମାନ ସୁଦ୍ଧା ପାସୋରି ଦେଉଅଛି । ବତ୍ସ ଶତ୍ରୁଘ୍ନ ! ଅତଏବ ତୁମ୍ଭେ କ୍ରିୟାକଳାପରେ ସନ୍ତତ ସାବଧାନ ରହିଥାଅ ।

ଶତ୍ରୁଘ୍ନ—ଆର୍ଯ୍ୟଙ୍କ ଆଦେଶ ଶିରସା ବହନ କରୁଅଛି ।

ଭରତ—(ସ୍ମରଣପର୍ବକ ସର୍ବେଦିନେ୍ୟ) ବତ୍ସ ଶତ୍ରୁଘ୍ନ !

ସ୍ରଗ୍ଧରା ବୃତ୍ତ ।

ଧୌତ ପ୍ରତ୍ୟଗ୍ର ବଲ୍କାଂଶୁକ କଟିର ତଟେ ଶୀର୍ଷ ଆହା ଜଟାଳ ।
ଦେହେ ବୈରାଗ୍ୟଲକ୍ଷ୍ମୀ ଧରି କରଯୁଗଳେ ଭଦ୍ର ରୁଦ୍ରାକ୍ଷ ମାଳ ।
ଶ୍ରୀରାମ ବ୍ୟାଘ୍ରଚର୍ମାସନ ଉପରି ସମାସୀନ ସେ ପର୍ଣ୍ଣଶାଳେ ।
ଆହା ହା ! ପୂର୍ବଦୃଷ୍ଟ ସ୍ମୃତ ହୁଅଇ ସଦା ମର୍ମନିର୍ଭିନ୍ନ ଶଲ୍ୟେ ।୪।

ଶତ୍ରୁଘ୍ନ—(ସବାଷ୍ପକଣ୍ଠେ) ସାର୍ବଭୌମଙ୍କ ଜ୍ୟେଷ୍ଠପୁତ୍ର ଦ୍ୱାଦଶ

ମହାନୁଭବ ରାମଚନ୍ଦ୍ରଙ୍କର ତାଦୃଶୀ ଦୈବକୃତ ଦୁର୍ଦ୍ଦଶାକୁ
କିଏ ଅବା କିପରି ପାସୋରି ପାରିବ ?

ଭରତ—(ସଶୋକୋଦ୍ବେଗେ) ହା ବିଧାତା !

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

କଣ୍ଟାକର୍କଶକୀଟ ଶର୍କରବତୀ କାନ୍ତାର ଦୁଷ୍ଟବତୀ
ନିତ୍ୟ ଆଦର ଅମ୍ଳତୁବରଫଳେ ଶାଖୀର ପର୍ଯ୍ୟାପତ ।
ବିସ୍ତୀର୍ଣ୍ଣ ଦ୍ରୁମପର୍ଣ୍ଣ–ଦୂଷିତଜଳେ ଅହା ! ପିପାସା ହରି
କାଳ କ୍ଷେପି ରହନ୍ତି ଲୋକପତି ସେ ଧୂଳିର ଶଯ୍ୟା କରି ।୫।

(ମୂର୍ଚ୍ଛିତ ହେବା)

ଶତ୍ରୁଘ୍ନ—ଆର୍ଯ୍ୟ ! ଆଶ୍ୱାସିତ ହୁଅନ୍ତୁ । ଜ୍ୟେଷ୍ଠ ଆର୍ଯ୍ୟଙ୍କର
ସେହି ଘୋର ଦଶାପରିଣାମ ଆଉ ସ୍ମରଣ କରନ୍ତୁ ନାହିଁ ।

ଭରତ—(ଆଶ୍ୱସ୍ତ ହୋଇ) ହାୟ ହାୟ !

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଅହା ରତ୍ନକିରୀଟଯୋଗ୍ୟ ଶିରରେ ଭୂଷା ଜଟାମଣ୍ଡଳ ।
ଅହା ପଟ୍ଟଦୁକୂଳଯୋଗ୍ୟ କଟିରେ ବନ୍ଧା ହୁଏ ବଳ୍କଳ ।
ଯେ ନିତ୍ୟ ମଣିହର୍ମ୍ମ୍ୟଶୃଙ୍ଗ ଉପରେ କ୍ରୀଡ଼ନ୍ତି ସନ୍ତୋଷରେ ।
ଏବେ ସେ ରଘୁନାଥ ଦେବ ଉଟଜେ ବସନ୍ତି ସୀତା ତୁଲେ ।୬।

ହାୟ ହାୟ ! ମୋର ଏହି ବଜ୍ରକଳ୍ପ ହୃଦୟ ସହସ୍ରଧା
ବିଦୀର୍ଣ୍ଣ ହୋଇ ଯାଉ ନାହିଁ !

(ଲୋତକ ବୁହାଇ ସଗଦ୍ଗଦେ)

ମନ୍ଦାକ୍ରାନ୍ତାବୃତ୍ତ ।

ଆର୍ଯ୍ୟା ସୀତା କପ ଜଇଁ ଥିବେ କ୍ରୂର ଦୈତେୟ-ମୀତା ।
କମ୍ପା କଷ୍ଟେ ଯଦ ରହିଥିବେ ପ୍ରାଣରେ ବନ୍ଧୁ, ଖ୍ରୀତା ।
ଶ୍ରୀରାମାଦ ସ୍ୱଜନମୁଖ-ସନ୍ଦର୍ଶନାଭ୍ରିବୁ ସତ୍ୟ ।
ପଶ୍ଚୋଲ୍ଲାସେ ନକ୍ତ ବରଜବେ ଦୁର୍ନିବାରାଶ୍ରୁ ନତ୍ୟ । ୭ ।

ଶତ୍ରୁଘ୍ନ—ଆର୍ଯ୍ୟ ! ଏପରି ତ ଦୈବର ଦୁର୍ବିଳାସ, ଅମ୍ଭେମାନେ କଣ କରିବା ?

ଭରତ—ହାୟ ! କେଡ଼େ ଦାରୁଣ କଷ୍ଟ ଯେ !

ଅନୁଷ୍ଟୁପ୍ ବୃତ୍ତ ।

ରକ୍ଷୋନୀତା ମୈଥିଳୀଙ୍କ ଆଉ ଅନ୍ୟ ଗୁଣାବଳୀ
ସ୍ମରି ସୌନ୍ଦର୍ଯ୍ୟ ସ୍ମରିବ ଧୀର ଆର୍ଯ୍ୟ କି ବଞ୍ଚିବେ ? । ୮ ।

ସମ୍ପ୍ରତି ମୁଁ ମନ୍ଦଭାଗଧେୟର କି କର୍ତ୍ତବ୍ୟ ?

ଶତ୍ରୁଘ୍ନ—ଧୈର୍ଯ୍ୟ ଧରନ୍ତୁ ! ରାଜାମାନଙ୍କୁ ଯଥାସ୍ଥାନକୁ ପଠାଇ ଦେବାପାଇଁ ଆଦେଶ ଦିଅନ୍ତୁ ।

ଭରତ—(ବିଚାରପୂର୍ବକ) ଏ କଣ ! ନିଶ୍ଚିତ ବିଷୟର ଅନ୍ୟଥା-କରଣ କିପରି କରାଯିବ ? ବର୍ତ୍ତମାନ ମୋତେ ଶତ୍ରୁ-ନାଶାର୍ଥ ରାଜାମାନଙ୍କ ସହିତ ଆର୍ଯ୍ୟଙ୍କ ସମୀପକୁ ଯିବାକୁ ହେବ ତ ?

ଶତ୍ରୁଘ୍ନ—ଆର୍ଯ୍ୟ ! ଆପଣ ଜ୍ୟେଷ୍ଠ ଆର୍ଯ୍ୟଙ୍କର ଭୂତପୂର୍ବ ଚରିତ ଶୁଣି ନାହାନ୍ତି କି ?

ଭରତ—କଣ ତାହା ?

ଶତ୍ରୁଘ୍ନ—ନିଷାଦାଧିପତି ଗୁହ ପତ୍ର ପଠାଇଅଛନ୍ତି ।

ଭରତ—ବନଚର ଚାରମାନଙ୍କ ସହ ଦଣ୍ଡକାରଣ୍ୟରେ ପ୍ରବେଶ କରି ଆର୍ଯ୍ୟଙ୍କ ବାର୍ତ୍ତା ବୁଝି ନେବାପାଇଁ ଗୁହ ମଧ ମୋର ଆଦିଷ୍ଟ ହୋଇଥିଲେ । ଅତଏବ ଇତଃପୂର୍ବେ ସେ ଜାଣି ପାରି କହି ପଠାଇଥିଲେ କି, ରାବଣ ମାୟାମୃଗର ରୂପ ଓ ବଚନରେ ଯଥାକ୍ରମେ ମୋହିତ ରାମ ଓ ଲକ୍ଷ୍ମଣଙ୍କ ଅତି ଦୂରକୁ ନେଇଯାଇ ଭିକ୍ଷୁକରୂପରେ ସୀତାଙ୍କୁ ଅପହରଣ କରିଅଛୁ । ଇତି । ତା ପରେ ବର୍ତ୍ତମାନ ପତ୍ରିକାରେ କଣ ଲେଖିଅଛନ୍ତି ?

ଶତ୍ରୁଘ୍ନ—ଲକ୍ଷ୍ମଣୈକସହାୟ ଆର୍ଯ୍ୟଙ୍କର ଏବେ ଆଉ ଅନ୍ୟ ସହାୟର ଅପେକ୍ଷା ନାହିଁ । ଶତ୍ରୁମାନଙ୍କୁ ନିହତ କରି ସୀତାଙ୍କ ଅନ୍ୱେଷଣ ବିଷୟରେ ସସୈନ୍ୟ ସୁଗ୍ରୀବ ସହାୟ ହୋଇଅଛନ୍ତି । ଅତଏବ ରାଜାମାନଙ୍କୁ ଯଥାସ୍ଥାନକୁ ପଠାଇ ଦିଅନ୍ତୁ । ଇତି ।

ଭରତ—ସୁଗ୍ରୀବ କିଏ ? ସେ କିପରି ସହାୟ ହେଲେ ?

ଶତ୍ରୁଘ୍ନ—ବାନରକୁଳଚକ୍ରବର୍ତ୍ତୀ କିଷ୍କିନ୍ଧାଧିପତି ବାଳିଙ୍କର କନିଷ୍ଠ ଭ୍ରାତାଙ୍କ ନାମ ସୁଗ୍ରୀବ । ବାଳିବିନାଶନରେ ତାହାଙ୍କୁ ରାଜ୍ୟରେ ଅଭିଷିକ୍ତ କରିବାରୁ ଆର୍ଯ୍ୟଙ୍କର ସହାୟ ହୋଇଅଛନ୍ତି । ତଥାଚ ସଂକ୍ଷେପତଃ ଗୁହ ଏହା ଲେଖି-ଅଛନ୍ତି । ଆର୍ଯ୍ୟ ଶୁଣନ୍ତୁ—

ଭରତ—କଣ ଲେଖିଅଛନ୍ତି ?

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

କୀଶବ୍ରାତର ଈଶ ନାଶି ଇଷିତେ ସୁଗ୍ରୀବକୁ ସ୍ନେହରେ
ଦେଲେ ଅର୍ଯ୍ୟ ନୃପତ୍ନ, ମିଦଧରମେ ସେ ସୈନ୍ୟ ପେଶି ତ୍ବରେ
ଅନ୍ବେଷାଇ ଜବା ମଲମ୍ଳୁତ-ପୁରୀ ରାମଙ୍କୁ ବଞ୍ଚିପିଲେ,
ଯାସ୍ବାର ଅପାର ସେତୁ ରଚ ତା ଅବାସ ନରୋଧିଲେ । ୯ ।

ଭରତ—(ସବିଚାରପୂର୍ବକ) ବତ୍ସ ! ଏହା ସମ୍ଭବ ଅଟେ । କାରଣ ଏକଦା ଅଣ୍ଠର୍ଯ୍ୟତଃ ଅନ୍ୟୋନ୍ୟ ଆଳାପକାରୀ ଖେଚର-ମାନଙ୍କ ମୁଖରୁ ମୁଁ ମଧ ଶୁଣିଅଛୁ—

ଶତ୍ରୁଘ୍ନ—କଣ ଶୁଣିଅଛନ୍ତି ?

ଭରତ—

ଇନ୍ଦ୍ରବଂଶା ବୃତ୍ତ ।

ସୁଗ୍ରୀବସଂପ୍ରାର୍ଥିତ-ରାଜନନ୍ଦନ
ବନାଶିଲେହେଁ ନଜ ବୀରନନ୍ଦନ ।
ନ ହୋଇଲେ ଦୁଃଖିତ ପାକଶାସନ
ସ୍ବକାର୍ଯ୍ୟ ହେବାର ମନେ ବିଚାରଣା ୧୦ ।

ଶତ୍ରୁଘ୍ନ—ତେବେ ବାଳୀ ଇନ୍ଦ୍ରଙ୍କର ପୁତ୍ର ହୋଇଥିବେ, କିନ୍ତୁ ଏଥିରେ ଦେବରାଜଙ୍କର କାର୍ଯ୍ୟାର୍ଥିତା କଅଣ ? ତାହା ଜଣା ଯାଉ ନାହିଁ ।

ଭରତ—ବତ୍ସ ! ଅଧିକରି ମଧ କିଛି ଶୁଣିଅଛି ।

ଶତ୍ରୁଘ୍ନ--ଆର୍ଯ୍ୟ ! ଅନୁଗ୍ରହପୂର୍ବକ ତାହା ମଧ ପ୍ରକାଶ କରନ୍ତୁ ।

ଭରତ--

ଅନୁଷ୍ଟୁପ୍ ବୃତ୍ତ ।

ନୁହେ ଦୃଷ୍ଟଶ୍ରୁତଚର କେଉଁଠାରେ କଦାଚନ ।
ଶତ ଯୋଜନ ପର୍ଯ୍ୟନ୍ତ ସମୁଦ୍ରେ ସେତୁବନ୍ଧନ । ୧୧ ।

ଶତ୍ରୁଘ୍ନ—ଆର୍ଯ୍ୟ ! ମୁଁ ଅନୁମାନ କରେଁ, ତଦନନ୍ତର କପି ରାକ୍ଷସବାହିନୀ ମଧ୍ୟରେ ଯୁଦ୍ଧ ମଧ ପ୍ରବୃତ୍ତ ହେଲା । କାରଣ ଏହି ଯେ, କୌଣସି ଏକ ଦିବସରେ ପ୍ରବାହିତ ପ୍ରଚଣ୍ଡ ବାତକୁ ମରୁତୋତ୍ପାତ ଭିବ ତଦୀୟ ଶାନ୍ତି-କରଣ ଜିଜ୍ଞାସାରେ ଅର୍ଯ୍ୟ ରାମଚନ୍ଦ୍ରଙ୍କର ପ୍ରିୟସଖ ପିଙ୍ଗଳଙ୍କ ପୂଜ୍ୟପାଦ ବଶିଷ୍ଠଙ୍କ ଆଶ୍ରମକୁ ପଠାଇଥିଲି । ସେ ତାହାଙ୍କୁ ଏପରି କହିଥିଲେ ।

ଭରତ—କଣ କହିଥିଲେ ?

ଶତ୍ରୁଘ୍ନ--ସେ କହିଥିଲେ କି—

ବସନ୍ତତିଲକ ବୃତ୍ତ ।

ଲଙ୍କାପୁରେ କପିନଶାଚର—ଯୁଦ୍ଧଜାତ
ଅଲୋକନାର୍ଥ ବନତାସୁତ ଆତଯାତ ।
ତା ପକ୍ଷଘାତ-ଚଳମାନ ନଭପ୍ରଦେଶ
ବ୍ୟାପି କ୍ରମେ ଧରଣିରେ କରିଲା ପ୍ରବେଶ । ୧୨ ।

ବତ୍ସ ! ଏହାକୁ ଔତ୍ପାତିକ ଜ୍ଞାନ କରି ଭୟ କର ନାହିଁ ।

ନେପଥ୍ୟରେ—

ଅନୁଷ୍ଟୁପ୍ ବୃତ୍ତ ।

ମୋ ମିତ୍ରମାନେ ନିହତ ଶତ୍ରୁମାନେ ତ ଜିତ୍ୱର ।
ଦୁମାଦ୍ରୁକୁ ତପସ୍ୟାର୍ଥ ଯିବ ତେଣୁ ମୁଁ କାତର । ୧୬ ।

ଭରତ—( ଶ୍ରବଣ କରି ) ଏହି ବୃଦ୍ଧା କିଏ ? ତପସ୍ୱିନୀ ପରି ଦିଶୁଅଛନ୍ତି । ଯୁଦ୍ଧରେ ପ୍ରବୃତ୍ତ କୌଣସି ବୀରମାନଙ୍କର ଜୟ ପରାଜୟ କହୁଅଛନ୍ତି ।

(ତଦନନ୍ତର ବୃଦ୍ଧତପସ୍ୱିନୀ ବେଶରେ ସୂର୍ପଣଖାର ପ୍ରବେଶ ।)

ସୂର୍ପଣଖା—"ମୋ ମିତ୍ରମାନେ ନିହତ" ( ଇତ୍ୟାଦି ବାକ୍ୟ ପୁନରପି ପଢ଼ିବା )

ଭରତ—ବତ୍ସ ! ଏ କିଏ ? କେଉଁଠାରୁ ଆସିଅଛନ୍ତି ? ଯଦି ଏ ଆର୍ଯ୍ୟଙ୍କର ସମରବୃତ୍ତାନ୍ତ ହୋଇଥାଏ, ତେବେ ଏହାଙ୍କ ମୁଖରୁ ସବୁ ଶୁଣିବା ।

ଶତ୍ରୁଘ୍ନ—ଆର୍ଯ୍ୟ ! ହେଉ, ତାହାହିଁ କରିବା ।

ସୂର୍ପଣଖା ପ୍ରତି

ହେ ତପସ୍ୱିନି ! ତୁମ୍ଭେ କିଏ ? କେଉଁଠାରୁ ଆସିଅଛ ?

ସୂର୍ପଣଖା—(ଶତ୍ରୁଘ୍ନଙ୍କୁ ଚାହିଁ ସଭୟେ ସ୍ୱଗତ) କଣ ! ମୋର କର୍ଣ୍ଣନାସିକାବୈରୀ କ୍ଷତ୍ରିୟକୁମାର ଏଠାକୁ ଆସିଲାଣି ? (ସମ୍ୟକ୍ ନିରେଖି) ନା, ଏ ସେହି ଲକ୍ଷ୍ମଣ ନୁହେ; କିନ୍ତୁ

ତାହାର ସହୃଦାକୃତ କନଷ୍ଠ ଭାଇ ଶତ୍ରୁଘ୍ନ ହୋଇଥିବ ।
( ହସ୍ତରେ ନାସିକା ପରାମର୍ଶ କରି ) ବର୍ତ୍ତମାନ ମୋର
ତାପସୀ ରୂପ ଗ୍ରହଣରୁ ଜାଣିବା ଅଛି ତ ?

ଅନୁଷ୍ଟୁପ୍ ବୃତ୍ତ ।

ପ୍ରତିବାକ୍ୟ ତେଣୁ ମୋର ଅନୁନାସିକ୍ୟ-ଦୂଷିତ
ବର୍ଣ୍ଣମାନେ ଜୋହିବାରୁ ଶୁଣି ହାସ୍ୟ ନ କରିବ ।୧୪।

(ପ୍ରକାଶତଃ) ଆପଣ କଣ କହିଲେ ?

ଶତ୍ରୁଘ୍ନ—ମୁଁ ପଚାରେଁ—ତୁମେ କିଏ ? କେଉଁଠାରୁ ଆସିଅଛ ?

ସୂର୍ପଣଖା—(ସ୍ୱଗତ) ମୁଁ ରାବଣର କନଷ୍ଠ ଭଗିନୀ, ଲଙ୍କା ଦ୍ୱୀପରୁ ଆସିଅଛି । (ପ୍ରକାଶତଃ) ( ନିଃଶ୍ୱାସ ତ୍ୟାଗପୂର୍ବକ ଦୁଃଖୋଦ୍ଭବନସ୍ୟ କରି ) ମନେ କର, କେହି ଜଣେ କୌଣସିଠାରୁ ଆସିଅଛି ।

ଭରତ—( ସ୍ୱଗତ ) ଏ ତାପସୀ ଥିବାରୁ ବୋଧହୁଏ ନଷ୍ଟେ ରାକ୍ଷସପକ୍ଷପାତିନୀ ନୁହେ, ସୁତରାଂ ଦୁଃଖିତା ଦିଶୁଅଛି । ଏ ସବୁ ବଚାର କଲେ ଆର୍ଯ୍ୟଙ୍କର କିମ୍ବା ଲକ୍ଷ୍ମଣଙ୍କର କୁଶଳ ଦୁର୍ଲ୍ଲଭ ପରି ଆଭାସୁଅଛି । ଅଥବା ଏ ତାପସୀ ଅନ୍ୟ ହେତୁରେ ଦୁଃଖିତା ହୋଇ ଥାଇ ପାରେ । (ପ୍ରକାଶତଃ) ହେ ତାପସି ! ତୁମର ନାମ କଣ ?

ସୂର୍ପଣଖା—( ସ୍ୱଗତ ) ଏ ମଧ ମହାପ୍ରୁ ନାସିକାଚ୍ଛେଦମାନ-ଫଳାଭିଳାଷୀ ଋଷିକୁମାର ପରି ଦିଶୁଅଛି । ଏ ଅବଶ୍ୟ ଭରତ ହେବ । ଶତ୍ରୁଘ୍ନ ମଧ ଏହା ପ୍ରତି ବମୀଶ ରହି-ଅଛି । (ପ୍ରକାଶତଃ) ଭଦ୍ର ! ଆପଣ କଣ କହିଲେ ?

ଶତ୍ରୁଘ୍ନ—ଆର୍ଯ୍ୟ ପଚାରୁଅଛନ୍ତି, ତୁମର ନାମ କଣ ?

ସୂର୍ପଣଖା—(ସ୍ୱଗତ) ମୋର ଜନ୍ମକୃତ ନାମ ସୂର୍ପଣଖା, କର୍ମକୃତ ନାମ ବଗ୍ରମୁଖା । (ପ୍ରକାଶତଃ) ଋଷ୍ୟମୂକପର୍ବତନିବାସୀ ମୁନିମାନେ ମୋତେ ପଣ୍ଡିତାଦିନୀ ବୋଲି ଡାକନ୍ତି । ସୁତରାଂ ମୁଁ ପୁଲସ୍ତ୍ୟ ମହର୍ଷିଙ୍କ ବଂଶୋଦ୍ଭବା ବୋଲି ମୋ ପ୍ରତି ସୁପ୍ରସନ୍ନ ଥାନ୍ତି ।

ଭରତ—ତୁମର ବଚନରୁ ଜଣାଯାଏ ଯେ ତୁମେ ପୁଲସ୍ତ୍ୟ ବଂଶୀୟା, ତଥାଚ ଋଷ୍ୟମୂକ ପର୍ବତରୁ ଆସିଅଛ ।

ସୂର୍ପଣଖା—ତାହା ଯଥାର୍ଥ ।

ଶତ୍ରୁଘ୍ନ—ତେବେ ତୁମେ କଣ ରାକ୍ଷସୀ ?

ସୂର୍ପଣଖା—(ସ୍ୱଗତ) ଏଥିରେ ଆଉ ସନ୍ଦେହ କଣ ? (ପ୍ରକାଶତଃ ସକ୍ରୋଧେ) କଣ ? ପୁଲସ୍ତ୍ୟବଂଶରେ ଜନ୍ମଗ୍ରହଣ କଲା-ମାତ୍ରେ ରାକ୍ଷସୀ ହେବାକୁ ହୁଏ କି ?

ଭରତ—ବତ୍ସ ! ତାପସୀଙ୍କୁ କ୍ରୁଦ୍ଧ କର ନାହିଁ । ଏ ସମ୍ବନ୍ଧରେ ବିଶ୍ରବା ଋଷି ତଥାଚ ବୈଶ୍ରବଣ କୁବେରଙ୍କର ମଧ୍ୟ ରାକ୍ଷସୀ ଜାତି ନୁହେ ।

ସୂର୍ପଣଖା—( ସ୍ୱଗତ ) ଦୁଷ୍ଟାତ୍ମା ବିଭୀଷଣ ମଧ୍ୟ ତାଦୃଶ । (ପ୍ରକାଶତଃ) ଆପଣ ଉଚିତ କହୁଅଛନ୍ତି ।

ଭରତ—କି ହେତୁରୁ ତୁମେ ଦୁଃଖିତା ଦିଶୁଅଛ ?

ସୂର୍ପଣଖା—କାରଣ କହୁଅଛି, ଶୁଣନ୍ତୁ । (ମୋ ନିବିମାନେ ନହନ୍ତି ଇତ୍ୟାଦି ବାକ୍ୟ ପଢ଼ିବା )

ଶତ୍ରୁଘ୍ନ--ତୁମର ମିତ୍ର କେଉଁମାନେ ? ପୁଣି ଶତ୍ରୁ କେଉଁମାନେ ?

ଶୂର୍ପଣଖା--(ସ୍ୱଗତ) ରାକ୍ଷସମାନେ ମୋର ମିତ୍ର, ଆଉ ବାନର-
ମାନେ ଶତ୍ରୁ । (ପ୍ରକାଶତଃ) ବାନରମାନେ ମିତ୍ର ଆଉ
ରାକ୍ଷସମାନେ ଶତ୍ରୁ ।

ଭରତ—( ସ୍ୱଗତ ପାଶକୁ ) ଆର୍ଯ୍ୟଙ୍କର, ପକ୍ଷପାତୀ ବାନର-
ମାନଙ୍କର ବିନାଶରୂପ ଦାରୁଣ ବାର୍ତ୍ତା ଆସି ଉପସ୍ଥିତ
ହେଲା ଯେ ! (ପ୍ରକାଶତଃ) ହେ ପଣ୍ଡିତେ ! "ଋଷ୍ୟମୂକ
ପର୍ବତରେ ମୋର ନିବାସ" ଏହା ପ୍ରଥମେ ତୁମେ କହି-
ଅଛ । ତେବେ କହ ତ, ସେହିଠାରେ କେବଳ ବାନର
ଓ ରାକ୍ଷସମାନଙ୍କର ଯୁଦ୍ଧସମ୍ମର୍ଦ୍ଦ ଘଟିଥିଲା କି ?

ଶୂର୍ପଣଖା—ନାହିଁ ନାହିଁ, ତାହା ଲଙ୍କା ଦ୍ୱୀପରେ ।

ଭରତ—ହଁ, ତାହା ଯଥାର୍ଥ ।

ଶତ୍ରୁଘ୍ନ--ତୁମେ ଏହା ଜାଣିଲ କିପରି ?

ଶୂର୍ପଣଖା--କିଷ୍କିନ୍ଧା ନାମ ଏକ ଗୁହାନଗରୀ ଅଛି ।

ଶତ୍ରୁଘ୍ନ--ହଁ ଅଛି, ବାଲୀ ଯାହା ଶାସନ କରେ ।

ଶୂର୍ପଣଖା—ଏବେ ଆଉ ସେ ବାଲୀ ନାହିଁ । ରଘୁବଂଶୋଦ୍ଭବ
ରାମଚନ୍ଦ୍ର ତାହାକୁ ନିହତ କରି ସୁଗ୍ରୀବକୁ ରାଜ୍ୟରେ
ଅଭିଷିକ୍ତ କରିଥିବାରୁ ବର୍ତ୍ତମାନ ସେ ଶାସନ କରୁ-
ଅଛି ।

ଶତ୍ରୁଘ୍ନ—ହଁ, ଏ କଥା ଜଣା ଅଛି ।

ଶୂର୍ପଣଖା—ସେହି ଗୁହାରେ ରୁମାର ଧାତ୍ରୀତନୟା ଶଙ୍କୁକର୍ଣ୍ଣୀ ନାମ ଏକ ବାନରୀ ମୋର ପ୍ରିୟସଖୀ ଅଛି । ସେ ସପତ୍ନୀ ସହିତ ରୁମାର ଅଗ୍ନିପ୍ରବେଶଜନିତ ଦୁଃଖ ସହି ନ ପାରି ମୋର ଆବାସ ଋଷ୍ୟମୂକ ପର୍ବତକୁ ବାହାରି ଆସି ଏପରି କହିଥିଲା ।

ଭରତ—(ସୋଦ୍ବେଗେ) ରୁମା କିଏ ?

ଶୂର୍ପଣଖା—ବାନରାଧିପ ସୁଗ୍ରୀବଙ୍କର ମହିଷୀ ।

ଶତ୍ରୁଘ୍ନ—( ସୋଦ୍ବେଗେ ) କଣ ! ରାକ୍ଷସମାନଙ୍କଦ୍ୱାରା ସୁଗ୍ରୀବ ନିହତ ହେଲେ ?

ଶୂର୍ପଣଖା—(ସାଶ୍ରୁଗଦ୍ଗଦେ) ସେ କେବଳ ନୁହନ୍ତି, ତାହାଙ୍କର ମନ୍ତ୍ରୀ ହନୁମାନ୍, ବାଲିତନୟ ଯୁବରାଜ ଅଙ୍ଗଦ, ଆଉ ସେନାଗଣ ମଧ୍ୟ ।

ଶତ୍ରୁଘ୍ନ—ପର୍ଯ୍ୟାଦିନ ! ତବ ଉପସ୍ଥିତ ରଘୁବଂଶୋଦ୍ଭବ ରାଜପୁତ୍ର ଦୁହିଙ୍କର ବାର୍ତ୍ତା କଣ ?

ଶୂର୍ପଣଖା—ଆଉ ଅନପ୍ରକାର ନୁହେ । ମାୟାବୀ ରାକ୍ଷସମାନଙ୍କ ସମ୍ମୁଖରେ ଯାହା ହେବାର ଉଚିତ, ତାହାହିଁ ଘଟି-ଅଛି ।

ଶତ୍ରୁଘ୍ନ—(ସବାଷ୍ପେ) ସେ ଦୁହିଙ୍କ ପ୍ରତି ସନ୍ତତ ଅମଙ୍ଗଳ ଓ ଅହିତଇଚ୍ଛୁକ ରାକ୍ଷସାଧିପ କଣ ମାୟାପ୍ରୟୋଗ କଲା ?

ଶୂର୍ପଣଖା—ତେବେ ଶୁଣନ୍ତୁ ।

ସ୍ରଗ୍ଧରା ବୃତ୍ତ ।

ଲଙ୍କାସଂକ୍ରାନ୍ତବାର୍ତ୍ତା ଶୁଣି ତବ ଭରତ-ଭ୍ରାତ ସାକେତଦେଶେ
ଅମ୍ଭେ ତାହାଙ୍କ ସେନା, ତ୍ୱଦନୁଗକରଣେ ପେଷିଲେ
ସେ ନଦେଶେ ।
ଏବେ ଦେଖାଇ ମାୟା ଦଶବଦନଭଟେ ଯାଇ ମାନୁଷ୍ୟବେଶେ

ଭରତ ଓ ଶତ୍ରୁଘ୍ନ—(ସୋଦ୍ବେଗେ) ଯାଇ କଣ କଲେ ?

ସୂର୍ପଣଖା—(ସ୍ୱଗତ)

ଅନୁଷ୍ଟୁପ୍ ବୃତ୍ତ ।

ଯେ ମଦଗ୍ରଜ ବଂଶାକ୍ଷ କୁମ୍ଭକର୍ଣ୍ଣ ବିନାଶକ ।
ତାହା ଭରତ ଶତ୍ରୁଘ୍ନ ଭାଇଯୁଗ୍ମ ବିନାଶିବ ।୧୭।
(ପ୍ରକାଶତଃ)

ନିଦ୍ରାସଂସକ୍ତ ରାମେ ତଦନୁଜ ବଧିଲେ ହାୟ ସେନାନବେଶେ ।

ଭରତ—ହା ଆର୍ଯ୍ୟ ରାମଭଦ୍ର ! ବତ୍ସ ଲକ୍ଷ୍ମଣ ! ( ଏହା କହି ମୋହିତ ହେବା )

ଶତ୍ରୁଘ୍ନ—ହାୟ ! କି ଦାରୁଣ ଦୁର୍ବିପାକ ! ଆର୍ଯ୍ୟ ଦୁହେଁ ଏପରି ହୋଇଗଲେ ଯେ ! (ମୂର୍ଚ୍ଛିତ ହେବା)

ସୂର୍ପଣଖା—କଣ ! ମୋର କଥାଗୁଡ଼ାକ ତୁମ୍ଭ ଦୁହିଙ୍କର ଅପ୍ରିୟ ହୋଇ ଉଠିଅଛି ? ତେବେ ତୁମ୍ଭେ ଦୁହେଁ କିଏ ? ଆଶ୍ୱାସିତ ହୁଅ, ଆଶ୍ୱାସିତ ହୁଅ ।

ଭରତ ଓ ଶତ୍ରୁଘ୍ନ—(ସଚେତ ହୋଇ) କଣ ! ସତେ ସେ ତୁହେଁ ଏପରି ହୋଇଗଲେ ?

ଶୂର୍ପଣଖା—ହଁ, ତଦନନ୍ତର ପ୍ରସୁପ୍ତ ମୋର ମିତ୍ର ସୁଗ୍ରୀବାଦଙ୍କୁ ଶସ୍ତ୍ରଧାରୀ ରାକ୍ଷସମାନେ—(ଏହି ଅର୍ଦ୍ଧୋକ୍ତିରେ) ମୁଁ ପଚାରେଁ, ତୁମ୍ଭେ ଦୁହେଁ କଏ ?

ଭରତ—ଏଥିରୁ ଅବଶିଷ୍ଟ ମଧ୍ୟ ଜଣାଗଲା, ବୋଧହୁଏ ରାକ୍ଷସମାନେ ସେମାନଙ୍କୁ ମଧ୍ୟ ନିହତ କଲେ ।

ଶତ୍ରୁଘ୍ନ—ଏହି ଆର୍ଯ୍ୟଙ୍କ ନାମ ଭରତ । ମୁଁ ତାହାଙ୍କ ସାନ ଭାଇ ଶତ୍ରୁଘ୍ନ ।

ଶୂର୍ପଣଖା—(ଉଦ୍ବେଗ ଅଭିନୟ କରି) କଣ ! ତୁମ୍ଭେ ଦୁହେଁ ରାମ ଲକ୍ଷ୍ମଣ ଦୁହିଙ୍କର ଭାଇ ? ହାୟ ହାୟ ! ମୋର ସର୍ବନାଶ !

ଅନୁଷ୍ଟୁପ୍ ବୃତ୍ତ ।

କୁହେ ଅପ୍ରିୟ-ସତ୍ୟାର୍ଥ ବକ୍ତବ୍ୟ, ଶାସ୍ତ୍ରସମ୍ମତ ।
ଜାଣି ତାହା ମୁଁ କହିଲି ନରକେ ହେବ ମୋ ଗତ ।୧୭।

ଭରତ—ଏଥିରେ ତୁମର କିଛି ଦୋଷ ନାହିଁ । ଅନ୍ୟ କେହି ଅବଶ୍ୟ ଏହି ବୃତ୍ତାନ୍ତ କହିଥାନ୍ତେ ତ ।

ଶୂର୍ପଣଖା—ମୁଁ ସମ୍ବନ୍ଧ ଜାଣି ନ ପାରି ଶତ୍ରୁଘ୍ନଙ୍କ ପ୍ରଶ୍ନରେ ଶଙ୍କୁକର୍ଣ୍ଣୀଙ୍କ ମୁଖରୁ ଅବଗତ କଥାସବୁ କହି ଦେଇଅଛି ।

ଶତ୍ରୁଘ୍ନ—ସୀତାଦେବୀଙ୍କର ବୃତ୍ତାନ୍ତ କଣ ?

ଶୂର୍ପଣଖା—ଆଉ କଣ ବୋଲି କହିବ ?

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ନେଲା ସେ ଜନକାତ୍ମଜାକୁ କପଟେ ଦୈତ୍ୟେଶ ସେ ରାବଣ ।
ସଂରୁଦ୍ଧା କର ପୀଡିଲା ହୁଅ ତୁ ମୋ କ୍ରୀଡ଼ାସଖୀ ବୋଲଣ ।
ତା ଅଗେ କହୁ ରାମ ଲକ୍ଷ୍ମଣ ଦଶା ଗାଢେ କଲା ଦୁଃଖିତ ।
ହେଲା ଶୋକଜନମଗ୍ନ ମୈଥିଳସୁତା ଉଦ୍‌ବନ୍ଧ-ନର୍ଜୀବିତ । ୧୮ ।

ଶତ୍ରୁଘ୍ନ—(ସଶୋକେ) ହାୟ ହାୟ ! ବିଧାତା ! ଏହା କପର ଉପସ୍ଥିତ ହେଲା !

ସ୍ରଗ୍ଧରା ବୃତ୍ତ ।

ଅହା ବୈଦେହ ! ଅର୍ଯ୍ୟେ ! ରଘୁତିଳକକଣ୍ଠୀବଲ୍ଲି-ସଂନ୍ୟସ୍ତହସ୍ତା
ଦେଖନ୍ତେ ଶ୍ୱଶ୍ରୂମାନେ ବନଗମନସମାରମ୍ଭ-ଉଦ୍‌ବିଗ୍ନଚିତ୍ତା ।
ହେଲେ ଶୋକାର୍ତ୍ତମୋହା ଶୁଣି ପୁଣି ଅଧୁନା ତ୍ୟାଗିବେ
ସଦ୍ୟ କାୟ
ତୁମ୍ଭେ ଯା ଘୋର ଦୁଃଖେ ବରଜଲ ତନୁ ଉଦ୍‌ବନ୍ଧନେ
ହାୟ ହାୟ । ୧୯ ।

ଭରତ—ଅର୍ଯ୍ୟେ ବିଦେହନନ୍ଦନ ! ତୁମ୍ଭେ କୁଳୋଚିତ ଶିଷ୍ଟାଚରଣ କରି ଧନ୍ୟା ହୋଇଅଛ । ମୁଁ ଏବେ କଣ ଅବା କରବ ? କଛୁ ସ୍ଥିର କର ପାରୁ ନାହିଁ ।

ଶତ୍ରୁଘ୍ନ—

ଅନୁଷ୍ଟୁପ୍ ବୃତ୍ତ ।

ଯୁଦ୍ଧେ ପ୍ରତ୍ୟର୍ଥୀ ସଂହାର କରବା ବୈରଶୁଦ୍ଧିକି ।

ସୂର୍ପଣଖା—( ସ୍ୱଗତ ) ତାହା ନଷ୍ଟନ୍ତ ହୋଇ ଯାଇଅଛୁ ।
(ପ୍ରକାଶତଃ)

ନୁହେ ସମ୍ଭବ ଏ କାର୍ଯ୍ୟ ସହାସ୍ୟ କେହ ନାହିଁ ତ । ୨୦ ।

ଅତଏବ ଏହ ବଷାଦରେ ବଷଣ୍ଣାମ୍ଭାମାନଙ୍କ ମଧ୍ୟରୁ ସୀତାଙ୍କ ଅଚରଣ କେବଳ ଉତ୍ତମ ।

ଭରତ—ହାସ୍ୟ ! କେତେ କଷ୍ଟ ଉପସ୍ଥିତ ହେଲ ଯେ !

ଶାର୍ଦ୍ଦୂଳବକ୍ରୀଡ଼ତ ବୃତ୍ତ ।

ହେଲ ଚୌଦସମା ସମାପନ ମହାଦୁଃଖେ ଦଳାନୁକ୍ରମେ ।
କଲ୍ପ ପ୍ରାସ୍ୟ ମୁଁ ଭବଲ ଷଣକୁ ତଦ୍‌ବଚ୍ଛେଦରେ ଉଦ୍ଭ୍ରମେ ।
ଏବେ କାନନୁଁ ଆସିଲେ ନମିବ ତତ୍ପାଦାବ୍ଜ-କଲ୍ପଦ୍ରୁମ ।
ଏ ପ୍ରାଃସ୍ୟେ ଥିଲ ଭବ ହାସ୍ୟ ସହସା ବଧ୍ୱସ୍ତ ଅଶାଗମ । ୨୧ ।

(ମୂର୍ଚ୍ଛିତ ହେବା)

ସୂର୍ପଣଖା—(ସ୍ୱଗତ) ଭରତ ! କେବଳ ତୋର ଅଶା ନୁହେ ।
ଏହ ଅସେଚନକରୂପଶାଳୀ ପୁରୁଷକୁ ଇଚ୍ଛା କର ମୋର ମଧ୍ୟ ଅଶାଦ୍ରୁମ ନହତ ହୋଇଅଛୁ । ପରନ୍ତୁ ତଦର୍ଥେ ନାସିକା ମଧ୍ୟ ବଗତ ହୋଇ ଯାଇଅଛୁ । (ପ୍ରକାଶତଃ) ବତ୍ସ ! ଅଶ୍ୱାସିତ ହୁଅ । ଧୈର୍ଯ୍ୟ ଧର । ଏଣିକ ରାମଚନ୍ଦ୍ରଙ୍କୁ ଆଉ କଣ ଦେଖି ପାରବ କ ?

ଶତ୍ରୁଘ୍ନ—(ଲଜ୍ଜା ଓ ଶୋକ ସହତ)

ସ୍ରଗ୍ଧରା ବୃତ୍ତ ।

ଯେ ନେବଦ୍ବନ୍ଦ ଅମ୍ଭୋରୁହବପୁଲଦଳ ପ୍ରାୟ୍ଯ ଅହା ସୁଚକ୍ଷ୍ୟ ।
ବକ୍ଷାଭା ଶାରଦେନ୍ଦୁପ୍ରଭମ, ଭୁଜଯୁଗେ ଗାରୁଡ଼ସ୍ତମ୍ଭ ସାମ୍ୟ ।
ଲକ୍ଷ୍ମୀହସ୍ତସ୍ଥ-କେଳୀକମଳର ସୁଷମା ପାଦଯୁଗ୍ମେ ପ୍ରକାଶ ।
ଅହା ଏ ଦୁର୍ବିପାକେ ପଡ଼ ପୁଣି ଅଧୁନା ଦେଖିବାରେ ହତାଶ ।

( ଏହା କହ ମୂର୍ଚ୍ଛିତ ହେବା )

ସୂର୍ପଣଖା—(ସ୍ୱଗତ) ମୁଁ ଯେ ସବୁ ଦେଖି ମଧ୍ୟ ମନୋରଥକୁ ସଫଳ କର ପାରଲ ନାହିଁ । ( ପ୍ରକାଶତଃ ) ବତ୍ସ ଶତ୍ରୁଘ୍ନ ! ଆଶ୍ୱାସିତ ହୁଅ ଏବଂ ଏହାଙ୍କୁ ଆଶ୍ୱାସିତ କର । ପରନ୍ତୁ ଏହାଙ୍କ ଶୋକର ପ୍ରତୀକାର ଚନ୍ତା କର ।

ଭରତ—(ଆଶ୍ୱାସ ଲଭି)

ସ୍ରଗ୍ଧରା ବୃତ୍ତ ।

ତାତାଜ୍ଞାରେ ଅରଣ୍ୟେ ଦଶଚତୁରବରଷମା ମୋର ସଂଚରଣର ।
ତୁ କ୍ଷୌଣୀ ପାଳ ଯତ୍ନେ ଅନୁଷର ଅନଶେ ପାଦୁକାଯୁଗ୍ମ ମୋର ।
ଶେଷେ ତୋ ତୋଷଣାର୍ଥେ ବରବ ମୁଁ ଧରଣୀ ଶାସନା

ବୋଲ ଆର୍ଯ୍ୟ ।

ଅପ୍ରତ୍ୟାବୃତ୍ତ ହେଲେ ସହବ କପର ? ହା ! ଏ ତ

ଦୁଃସହ୍ୟ କାର୍ଯ୍ୟ । ୨୩ ।

ଅତଏବ ସମ୍ପ୍ରତି ମୋର ଅନଳପ୍ରବେଶ କେବଳ ଶ୍ରେୟସ୍କର ।

ଶତ୍ରୁଘ୍ନ—(ଆଶ୍ୱାସ ଲଭି) ଆମ୍ଭ ଦୁହଙ୍କର ଅନ୍ୟୋନ୍ୟତଃ

ମୋହର ପ୍ରତୀକାର କପରି ହେବ ? (ଭରତଙ୍କ ପ୍ରତି ସାଞ୍ଜଳହସ୍ତେ)

ଅନୁଷ୍ଟୁପ୍ ବୃତ୍ତ ।

ଆର୍ଯ୍ୟ ରାମାନୁଗମନ ଆର୍ଯ୍ୟ ଲକ୍ଷ୍ମଣ ଯେପର ।
କଲେ ତଥା ମୁଁ ଆର୍ଯ୍ୟଙ୍କ ସଙ୍ଗେ ପଶିବି ପାବକେ । ୨୪ ।

ସୂର୍ପଣଖା—(ସହର୍ଷେ ସ୍ୱଗତ) ଏଥିପାଇଁ କେବଳ ମୋର ଏହ ଉଦ୍ୟମ । (ପ୍ରକାଶତଃ) ବତ୍ସ ଭରତ ! ତୁମେ ଯାହା ନିଶ୍ଚିତ କରିଅଛ, ତାହା ଅନୁଚିତ ନୁହେ । ବତ୍ସ ଶତ୍ରୁଘ୍ନ! ତୁମର ପ୍ରତୀକାରଚିନ୍ତା ମଧ୍ୟ ସମୁଚିତ ହୋଇଅଛି । ମୋର ମଧ୍ୟ ଆଉ ତପସ୍ୟାରେ ଇଚ୍ଛା ନାହିଁ ।

ଅନୁଷ୍ଟୁପ୍ ବୃତ୍ତ ।

ଘୋର ଦୁଃସହ୍ୟ ଏ ଶୋକ ସୁଗ୍ରୀବାଦ ବିନାଶନେ ।
ଅଦ୍ୟ ତୁମ୍ଭେ ଅନଳରେ ପଶ ସଙ୍ଗେ ପ୍ରବେଶିବ । ୨୫ ।

ଭରତ—ହା ! ବତ୍ସ ଲକ୍ଷ୍ମଣ ! ତୁମେ ଚେତେବେଳେ ଆର୍ଯ୍ୟ ଶ୍ରୀରାମଚନ୍ଦ୍ରଙ୍କର ହୃଦୟାନୁରୋଧ ପୂର୍ବକ ପିତାଙ୍କର ତାଦୃଶ ଘୋର ଚେଷ୍ଟାକୁ ସହ୍ୟ କରି ମୋର ମାତାର ଦଣ୍ଡନ ଅଥବା ମନ୍ଥରାର ତାଡ଼ନ କଲ ନାହିଁ । ଭକ୍ତି ପ୍ରଦର୍ଶନ-ପୁରଃସର ଗୃହରୁ ଅନୁଗମନ କରି ପର ରଣାଙ୍ଗଣରୁ ମଧ୍ୟ ସ୍ୱର୍ଲୋକ ପ୍ରତି ଆର୍ଯ୍ୟଙ୍କର ସହଗାମୀ ହେଲ । ଆର୍ଯ୍ୟଙ୍କ ବିଷୟରେ ତୁମ୍ଭେ ସର୍ବଥା ସମୁଚିତ

ଭକ୍ତି କର ଧନ୍ୟ ହୋଇଅଛ । କିନ୍ତୁ ମୋ ଭାଗ୍ୟରେ
ତାହା ଘଟିଲା ନାହିଁ । ବତ୍ସ ଶତ୍ରୁଘ୍ନ !

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ହା ! ନିଃସନ୍ତତ ଏ ଅଜଙ୍କର କୁଳେ ବୈଶ୍ରବଣେୟ ଦ୍ୱିଜ
ପୂର୍ବୋଦ୍ଭୂତି କରାଇ ବର୍ଦ୍ଧିତ କଲେ ଦେବେ ତ ସେ ବହ୍ନିଜ ॥
ହାୟ ହାୟ ! ମୁ ମନ୍ଦଭାଗଧେୟ ତା ପରେ କିଣ କହିବ !

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ଅହା ! ମୃତ୍ୟୁକୁ ପାଇଲେ ତ ଅଧୁନା ରାମାଦି ପୁତ୍ରବ୍ରଯ୍ୟ ।
ତୁର୍ଯ୍ୟାପତ୍ୟ ତୁମେ ସଦା ହୁଅ କୃତ-ଶ୍ରାଦ୍ଧାଦିପୈତ୍ର୍ୟକ୍ରିୟ ।୨୭।

ଶୂର୍ପଣଖା—(ସ୍ୱଗତ) କିଣ ! ଶତ୍ରୁଘ୍ନ ପ୍ରାଣରେ ରହିବ ? ହାୟ !
ମୋର ମନୋରଥ ସମ୍ପୂର୍ଣ୍ଣ ଫଳିଲା ନାହିଁ ଯେ !
(ପ୍ରକାଶତଃ) ବତ୍ସ ଭରତ ! ତୁମର ପର ଶତ୍ରୁଘ୍ନଙ୍କର
ମଧ ଶୋକ ଅସହ୍ୟ ହୋଇଅଛି । ମୁଁ ମନେ କରେଁ,
ତୁମର ଏହି ନିଯୋଗ ବୃଥା କେବଳ ।

ଶତ୍ରୁଘ୍ନ—(ସାଶ୍ରୁନୟନେ) ହାୟ ହାୟ ! ତୁମ୍ଭେମାନେ ତିନହେଁ
ପ୍ରିୟ ଅପତ୍ୟ ମୃତ ହେଲେ ମୁଁ ବାଳକ ଜଣେ ଜୁଦିତ
ପିତୃମାନଙ୍କୁ ନିବାପାଞ୍ଜଳିରେ ପରିତୃପ୍ତ କରିବାକୁ କଦାପି
ସମର୍ଥ ହୋଇ ପାରିବ ନାହିଁ । ଅତଏବ ଅନଳରେ
ପ୍ରବେଶ କରିବାପାଇଁ ପ୍ରଥମତଃ ମୁଁ ଆର୍ଯ୍ୟଙ୍କର ପୁରଃସର
ହେବି ।

ସୂର୍ପଣଖା—ବତ୍ସ ଶତ୍ରୁଘ୍ନ ! କାଷ୍ଠ ଓ ଅନଳର ଅନ୍ୱେଷଣାର୍ଥ ସତ୍ୱର ହୁଅ !

ଭରତ—ହାୟ ! କି ଘୋର କଷ୍ଟ ଯେ !

ଶାର୍ଦ୍ଦୂଳବିକ୍ରୀଡିତ ବୃତ୍ତ ।

ମାତଃ କୋଶଳପୁତ୍ରି ! ମଜ୍ଜିଲ ମହାଦୁଃସହ୍ୟ ଶୋକାର୍ଣ୍ଣବେ ।
ଆଚନ୍ଦ୍ରାର୍କ ଅକୀର୍ତ୍ତି-ପଙ୍କପତିତା କୈକେୟି ! ତୁମ୍ଭେ ଭବେ ।
ଆହା ଲକ୍ଷ୍ମଣମାତ ! ଶୋକ ବଢ଼ିଲା ପୁତ୍ରଦ୍ୱୟ ପ୍ରାପ୍ତିରେ ।
ସର୍ବାନଷ୍ଟ କରାଇ ଥାଅ ନରକେ ପାପିଷ୍ଠିକେ ! ମନ୍ଥରେ ! ୨୭ ।

ହା ତାତ ! ପୁରନ୍ଦରପ୍ରିୟବୟସ୍ୟ ! ଆପଣ ବହୁଯତ୍ନରେ ଗୃହ ପୁତ୍ର ଜନ୍ମାଇ ସସ୍ନେହ ଲାଳନ ପାଳନରେ ପରିବର୍ଦ୍ଧିତ କଲେ । କିନ୍ତୁ କି ହେବ ? ଆର୍ଯ୍ୟ ରାମଚନ୍ଦ୍ରଙ୍କୁ ବନକୁ ପଠାଇ ରଘୁବଂଶ ନିର୍ମୂଳ କରି ଦେଲେ ।

ଶତ୍ରୁଘ୍ନ—ଏହି ପ୍ରଳାପରୁ ପ୍ରୟୋଜନ କଣ ? ମୁଁ ଯାଇ କାଷ୍ଠ- ଗୁଡ଼ିଏ ଆଉ ଅଗ୍ନି ସମ୍ପାଦନ କରିବି ।

( ଏହା କହି ଯାଇ ପୁନରପି ପ୍ରବେଶି )

ଆର୍ଯ୍ୟ ! ଦ୍ୱାରଦେଶରେ ଭଗବାନ୍ ବୈଶ୍ୱାନର ଶୁଷ୍କକାଷ୍ଠା- ବଳୀ ଯୋଗରେ ପ୍ରଜ୍ୱଳିତ ଅଛନ୍ତି ।

ଭରତ—ବର୍ତ୍ତମାନ ଏହା ମୋର ପ୍ରିୟ ।

ସୂର୍ପଣଖା—( ସ୍ୱଗତ ) ତଦପେକ୍ଷା ମୋର ସମଧିକ ପ୍ରିୟ ।

( ପ୍ରକାଶତଃ ) ବତ୍ସ ! ଉଠ ବହିରେ ପ୍ରବେଶ କରିବା ।

ଭରତ—ହେ ତାପସି ! ଆପଣ ଦିନକରକୁଳର ପରମଗୁରୁ ଅରୁନ୍ଧତୀପତିବର ମୁନିବରଙ୍କୁ ମୋର ଏହି ଉଦନ୍ତ ସବିନୟେ ନିବେଦନ କରିଦେବେ ।

ଶୂର୍ପଣଖା—(ସ୍ୱଗତ) ଭଲ ହେଲା । ଏହି କାରଣରୁ ମୋର ବହ୍ନିପ୍ରବେଶ ସ୍ଥଗିତ ହେବ । (ପ୍ରକାଶତଃ) କଣ ତାହା କହ ।

ଭରତ—

ସ୍ରଗ୍ଧରା ବୃତ୍ତ ।

ତୁମ୍ଭେ ଭୂପାଳ ଅଦ୍ୟ ପ୍ରଭୃତି ମନୁ ଯଥା ପାଳିଲେ ସେ ମହାତ୍ମା ।
ମାତାମାନଙ୍କୁ ଘରେ ଅନୁସରିବ ଯଥା ନୋହିବେ ଶୋକଭୂମା ।
ଅମ୍ଭେ ଯେମନ୍ତ ଦିବ୍ୟସ୍ଥଳ ଲଭିବୁ ତଥା ଦେବ କଲ୍ୟାଣଭୂତ ।
ଏବେ ଶତ୍ରୁଘ୍ନ ସଙ୍ଗେ ପଶୁଛୁ ଅନଳରେ ଆର୍ଯ୍ୟ ରାମଙ୍କୁ ଚିନ୍ତି ।

ସୂର୍ପଣଖା—( ସ୍ୱଗତ ) ମୋର ମନୋରଥ ସଫଳ ହେଲା । (ପ୍ରକାଶତଃ) ଏହି ସନ୍ଦେଶ ଜଣାଇବା ଅନାବଶ୍ୟକ, ସେ ଋଷିପ୍ରବର ଆପେ ସବୁ ଜାଣି ପାରିବେ ।

( ଏହା କହି ବହ୍ନି ପ୍ରଦକ୍ଷିଣ କରିବା )

ଶତ୍ରୁଘ୍ନ—ଅୟି ପର୍ଣ୍ଣାଦିନି ! ଆର୍ଯ୍ୟଙ୍କ ଆଦେଶ ଶୀଘ୍ର ପାଳନ କର । ପ୍ରଥମତଃ ଅମ୍ଭେ ଦୁହେଁ ପ୍ରବେଶ କରିବୁଁ ।

ଶୂର୍ପଣଖା—(ସ୍ୱଗତ) ଏ ଭୂପତିଙ୍କର ଏହି ବ୍ୟବସାୟ ଖୁବ୍ ଦୃଢ଼ତର ହେଲାଣି । ଏ ସ୍ଥଳରେ ମୋର କର୍ତ୍ତବ୍ୟର ଆଉ ଅବଶେଷ କିଛି ନାହିଁ । (ପ୍ରକାଶତଃ) ତୁମ୍ଭ ଗୁରୁଙ୍କର ଆଦେଶ ଲଙ୍ଘିବାର ଉଚିତ ନୁହେ । ବିଶେଷତଃ ଏପରି ଅବସ୍ଥା ଆସି ମଧ୍ୟ ଘଟିଅଛି । (ଏହା କହି ନିଷ୍କ୍ରାନ୍ତା )

ଭରତ ଓ ଶତ୍ରୁଘ୍ନ ଅଗ୍ନି ପ୍ରଦକ୍ଷିଣ କରୁଅଛନ୍ତି, ଏହି ସମୟରେ—

ନେପଥ୍ୟରେ—

ମନ୍ଦାକ୍ରାନ୍ତା ବୃତ୍ତ ।

ତାତାଜ୍ଞାରେ ବନକଗମିଷ୍ଣୁ ପ୍ରାଣନାଥଙ୍କ ସଙ୍ଗେ
ବତ୍ସା ସୀତା-ଅନୁଗମନ ଆକାଙ୍କ୍ଷେ ଆଗେ ପ୍ରସଙ୍ଗେ ।
ଥାଏଁ ଦୁଃଖେ ମୁଁ ଅନବରତେ ଅଦ୍ୟ ସ୍ନେହର ଦୈର୍ଘ୍ୟ
ନେବା ବାର୍ତ୍ତା ଶ୍ରବଣ ହେଲ ଯା ହୋଇଲା ବଜ୍ରପାତ ।୨୪।

ଭରତ—ଅହୋ ! ଏପରି ସମୟରେ ଜନକରାଜ ଆସି ପୁଣି ପ୍ରବିଷ୍ଟ ହେଲେଣି !

ପୁନରପି ନେପଥ୍ୟରେ—

ଭୋ ଭୋ ଶୈବପ୍ରବର ବୈଶ୍ରବଣ !

ସ୍ରଗ୍ଧରା ବୃତ୍ତ ।

ଶଙ୍କା ଚିତ୍ତେ ନ ହେଲା ! ହରିଲ ମମ ସୁତା ତେଜି ସୌହୃଦ୍ୟଭାବ ।
ହେ ଲଙ୍କାଧୀଶ ! ଅହା ! କିସ କହିବି କି ଏ ତୁମ୍ଭ ଜାତ ସ୍ୱଭାବ ।

ହା ବତ୍ସେ ! ଦେଖି ବଂଶାଙ୍କୁ ହରଣସମୁଦ୍ୟୁକ୍ତଶାଳୀନ-ଶୀଳା !
ଖିଶୋକେ ଦୈବ ମୋହେ ପଡ଼ଥିବୁ ଗହନେ ତୋ ଅବସ୍ଥା କ
ହେଲା । ୩୦ ।

ଶତ୍ରୁଘ୍ନ—ଆର୍ଯ୍ୟା ସୀତାଦେବୀଙ୍କର ଉଦ୍‌ବନ୍ଧନରେ ପ୍ରାଣତ୍ୟାଗ
ବାର୍ତ୍ତା ବୋଧ ହୁଏ ଆର୍ଯ୍ୟ ଜନକରାଜ ଶୁଣି ନାହାନ୍ତି ।

ଭରତ—ଏହି ଆର୍ଯ୍ୟବର୍ଯ୍ୟଙ୍କ ସହିତ ସମ୍ଭାଷ ନ କରି ସହସା
ଅଗ୍ନିପ୍ରବେଶ କରିବା ଆମ୍ଭ ଦୁହିଙ୍କର ଉଚିତ ନୁହେ ।
(ଏହା କହି ନିରୀକ୍ଷଣ କରିବା)

ଜନକରାଜଙ୍କର ପ୍ରବେଶ ।

ଜନକ—ଅହୋ ଏ ପୁଣି କିଣ ?

ଅନୁଷ୍ଟୁପ୍ ବୃତ୍ତ ।

କରି ଉଚ୍ଚାବଚ-ଶିଖ-ହବ୍ୟବାହେ ପ୍ରଦକ୍ଷିଣ ।
ଶତ୍ରୁଘ୍ନସଙ୍ଗୀ ଭରତ ଅଭାସେ ଝାସିଲା ପରି । ୩୧ ।

(ଦ୍ରୁତବେଗରେ ନିକଟସ୍ଥ ହେବା)

ଭରତ ଓ ଶତ୍ରୁଘ୍ନ—ହେ ପୂଜ୍ୟପାଦ ଆର୍ଯ୍ୟବର୍ଯ୍ୟ ! ଭବଦୀୟ
ଚରଣରେ ପ୍ରଣାମ କରୁଅଛୁଁ ।

ଇନ୍ଦ୍ରବଜ୍ରା ବୃତ୍ତ ।

ଶ୍ରୀରାମ ସୌମିତ୍ରି ବନସ୍ଥ ହେଲେ
ଦୈତ୍ୟଙ୍କ ହସ୍ତେ କପଟ ପ୍ରଗ୍ରହରେ ।

ଆମ୍ଭେ ତୁହେଁ ତ୍ୟଗିଲୁ ଅଦ୍ୟ ଧାମ
ତୁମ୍ଭଙ୍କୁ ଏହା ଚରମ ପ୍ରଣାମ । ୩୨ ।

ଜନକ— ହାୟ ହାୟ ! ମୁଁ ମନ୍ଦଭାଗ୍ୟର ସର୍ବନାଶ ହେଲା !
( ମୂର୍ଚ୍ଛିତ ହେବା)

ଭରତ ଓ ଶତ୍ରୁଘ୍ନ—ଆର୍ଯ୍ୟ ! ଆଶ୍ୱାସିତ ହୁଅନ୍ତୁ ।

ଜନକ—(ଆଶ୍ୱସ୍ତ ହୋଇ)

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ସୀତାବଲ୍ଲଭ ଊର୍ମିଳାପତି ତୁହେଁ ଦୀର୍ଘାୟୁ ହାସ୍ୟ ସହ
ହେବେ, ଅବର ଜୈବଯାନବଜୟୀ ଶତ୍ରୁଘ୍ନେ ଦୁଃସହ ।
ଦୈବଜ୍ଞେ ସୁତଙ୍କରରେ କହୁଥିଲେ; କର୍ମୋଦ୍ଧ ସେ ଭାରତୀ ।
ଅହାହା ! ମମ ଭାଗ୍ୟଦୋଷରୁ ସିନା ହେଲା ମୃଷା ସମ୍ପ୍ରତି ।୩୩

ହାୟ ହାୟ ! ମୁଁ ଯାଜ୍ଞବଲ୍କ୍ୟାନୁଶାସନରେ ସମଗ୍ର ଅଦ୍ୱୈତଦର୍ଶନର ତତ୍ତ୍ୱାର୍ଥ ଅବଗତ ଅଛି; ତଥାପି ଏହି ଘୋର ଶୋକ ହୃଦୟର କେଉଁଠି ରହି ମୋତେ ଏକାନ୍ତ ଦଗ୍ଧ କରି ପକାଉଅଛି ।

ଶତ୍ରୁଘ୍ନ—ଆର୍ଯ୍ୟ! ସୀତାଦେବୀ ମଧ—( ଏହି ଅର୍ଦ୍ଧୋକ୍ତିରେ ସବାଷ୍ପକଣ୍ଠେ ତୁନି ରହିବା)

ଜନକ—ଯଦି ସେ ମଧ ଯାଇଅଛି, ତେବେ ମୋର ପ୍ରିୟ କଥା ବୋଲିବାକୁ ହେବ । ତଥାପି ହୃଦୟରେ ଅମାପ ପରିତାପ ଜନ୍ମୁଅଛି ।

ଶତ୍ରୁଘ୍ନ—ପରନ୍ତୁ ଉଦ୍‌ବନ୍ଧନରେ—

ଜନକ—(ପ୍ଲୋଡକ ଚେଳ) ହାୟ ହାୟ ! ବତ୍ସା ସୀତା
ଏପରି ହୋଇଗଲା ଯେ !

ଶାର୍ଦ୍ଦୂଲବିକ୍ରୀଡିତଂ ବୃତ୍ତ ।

ମୁଗ୍ଧ ସ୍ମେର ମନୋଜ୍ଞ ଦନ୍ତମୁକୁଳଶ୍ରେଣୀପ୍ରଭାସଂଯୁତ ।
ଆହା ! ମଞ୍ଜୁଳ ରତ୍ନଭୂଷିତ ତଥା ଲମ୍ବାଳକା-ମଣ୍ଡିତ ।
ବତ୍ସେ ! ଶୈଶବଲୋଳତା-ସୁଲଳିତ ତ୍ୱଦ୍‌ବକ୍ତ୍ର-ଅମ୍ଭୋରୁହ ।
ମୋ ଚିତ୍ତ ସ୍ମରି ଘୋର ତାପପରିତେ ନିର୍ମଗ୍ନ ବାଧା ସହ ।୩୪।

(ନିଃଶ୍ୱାସ ତ୍ୟାଗପୂର୍ବକ) ଭରତ ସୀତାଙ୍କୁ ଦୈତ୍ୟ ଅପହରି ନେଇଥିବାର ଜାଣି ପାରି ସେହି ରିପୁ ନିଧନ ସକାଶେ ସମାହୂତ ଭୂପାଳମାନଙ୍କ ସହିତ ଅଦ୍ୟ ଯୁଦ୍ଧ-ଯାତ୍ରା କରୁଅଛନ୍ତି; ଏହା ଶୁଣି ମୁଁ ବୃଥା ସନ୍ତୁଷ୍ଟହୃଦୟ ହୋଇଥିଲି; ଅତଏବ ସମ୍ପ୍ରତି ଏହି ଯୁବକଦ୍ୱୟଙ୍କ ନିମିତ୍ତ ସଞ୍ଚିତ ପ୍ରଦୀପ୍ତ ହବ୍ୟବାହରେ ଏହି ଦୁଃଖମୟ ଶରୀରକୁ ନିପାତ କରି ଶୋକସାଗରରୁ ଉତ୍ତୀର୍ଣ୍ଣ ହେବ ।

ଭରତ—ଆର୍ଯ୍ୟ ! ପ୍ରଥମତଃ ମୋର ତାହା କରଣୀୟ ।

ଅନୁଷ୍ଟୁପ୍ ବୃତ୍ତ ।

ଶ୍ରୀରାମଙ୍କ ପ୍ରାପ୍ତି ବିନା ହୋଇ ଲୁପ୍ତ-ମନୋରଥ ।
ଜଟାବଲ୍କଳଧାରୀ ମୁଁ ପ୍ରବେଶିବି ଉଦ୍‌ବୁଧ । ୩୫ ।

ଜନକ ଓ ଶତ୍ରୁଘ୍ନ—(ସାଶ୍ରୁନୟନେ) ହାୟ ! କି କରୁଣ-
ସ୍ୱରରେ କହୁଅଛନ୍ତି ଯେ !

ନେପଥ୍ୟରେ—

ବସନ୍ତତିଲକ ବୃତ୍ତ ।

ସଂହାରି ରାବଣ ଲଭି କ୍ଷିତିଜା ସୁକାନ୍ତା ।
ସଙ୍ଗାଦି ଦେବମୁନିପୁଙ୍ଗବ-ଗୀତ କୀର୍ତ୍ତି ।
ଆରୋହି ପୁଷ୍ପକ ସଲକ୍ଷ୍ମଣ ରାମରାଜ
ଆସନ୍ତି, ହେ ଭରତ ଧ୍ୟାସ ବହ୍ନିର ତେଜ । ୩୬ ।

ଶତ୍ରୁଘ୍ନ—(ଅବଲୋକି) ଏହି ବ୍ରହ୍ମଚାରୀ କିଏ ? ଆମ୍ଭମାନଙ୍କର
ପ୍ରିୟବଚନ ଜଣାଉଅଛନ୍ତି ।

ଜନକ—(ସାନନ୍ଦେ) ବତ୍ସ ଭରତ! ଉଦ୍‌ବିଗ୍ନ ହୁଅ ନାହିଁ ।
ସ୍ଥିର ହୁଅ, ସ୍ଥିର ହୁଅ ।

ଭରତ—(ସ୍ୱଗତ) ଆର୍ଯ୍ୟ ! ମୁଁ ମନେ କରେଁ, ଏହା ଯଥାର୍ଥ
ନୁହେ । ପ୍ରଥମତଃ ତାପସୀରୂପରେ ଅପ୍ରିୟ ସନ୍ଦେଶ
ଜଣାଇଦେଇ ଶେଷରେ ଅଜ୍ଞାନବଶତଃ ପରସନ୍ତପ୍ତ-
ହୃଦୟରେ ବର୍ଣ୍ଣିରୂପ ଧାରଣପୂର୍ବକ ଏହି ପ୍ରିୟକଥା
କହୁଅଛନ୍ତି । ଅତଏବ ଏହା କେବଳ ଅଳୀକ ବୋଧ
ହୁଏ । (ସତ୍ୱରେ ଅଗ୍ନି ନିକଟକୁ ଯିବା)

( ତଦନନ୍ତର ଯବନିକାକୁ ଉତ୍ତୋଳନ କରି ବର୍ଣ୍ଣିରୂପୀ
ହନୁମାନଙ୍କର ପ୍ରବେଶ । )

ହନୂମାନ୍—

ସ୍ରଗ୍ଧରା ବୃତ୍ତ ।

ସେନାନୀ ନୀଳ ବୀରାଗ୍ରଣୀ ନିଧନ କଲେ ସୈନ୍ୟନେତା ପ୍ରହସ୍ତ ।
ହେଲା ପ୍ରଧ୍ୱସ୍ତ ଦେବେ ଅକଳିତବଳ ସେ କୁମ୍ଭକର୍ଣ୍ଣ ପ୍ରଶସ୍ତ ।
ସୌମିତ୍ରି କ୍ରୂରବାଣେ ବିନିହତ ବିକଟା-ସ୍ୟନ୍ଦନେ ଇନ୍ଦ୍ରଜେତା ।
ସନ୍ତୋଷେ ବୈଜୟନ୍ତୀ ଶ୍ରୀ ସହ ବିଭୁ ଲଭିଲେ ନାଶି ବଂଶାକ୍ଷ
ସୀତା । ୩୭ ।

ଅତଏବ ସମ୍ପ୍ରତି ଆପଣ ସଦାଗ୍ରବରଜ ଶ୍ରୀ ରାମଭଦ୍ରଙ୍କର ସମାଗମନସମ୍ଭୂତ ସନ୍ତୋଷାତିଶଯ୍ୟକୁ ଅନୁଭବ କରନ୍ତୁ ।

ଭରତ—ମାୟାବିବନପୂର୍ଣ୍ଣ କ୍ରବ୍ୟାଦମାନେ ଥିବା ସ୍ଥଳେ ଅବ ଶ୍ରୀ ରାମଚନ୍ଦ୍ରଙ୍କର ଶୁଭାଗମନ ସମ୍ଭବ ହେବ ଅବା କପରି ?

ହନୂମାନ୍—ଦୈବବଳ-ପ୍ରବଳ ସେହି ରାମଚନ୍ଦ୍ରଙ୍କ ପ୍ରତି ରାକ୍ଷସ-ମାନଙ୍କର ମାୟାବଳ କିଛିମାତ୍ର ନୁହେ । ତଥାପି ଯାହା ହୋଇଅଛି, ଶ୍ରବଣ କରନ୍ତୁ । ତବ ପ୍ରଥମ ସମରରେ ମାୟାବୀ ଇନ୍ଦ୍ରଜେତା ରାମ ଓ ଲକ୍ଷ୍ମଣଙ୍କୁ ନାନାପ୍ରକାର ମାୟିକ ଦୁର୍ଯ୍ୟୋଗ ପ୍ରଚାରରେ ସମ୍ମୂର୍ଚ୍ଛିତ ହୋଇ ରଣା-ଙ୍ଗଣରେ ନାଗପାଶରେ ବନ୍ଧ କରି ପକାଇଥିଲା ।

ଶତ୍ରୁଘ୍ନ—ମୁଁ ମନେ କରେଁ, ଏହି କଥାକୁ କେବଳ ଅନ୍ୟ ପ୍ରକାର ଶୁଣି ମୂଳ କଥାର ତତ୍ତ୍ୱରେ ଅନଭିଜ୍ଞ ସେହି ତାପସୀଦ୍ୱାରା ଆମ୍ଭେମାନେ ଉଦ୍‌ବେଜିତ ହେଲୁଁ ।

ଭରତ—ତା ଉତ୍ତାରୁ କଣ ହେଲା କହନ୍ତୁ ।

ହନୂମାନ୍—ତେତେବେଳେ ଇନ୍ଦ୍ରାଦେଷ୍ଟ ସୁପର୍ଣ୍ଣ ତୂର୍ଣ୍ଣ ଆସି ସେ ସ୍ଥଳେ ଉପସ୍ଥିତ ହେଲେ ।

ଭରତ—ଵତ୍ସ ଶତ୍ରୁଘ୍ନ! ବଶିଷ୍ଠ ମିଶ୍ର କହୁଥିଲେ ବୋଲି ତୁମ୍ଭେ ଯାହା କହୁଥିଲ, ଏ ମଧ୍ଯ ତାହାହିଁ କହୁଅଛନ୍ତି ।

ହନୂମାନ୍—ତତ୍‌କ୍ଷଣାତ୍ ସାନୁଜ ରାମଚନ୍ଦ୍ର ନାଗପାଶବନ୍ଧନରୁ ବିମୁକ୍ତ ଓ ନୀରୁଜସ୍କ ହୋଇ ପ୍ରବୃଦ୍ଧ ଓଜରେ ଜୟଲକ୍ଷ୍ମୀ ପ୍ରାପ୍ତ ହେଲେ ।

ଶତ୍ରୁଘ୍ନ—ଭଗବାନ୍ ଗରୁଡ଼ଙ୍କର ଉପସ୍ଥିତିରେ ସର୍ପ ଶରମାନେ କିପରି ତିଷ୍ଠି ପାରନ୍ତେ ?

ଭରତ—(ସାନନ୍ଦେ) ଵତ୍ସ ଶତ୍ରୁଘ୍ନ ! ରାବଣନିଧନାଭିଳାଷୀ ପୁରୁହୂତଙ୍କର ଆର୍ଯ୍ୟଙ୍କ ପ୍ରତି କାର୍ଯ୍ୟାର୍ଥିତା ବର୍ତ୍ତମାନ ଜଣା ଗଲା । ଯେହେତୁ ସେ ଆର୍ଯ୍ୟଙ୍କ ରକ୍ଷଣାର୍ଥ ପକ୍ଷିନାଥଙ୍କୁ ପ୍ରେରଣ କରିଥିଲେ ।

ଜନକ—(ସାନନ୍ଦେ) ହେ ବ୍ରହ୍ମଚାରିନ୍ ! ଆପଣ ମୋର ପ୍ରାଣ–ଦାତା ହେଲେ, କପଟ ରଖନ୍ତୁ ନା, ଆପଣଙ୍କର ନାମ କଣ, କହନ୍ତୁ ।

ହନୂମାନ୍—

ଅନୁଷ୍ଟୁପ୍ ବୃତ୍ତ ।

ସୁଗ୍ରୀବରାଜ-ସଚିବ ହନୂମନ୍ତ ମୁଁ ପାବନି ।
ପ୍ରେରିଲେ ରାମ ସନ୍ଦେଶେ ଭରତଙ୍କ ସମୀପକୁ । ୩୮ ।

ଜନକ—ହେ ଆଞ୍ଜନେୟ ! 

ଆର୍ଯ୍ୟା ବୃତ୍ତ ।

ଅଟ ପୂଜ୍ୟ ମୋର ତୁମ୍ଭେ
ଯାଜ୍ଞ୍ୟବଲ୍କ୍ୟ ମୁନି ତୁଲ୍ୟତ ସର୍ବଥା ।
ବସ୍ତ୍ରୀମସ୍ତ ରବିଙ୍କଠାରୁ
ଲଭିଅଛ ବିଦ୍ୟାକୁ ସେହି ଯଥା । ୬୯ ।

ଶତ୍ରୁଘ୍ନ—( ସସ୍ମିତେ ) ଲଙ୍କାଯୁଦ୍ଧରେ ସସୈନ୍ୟ ସମଲ୍ଲୀ ସପରିବାର ସୁଗ୍ରୀବଙ୍କର ନିଧନ ରାକ୍ଷସମାନଙ୍କଦ୍ୱାରା ନିଷ୍ପନ୍ନ ହୋଇଅଛି ବୋଲି ପର୍ଣ୍ଣାଦିନୀ ତାପସୀ କହିଥିଲେ । ତେବେ ହନୁମାନ୍ ଜୀବିତ କିପରି ?

ହନୁମାନ୍—ତାପସୀ ପର୍ଣ୍ଣାଦିନୀ କିଏ ?

ଶତ୍ରୁଘ୍ନ—ଯାହାଙ୍କର ସୁଗ୍ରୀବାଙ୍କ ମିତ୍ର, ଆଉ ଋଷ୍ୟମୂକ ପର୍ବତ ନିବାସସ୍ଥାନ ଅଟେ—

ହନୁମାନ୍—(ସ୍ୱଗତ) ଏପରି କେହି ନାହିଁ ତ । (ବିଚାରପୂର୍ବକ) ସୂର୍ପଣଖା ହୋଇଥିବ । ରାବଣ ଓ କୁମ୍ଭକର୍ଣ୍ଣର ବିନାଶରେ ତଥାଚ ବିଭୀଷଣଙ୍କର ରାଜ୍ୟଲାଭରେ ସେ ଦୁଃଖିତା ଥିବାର ପଶ୍ଚାତ ମଧ୍ୟ କହୁଥିଲେ । ଅତଏବ ସେହି ଦୁଷ୍ଟା କେବଳ ଭରତ ଓ ଶତ୍ରୁଘ୍ନଙ୍କୁ କଥାବଶେଷ କରିବାପାଇଁ ଏହି ଉଦ୍ୟମ କରିଥିଲା । (ପ୍ରକାଶତଃ) ଦେବ ରାମଭଦ୍ର ରାବଣକୁ ନିହତ କରିଥିବାରୁ ତଦୀୟ ଭଗିନୀ ସୂର୍ପଣଖା

ଅସହନଚରିତ୍ରରେ ତାପସୀ ବେଶ ଧରି ଆପଣମାନଙ୍କୁ
ଏହିପରି ଅପ୍ରିୟ କଥା କହିଅଛି ।

ଭରତ—ହଁ, ତାହାହିଁ ହୋଇଥିବ । ପୁଲସ୍ତ୍ୟବଂଶରେ ତାହାର
ଜନ୍ମ, ଏହା ମଧ୍ୟ ମୁଁ କହିଥିଲି ।

ହନୂମାନ୍—(ଦକ୍ଷିଣ ଦିଗକୁ ଦୃଷ୍ଟିପାତ କରି) ଭରତ ! ଦେଖନ୍ତୁ
ଦେଖନ୍ତୁ, ରାବଣବିଜୟୀ ସୀତା ଏବଂ ପରିଜନମାନଙ୍କ
ସହିତ ପୁଷ୍ପକବିମାନରେ ମେଘମାର୍ଗ ଦେଇ ଆସୁଅଛନ୍ତି ।
(ସମସ୍ତେ ସାଶ୍ଚର୍ଯ୍ୟରେ ନିରେଖି ରହିବା)

ହନୂମାନ୍—

ପ୍ରସ୍ଥିର ବୃତ୍ତି ।

ଦେଖ ଶ୍ରୀରାମସେନା ପ୍ଲବଗଗଣ ଉଠି ମାରି ବୃକ୍ଷାଗ୍ରେ ବକ୍ଷେ
ଆସନ୍ତି ଶ୍ରେଣିବଦ୍ଧ ପ୍ରସ୍ଫୁଟିତ ହରଷେ, ବୀରଦର୍ପ୍ୟକ୍ଷ ବକ୍ଷେ ।
ଉତ୍ପାତୋତ୍ପାତଯୁକ୍ତ ଦ୍ରୁମଗଣ ନତ ଔଦ୍ଧତ୍ୟଦମ୍ଭେ ତ ଅଗେ ।
ନନ୍ଦିଗ୍ରାମୋପକଣ୍ଠସ୍ଥିତ ଉପବନ ଆରମ୍ଭିଲା ନୃତ୍ୟରଙ୍ଗେ । ୪୦

ଜନକ—ଅହା ! କେଡ଼େ ଆନନ୍ଦର ଘଟନା ଯେ ! ବତ୍ସା
ସୀତାଦ୍ୱାରା ସମଳଂକୃତବାମଭାଗ ବତ୍ସ ରାମଚନ୍ଦ୍ର ବତ୍ସ
ଲକ୍ଷ୍ମଣ ଓ ପରିଜନମାନଙ୍କ ସଙ୍ଗେ ଧରି ପୁଷ୍ପକବିମାନରୁ
ଅବତୀର୍ଣ୍ଣ ହେଲେ ।

ଭରତ—(ଦେଖି ସାନନ୍ଦେ)

ବସନ୍ତତିଳକ ବୃତ୍ତ ।

ପଦ୍ମାକ୍ଷ ଶମ୍ଭୁକୁଟିଳାଖିଳବିଦଗ୍ଧ କାମ-
ସୌନ୍ଦର୍ଯ୍ୟଯୁକ୍ତ ନବବାରିଦ-ଚାରୁଧାମ ।
ଆର୍ଯ୍ୟଙ୍କୁ ହନ୍ତ ବହୁକାଳକୁ ଦେଖି ଅଦ୍ୟ
ନିର୍ମଗ୍ନ ହେଲି ମୁଁ ସୁଧାସରସୀର ମଧ୍ୟ । ୪୧ ।

ଶତ୍ରୁଘ୍ନ—(ସହର୍ଷେ)

ବସନ୍ତତିଳକ ବୃତ୍ତ ।

ଏମନ୍ତ ହେବ ତ ନ ହେବ ତ ବୋଲିବାରେ
କେ କର୍ମସଞ୍ଚସ୍ୟ ଫଳୋଦୟସ୍ୟ ଜାଣି ପାରେ ।
ବହ୍ନିପ୍ରବେଶନସମୁତ୍ସୁକ ନିର୍ବିଳମ୍ବେ
ଶେଷେ ସୁଧାସରିତରେ ପଡ଼ିମଗ୍ନ ଅମ୍ଭେ । ୪୨ ।

( ତଦନନ୍ତର ଯଥାନିର୍ଦ୍ଦିଷ୍ଟ ରାମଚନ୍ଦ୍ରଙ୍କର ପ୍ରବେଶ । )

ରାମ—ଅୟି ସୀତେ !

ସ୍ରଗ୍ଧରା ବୃତ୍ତ ।

ପାରାବାରାମ୍ବୁରାଶୀ ସୁମୁଖି ! ସହଜରେ ଲଙ୍ଘି ଏବଂ ମହେନ୍ଦ୍ର ।
ତୂର୍ଣ୍ଣେ ଉଲ୍ଲଙ୍ଘି ସେ ପ୍ରସ୍ରବଣ ଗିରି ସୁବିସ୍ତୀର୍ଣ୍ଣ ବିନ୍ଧ୍ୟାଟବୀନ୍ଦ୍ର ।
ତହୁଁ ସେ ଚିତ୍ରକୂଟ କ୍ଷିତିଧରଶିଖରାବର୍ତ୍ତିତ-ବ୍ୟୋମ ଦେଇ
ନନ୍ଦିଗ୍ରାମୋପକଣ୍ଠେ ଦ୍ରୁତଗତି-ରଥ ଉତ୍ତୀର୍ଣ୍ଣ ସନ୍ତୋଷ ହେଇ ।

ଅନୁଷ୍ଟୁପ୍ ବୃତ୍ତ ।

ଉଲ୍ଲଂଘି ଅବ୍ଧି ପ୍ରଭମ-କପି-ଋଷଭ ସଙ୍ଗରେ
ହେଲ ପ୍ରବଷ୍ଟ ହେମାଙ୍ଗି ! ସ୍ୱଦେଶେ ତୋର ସଙ୍ଗରେ ।୪୪।

ଲକ୍ଷ୍ମଣ—ଆର୍ଯ୍ୟ ! ଦେଖନ୍ତୁ, ତାତ ଜନକରାଜ ଆଉ ବତ୍ସ ଶତ୍ରୁଘ୍ନଙ୍କୁ ସଙ୍ଗେ ଧରି ଆର୍ଯ୍ୟ ଭରତ ଆସୁଅଛନ୍ତି । ଯେ ପୁଣି—

ବସନ୍ତତିଳକ ବୃତ୍ତ ।

ଶୀର୍ଷେ ଜଟାନିଚୟ୍ଯ, ଶୀର୍ଣ୍ଣ କଟିପ୍ରଦେଶେ ।
ସ୍ୱାନର୍ହ ବଲ୍କଲ ନିବଦ୍ଧ, ତପଃପ୍ରୟାସେ ।
କ୍ଷୀଣାଙ୍ଗ ସେ ଭବଦଦର୍ଶନ-ଜାତ ଶୋକ-
ମୂର୍ତ୍ତିପ୍ରକାର ଅଧୁନା ପୁରତେ ବିଲୋକ । ୪୫ ।

ରାମ—ସତ୍ୟ, ତାଦୃଶ ହେବାର । ଲଙ୍କାଧିପତି ପୌଲସ୍ତ୍ୟ କର୍ତ୍ତୃକ ହୃଦୟବଲ୍ଲଭା ସୀତାର ଅପହରଣସ୍ୱରୂପ ହୃଦୟ-ଶଲ୍ୟ ମର୍ମବିଦାରକ ଥିଲା, କିନ୍ତୁ ତାହା ତଦୁପଯୁକ୍ତ କର୍ମରେ ଉଦ୍ଧୃତ କରି ପାରିଅଛୁ । ବର୍ତ୍ତମାନ ଭରତ ସଂପ୍ରାପ୍ତ ରାଜ୍ୟଲକ୍ଷ୍ମୀକୁ ମୋ ସକାଶେ ପରିତ୍ୟାଗ କରି ଯାହା କ କ୍ଲେଶ ଅନୁଭବ କରୁଅଛନ୍ତି, ତାହା ମୋର ଅନ୍ୟ ହୃଦୟଶଲ୍ୟ ପ୍ରାୟ ବୋଧହୁଏ । ସମ୍ପ୍ରତି ତାହା ଦୈବବଳରୁ ଉଦ୍ଧୃତ ହେଉ ।

ଭରତ—(ସମୀପକୁ ଯାଇ) ପ୍ରଭୋ ଆର୍ଯ୍ୟ ! ଦଶରଥପ୍ରିୟ-
ପୁତ୍ର ! ଭକ୍ତଜନବତ୍ସଳ ! ହେ ସତ୍ୟସନ୍ଧ ! ଚିରକାଳରୁ
ଆପଣଙ୍କ ଦର୍ଶନର ଅଭିଳାଷୀ ଏହି ଦାସ ଭବଦୀୟ
ଚରଣାରବିନ୍ଦରେ ପ୍ରଣାମ କରୁଅଛି ।

(ସବାଷ୍ପକଣ୍ଠରେ ପ୍ରଣାମ କରିବା)

ରାମ—( ସ୍ନେହ ଓ ଆନନ୍ଦ ସହିତ ବାହୁଦ୍ୱୟରେ ଉତ୍ତୋଳନ-
ପୂର୍ବକ ଆଲିଙ୍ଗନ କଲେ । )

ରାମ ଭରତ ଦୁହେଁ—(ସ୍ୱଗତ)

ଅନୁଷ୍ଟୁପ୍ ବୃତ୍ତ ।

କର୍ପୂରପରିପୀ ମଧ୍ୟେ ହେଲି ପରି ନିମଜ୍ଜିତ ।
ଏ ଗାଢ଼ସ୍ନେହସଂଶ୍ଳେଷେ ହେଲି ସନ୍ତାପବର୍ଜିତ । ୪୬ ।

ରାମ—(ପ୍ରକାଶତଃ) ବତ୍ସ ! ଦୈବବଳରୁ ତୁମକୁ ପୁନରପି
ଦେଖି ପାରିଲି ।

ଭରତ—(ପ୍ରକାଶତଃ) ମୋତେ କୃତାର୍ଥୀକରଣାର୍ଥ ଆର୍ଯ୍ୟଙ୍କର
ମୋ ପ୍ରତି ଏତାଦୃଶ ପ୍ରସାଦାତିଶଯ୍ୟ ।

(ରାମ ଓ ଭରତଙ୍କୁ ଶତ୍ରୁଘ୍ନ ଏବଂ ଲକ୍ଷ୍ମଣ ଅଭିବାଦନ
କରି ଆଶୀର୍ବାଦ ଗ୍ରହଣ କରିବା )

ରାମ—( ଜନକ ସମୀପକୁ ଯାଇ ) ତାତ ଜନକରାଜ ! ମୁଁ
ଦାଶରଥି ରାମ ପ୍ରଣାମ କରୁଅଛି ।

ଲକ୍ଷ୍ମଣ—ତାତ ! ମୁଁ ଲକ୍ଷ୍ମଣ ନମସ୍କାର କରୁଅଛି ।

ସୀତା—ତାତ ! ପ୍ରଣାମ।

ଜନକ—(ସମସ୍ତଙ୍କୁ ଯଥୋଚିତ ଆଶୀର୍ବାଦ କରି ରାମଙ୍କ ପ୍ରତି ସହର୍ଷ ସବାଷ୍ପ ଗଦ୍ଗଦେ) ବତ୍ସ ! ଲଙ୍କେଶ୍ୱର-ବିଜୟିନ୍ !

ଅନୁଷ୍ଟୁପ୍ ବୃତ୍ତ ।

ମୋ ବୀର୍ଯ୍ୟଶୁଲ୍କା ପୁତ୍ରୀକୁ ପ୍ରାପ୍ତ ହେଲ ତ ଭାଗ୍ୟରୁ ।
ମନୁବଂଶେ ଜାତ ତୁମ୍ଭେ କର ତଦ୍‌ଯୁକ୍ତ କର୍ମକୁ ।୪୬।

ରାମ—(ସବିନୟେ ସାଞ୍ଜଳିହସ୍ତେ) ତାତ ବ୍ରହ୍ମର୍ଷେ ! ଆପଣମାନଙ୍କ ପ୍ରସାଦରୁ ଅଗସ୍ତ୍ୟ ବଶିଷ୍ଠ କୌଶିକାଦି ମହର୍ଷିମାନଙ୍କ କଲ୍ୟାଣରୁ ଅଥଚ ଇନ୍ଦ୍ରାଦି ଦେବତାମାନଙ୍କ ଅନୁଗ୍ରହରୁ ରାବଣ ନିହତ ହେଲା ।

(ଅନନ୍ତର ବିଶ୍ୱାମିତ୍ରଙ୍କ ପ୍ରବେଶ । )

ବିଶ୍ୱାମିତ୍ର—(ସ୍ୱଗତ) ସମ୍ପ୍ରତି ମୋର ଦେବଗଣନିଦେଶାଚରଣ ସଫଳ ହୋଇଅଛି । ରାମଚନ୍ଦ୍ର ରାବଣକୁ ଯୁଦ୍ଧରେ ନିହତ କରିଅଛନ୍ତି । ମୁଁ ସମାଧିଜ୍ଞାନରେ ଦେବତାମାନଙ୍କର ନିଦେଶ ଜାଣି ପାରିଥିଲି ଯେ—

ଇନ୍ଦ୍ରବଜ୍ରା ବୃତ୍ତ ।

ବିଂଶାକ୍ଷ ବିଦ୍ୱେଷ ଯଥା ପ୍ରକାଶେ ।
ରାମ ପ୍ରତି ସ୍ୱୀୟ ଜନ ପ୍ରଣାଶେ ।

ଶ୍ରୀରାମ ଉଦ୍ଧାଶନ-ଯୋଗ୍ୟ ଯେହ୍ନେ
ହେବେ, ସମଲ୍ଲାସ୍ତ ହୁଅନ୍ତୁ ତେହ୍ନେ । ୪୮ ।

ରାମ—( ଦେଖି ନିକଟକୁ ଯାଇ ) ଭଗବନ୍ ! ମୁଁ ଇକ୍ଷ୍ୱାକୁ-
ବଂଶୋଦ୍ଭବ ରାମ ପ୍ରଣାମ କରୁଅଛୁ ।

ବିଶ୍ୱାମିତ୍ର—ବତ୍ସ ! ତୁମ୍ଭର ମନୋରଥ ସଫଳ ହେଉ । (ଅନ୍ୟ-
ମାନେ ବିଶ୍ୱାମିତ୍ରଙ୍କୁ ନମସ୍କାର କରି ଆଶୀର୍ବାଦ ଗ୍ରହଣ
କରିବା)

ବିଶ୍ୱାମିତ୍ର—(ରାମଙ୍କ ପ୍ରତି) ସମ୍ପ୍ରତି ତୁମ୍ଭେ—

ଅନୁଷ୍ଟୁପ୍ ବୃତ୍ତ ।

ତ୍ରୈଲୋକ୍ୟଶତ୍ରୁ ବଂଶାଙ୍କ ନାଶି ଯୁଦ୍ଧେ ତ୍ରିଲୋକକୁ
ରକ୍ଷା କଲ ମହର୍ଷିଙ୍କୁ ତଥା ଦେବସମୂହକୁ । ୪୯ ।

ରାମ—ଭଗବନ୍ ! ଏ ସମସ୍ତ ଆପଣଙ୍କ ପ୍ରସାଦରୁ ।

ଭରତ—ଭଗବନ୍ ବିଶ୍ୱାମିତ୍ର ! ଆପଣମାନେ ଏହିକ୍ଷଣି
ଶ୍ରୀରାମଚନ୍ଦ୍ରଙ୍କର ରାଜ୍ୟାଭିଷେକ ବିଧାନ ସମାପନପୂର୍ବକ
ଅଯୋଧ୍ୟାରେ ପ୍ରବେଶ କରାଇବା ହୁଅନ୍ତୁ ।

ଜନକ—ଅହୋ ! ଭରତ ଆଉ ତ ବିଳମ୍ବ ସହି ପାରୁ ନାହାନ୍ତି ।

ହନୁମାନ—ସ୍ୱାମିନ୍ ! ଦେବଙ୍କର ସୁଗ୍ରୀବ ବିଭୀଷଣ ପ୍ରଭୃତି ପ୍ରିୟ
ମିତ୍ରମାନେ ମଧ୍ୟ ଏହାହିଁ ଇଚ୍ଛା କରୁଅଛନ୍ତି । ଅତଏବ
ସମୁଦ୍ର ଜଳ ଆନୟନାର୍ଥ ତିନିଗୋଟି ବାନରଙ୍କ ସଙ୍ଗେ
ମୁଁ ଯାଉଅଛି । (ଏହା କହି ନିଷ୍କ୍ରାନ୍ତ)

ଜନକ—ବତ୍ସ ଶତ୍ରୁଘ୍ନ ! ବଶିଷ୍ଠାଦି ଋଷିବୃନ୍ଦ ଓ ପୁରୋହିତ-
ମାନଙ୍କୁ ତଥା ଚ ମନ୍ତ୍ରିମାନଙ୍କୁ ପ୍ରବେଶ କରାଅ ।

ଶତ୍ରୁଘ୍ନ—ହଁ ଯାଉଅଛୁ । (ପ୍ରସ୍ଥାନ)

ସୀତା—(ସ୍ୱଗତ) ରାବଣବିଜୟୀ ଆର୍ଯ୍ୟପୁତ୍ର ଏବେ ରାଜ୍ୟରେ ଅଭିଷିକ୍ତ ହେବେ । ଆହା ! ମୋ ହୃଦୟରେ କି ଆନନ୍ଦ-ଲହରୀ ଉଠେ ଯେ ।

ନେପଥ୍ୟରେ—

ସ୍ରଗ୍ଧରା ବୃତ୍ତ ।

ମୃଗ୍ୟ ଶ୍ରୀଖଣ୍ଡପୁଷ୍ପାକ୍ଷତ ରଖ ଯତନେ ବେଦିକା ସନ୍ନିଧାନ ।
ସ୍ୱଚ୍ଛାମ୍ବୁଃପୂର୍ଣ୍ଣ ଜାମ୍ବୂନଦକଳଶ ତଥା ଚାମରଚ୍ଛତ୍ରମାନ ।
କନ୍ୟାମାନେ ବସନ୍ତୁ ଦ୍ୱିପବର ହସ୍ତୀ ତା ପ୍ରାନ୍ତଦେଶେ ଅନେକ ।
ଆମୋଦେ ପଞ୍ଚଘୋଷ ଧ୍ୱନି କର, ଅଧୁନା ରାମପଟ୍ଟାଭିଷେକ ।୫୦।

ଜନକ—ବୋଧହୁଏ ଏହା ବଶିଷ୍ଠଙ୍କର ଆଦେଶ ।

ଶତ୍ରୁଘ୍ନ—(ପ୍ରବେଶି ରାମଙ୍କ ପ୍ରତି) ଆର୍ଯ୍ୟ ! ସମସ୍ତେ ଉପସ୍ଥିତ ହେଲେ ।

(ତଦନନ୍ତର ବଶିଷ୍ଠଙ୍କର ପ୍ରବେଶ ।)

ବଶିଷ୍ଠ—ସଖେ ବିଶ୍ୱାମିତ୍ର ! ସୀତା ରାମ ଦୁହିଙ୍କୁ ଏହି ରତ୍ନ ସିଂହାସନରେ ଉପବିଷ୍ଟ କରାଇ ଅନ୍ୟାନ୍ୟ ମହର୍ଷିମାନଙ୍କ ସହିତ ଅଭିଷେଚନ କରିବାକୁ ହେବ ।

ବିଶ୍ୱାମିତ୍ର—ଆପଣଙ୍କର ଯେପରି ଅଭିରୁଚି ।

ଜନକ—ଆହା ! କେଡ଼େ ସୁଖର ବିଷୟ ଯେ ଆଜି ରାମଚନ୍ଦ୍ର ଅଭିଷିକ୍ତ ହୋଇ ପ୍ରୀତିସମ୍ବାଦପୂର୍ବକ ଦୁକୂଳ ଓ ଆଭରଣାଦି ଦାନରେ ସ୍ୱଦେଶସ୍ଥ ଓ ଦେଶାନ୍ତରାଗତ

ଲୋକଙ୍କୁ ସମ୍ଭାବନା କରୁଅଛନ୍ତି । ଏଣେ ପୁଣି ସ୍ୱର୍ଗରେ ଦେବଦୁନ୍ଦୁଭିଧ୍ୱନି ଓ ପୁଷ୍ପବୃଷ୍ଟି ସଙ୍ଗେ ସଙ୍ଗେ ଅପ୍ସରୀମାନଙ୍କର ନର୍ତ୍ତନାରମ୍ଭ ହୋଇଅଛି ।

ବଶିଷ୍ଠ—ବତ୍ସ ! ତୁମକୁ ମୁଁ ଆଉ କଣ ପ୍ରିୟ ଉପହାର ଦେବି ?

ରାମ—

ସ୍ରଗ୍ଧରା ବୃତ୍ତ ।

ନଷ୍ଟ ଭୂୟଦେହ ତ ସୀତା ପରିଣୟ ରଚଲ ତୁତପ୍ରସାଦେ ମୁନୀନ୍ଦ୍ର ।
ସଂଗ୍ରାମେ ବୈରିନାଶେ ଲଭି ହୃତ-ଯୁବତୀ ହେଲି ଆନନ୍ଦ-ସାନ୍ଦ୍ର ।
ସଂତୃପ୍ତା ନେବତୃଷ୍ଣା ଭରତଦରଶନେ ହେଲି ରାଜ୍ୟେ ନରେନ୍ଦ୍ର ।
ଏ ଲୋକେ ଆଉ ଅନ୍ୟ ପ୍ରିୟ କିସ ଅଛି ଯେ ସାଧିବେ ମୋର ଭଦ୍ର ।।

ତଥାପି ଏ ଭରତବାକ୍ୟ ସଫଳ ହେଉ ।

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ମନ୍ୱାଦିଙ୍କର ବାକ୍ୟ ପାଳି ସୁଜନେ ପାଅନ୍ତୁ ହେ ମଙ୍ଗଳ ।
ଭୂପେ ପୈଶୁନବାକ୍ୟ ନିଗ୍ରହଣରେ ପାଳନ୍ତୁ ଭୂମଣ୍ଡଳ ।
ସାରଗ୍ରାହି-ଜନାଦରେ ସୁକବି ଏ ହେଉନ୍ତୁ ସଂଲଳିତ ।
ହେଉ ଶ୍ରୀଶପ୍ରଭକ୍ତ ଏ କବି ସଦା ଆହ୍ଲାଦ-ସମୋଦିତ । ୫୬ ।

ସମସ୍ତେ ନିଷ୍କ୍ରାନ୍ତ ।



ସମାପ୍ତ ।



Pirnted by V. Kar. The Utkal Sahitya Press, Cuttack

# ଶୁଦ୍ଧି ପତ୍ର ।



| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧ | ୧୩ | ପ୍ରମୁଜ୍ୟ | ପ୍ରମୃଜ୍ୟ |
| ୪ | ୩ | ଅନସର | ଅନୁସର |
| ,, | ୯ | ସମାଶ୍ୱାସିତା | ସମାଶ୍ୱାସିଣୀ |
| ,, | ୧୪ | ନାଠକର | ନାଠକର |
| ୫ | ୬ | ବଙ୍କବୃନ୍ଦେ | ବଙ୍କବୃନ୍ଦେ, |
| ,, | ୯ | ସଭ୍ୟବୃନ୍ଦେ | ସଭ୍ୟବୃନ୍ଦେ, |
| ,, | ୧୬ | ମାଳକା | ମାଳକା । |
| ୬ | ୧୮ | ସାରଣ | ସାରଣର |
| ୮ | ୬ | ନରଙ୍କଣ | ନରଙ୍କୁଣ |
| ,, | ୧୧ | ଶକ୍ତ-ଚକ୍ର | ସକ୍ତ-ଚକ୍ର |
| ୧୩ | ୧୪ | ଅମିତାର୍ଦ୍ଧ-ଚତ୍ରେ | ଅମିଭାର୍ଦ୍ଧି-ଚତ୍ରେ |
| ୧୫ | ୮ | ମାନୁଷ୍ୟ-ନନ୍ଦ୍ୟାକ୍ତଭ | ମାନୁଷ୍ୟ-ହନ୍ଦ୍ୟାକ୍ତଭ |
| ,, | ୨୨ | ଅନ୍ୟେପାସ୍ତ୍ର-ବଳେ | ଅନ୍ୟୋପାସ୍ତ୍ର-ବଳେ |
| ୧୮ | ୨୧ | ରଥବବେ | ରଥଜବେ |
| ୧୯ | ୧ | ଏହ୍ମ ବେଗଗାମି- | ଏହ୍ମ ଅତ୍ତ ବେଗଗାମି- |
| ,, | ୧୨ | ପ୍ରମେଦେ | ପ୍ରମୋଦେ |
| ,, | ୧୩ | ସୋକଲ୍ଲଣ୍ଠେ | ଉଲ୍ଲଣ୍ଠା ସହ |
| ,, | ୧୬ | ସାମ୍ପ୍ରତ | ସାମ୍ପ୍ରତ, |

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୨୩ | ୮ | ସର୍ବ ଜାଣ | ସର୍ବଜ୍ଞ ଜାଣ, |
| ,, | ୧୬ | ପଦମୂଳାଲ | ପଦ୍ମମୂଳାଲ |
| ,, | ୨୦ | ଏହାଙ୍କର ମାହାତ୍ମ୍ୟ | ଏହାଙ୍କର ଅନନ୍ୟ ଓ ସାମାନ୍ୟ ମାହାତ୍ମ୍ୟ |
| ୨୪ | ୨ | ଯଜ୍ଞ ଅନ୍ତରସ୍ଥ | ଯଜ୍ଞ–ଅନ୍ତରସ୍ଥ |
| ,, | ୬ | ବଚନରେ | ବଚନଁରେ |
| ,, | ୨୦ | କରଅଛୁ | କରଅଛନ୍ତି |
| ୨୬ | ୧୯ | (ଅସୂୟା ପ୍ରକାଶପୂର୍ବକ) ରାବଣ | —(ଅସୂୟା ପ୍ରକାଶପୂର୍ବକ) |
| ,, | ୨୦ | ରାବଣ—ଏହୁ | ଏହୁ |
| ୨୭ | ୯ | କରଅଛନ୍ତି କି ? | କରଅଛନ୍ତି କି— |
| ,, | ୧୧ | ସୌର୍ଯ୍ୟ | ଶୌର୍ଯ୍ୟ |
| ୨୮ | ୧୫ | ବଦେହଜାସ୍ୟା ସୁଷମା-ଛରକ୍ତା | ବଦେହଜାସ୍ୟା-ସୁଷମା-ଛରକ୍ତା |
| ,, | ୧୬ | ସ୍ତମରକ୍ତା | ସ୍ତମରକ୍ତା । |
| ୩୦ | ୮ | ନୈକଷେସ୍ୟ କରେ ବୋଲି । | କୈକସେୟ୍ୟ ହୃଦେହ୍ନ ଏ ! |
| ,, | ୧୬ | ଅଭିଷେ | ଅଭିଷେ |
| ୩୧ | ୧୧ | ତନୁ-ସମୋଚନେ | ତନୁ-ସଂମୋଚନେ |
| ୩୨ | ୬ | ମହାକୀର୍ତ୍ତିସନ୍ଦେହ | ମହାକୀର୍ତ୍ତିସନ୍ଦୋହ |
| ୩୩ | ୨ | ମୁନି ମୁକ୍ତପାଇଁ | ମୁଁ ନମୁକ୍ତପାଇଁ |